ଜୀବନଶିକ୍ଷା

ଲେଖକ :

ଅଧ୍ୟାପକ ଶତ୍ରୁଘ୍ନ ନାଥ

ପ୍ରଥମ ସଂସ୍କରଣ : ୧୯୮୫

ପ୍ରକାଶକ :

ମୟୂର ପବ୍ଲିକେଶନ୍‌ସ୍

ଖାରବେଳନଗର, ୟୁନିଟ୍–୩

ଭୁବନେଶ୍ୱର–୭୫୧୦୦୧

ପ୍ରଚ୍ଛଦପଟ :

ଶ୍ରୀ ଉଦୟନାରାୟଣ ଜେନା

ମୁଦ୍ରଣ :

ଉଦ୍ୟୋଗ ପ୍ରିଣ୍ଟର୍ସ

ଭୁବନେଶ୍ୱର–୧

ମୂଲ୍ୟ– ଟ ୧୫.୦୦

**JIVANSIKSHA**

Professor **Satrughna Nath**

Publisher : **Mayur Publications**

Kharavelanagar, Unit-3

Bhubaneswar-751001

Cover design : **Shri U. N. Jena**

Printed at : **Udyog Printers**

Bhubaneswar-1

Price : Rs. 15.00

# ଉତ୍ସର୍ଗପତ୍ର

ଶିକ୍ଷାର୍ଥୀ, ଶିକ୍ଷକ, ଗୁରୁଛାତ୍ର,

ଗୁରୁଶିକ୍ଷକ, ଶିକ୍ଷାପ୍ରେମୀ ଓ ଶିକ୍ଷାବ୍ରତଙ୍କର

ସେବାରେ ଉତ୍ସର୍ଗୀକୃତ ।

ଶତ୍ରୁଘ୍ନ ନାଥ

# ସୂଚୀ


| | |
|---|---|
| ଶିକ୍ଷା ଓ ବିଶ୍ୱଶାନ୍ତି | ୧ |
| ଜ୍ଞାନାନନ୍ଦ | ୧୦ |
| ଏକ ଶିକ୍ଷଣ ସମାଜ | ୧୫ |
| ସମାଜରେ ଗୁରୁ–ଶିଷ୍ୟ ସମ୍ପର୍କ | ୨୧ |
| ସମାଜର ବିକାଶରେ ଶିକ୍ଷକଙ୍କ ଭୂମିକା | ୨୭ |
| ଶିକ୍ଷାଳୟରେ ଗ୍ରନ୍ଥାଳୟ | ୩୩ |
| ମାନବିକ ସମ୍ପଦର ବିକାଶ | ୪୦ |
| ଶିକ୍ଷା ଏକ ସାଧନ, ସାମାଜିକ ପରିବର୍ତ୍ତନର | ୫୭ |
| ହୃଦୟର ଶିକ୍ଷା | ୬୭ |
| ମନୋବିଜ୍ଞାନ ଓ ଶିକ୍ଷା | ୭୧ |
| ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ | ୭୭ |
| ସୃଷ୍ଟିଧର୍ମୀ ଶିକ୍ଷା | ୮୨ |
| ଶିକ୍ଷା– କଅଣ ଜୀବିକା | ୯୧ |
| ଅନୌପଚାରିକ ଶିକ୍ଷା | ୯୭ |
| ସାହିତ୍ୟ ଓ ମାନବିକ ଶିକ୍ଷା | ୧୦୨ |
| ଶିକ୍ଷାର ଆଭିମୁଖ୍ୟ, ଶିକ୍ଷକ ଓ ଶିକ୍ଷକସଂଗଠନ | ୧୧୨ |
| ମାନବିକ ମୂଲ୍ୟବୋଧ ପ୍ରତିଷ୍ଠାରେ ଶିକ୍ଷା ଓ ସମାଜ | ୧୧୯ |
| ଶିକ୍ଷା– ଏକ ଗଣ ଆନ୍ଦୋଳନ | ୧୨୫ |
| ପରୀକ୍ଷାର ପରୀକ୍ଷା | ୧୩୦ |




# ପୁସ୍ତକ ପାଇଁ ପଦେ

ମନୁଷ୍ୟ ଅନୁଭୂତିରୁ ଶିଖେ । ଏହି ମୁହୂର୍ତ୍ତର ବା ଆଜିର ଅନୁଭୂତି ଆର ମୁହୂର୍ତ୍ତ ବା ଆସନ୍ତାକାଲି ପାଇଁ ଶିକ୍ଷାର ଉପାଦାନ ଯୋଗାଇଥାଏ । ଜୀବନର ଅନେକ ସ୍ଥିତିରେ ମନୁଷ୍ୟ ଅନେକ ପୁନରାବୃତ୍ତିମୂଳକ କାର୍ଯ୍ୟ କରୁଥିଲେ ହେଁ ସେ ଏସବୁର ଅବିକଳ ନକଲ କରେ ନାହିଁ । ଅନୁଭୂତି ଫଳରେ ଏହାର ପରିବର୍ତ୍ତନ ଘଟୁଥାଏ । ମନୁଷ୍ୟର ବିବେକ, ବୁଦ୍ଧି ଓ ବିଚାର ଅଛି । ସେଥିପାଇଁ ସେ ଜୀବସୃଷ୍ଟିରେ ଅନନ୍ୟସାଧାରଣ ଓ ତା'ର ସ୍ୱଭାବ ଶିକ୍ଷାନୁକୂଳ । ସେ ନିଜେ ନିଜର ଗୁରୁ ହୋଇପଡେ ଓ ତା'ର ଜୀବନ ସର୍ବଦା ପରିବର୍ତ୍ତନୀୟ ହୁଏ । ଅବଶ୍ୟ ଏଥିରେ ମନୁଷ୍ୟଭେଦରେ ମାତ୍ରାର ପାର୍ଥକ୍ୟ ରହିଛି । କିନ୍ତୁ ସମସ୍ତେ ଜୀବନଶିକ୍ଷା ପାଆନ୍ତି । ଆନୁଷ୍ଠାନିକ ଶିକ୍ଷା ତ ଆମ ଦେଶରେ ଅନେକେ ପାଇ ନଥାନ୍ତି । କିନ୍ତୁ ସେମାନେ ସମସ୍ତେ ଜୀବନ ବିଦ୍ୟାଳୟର ଛାତ୍ର । ସେମାନଙ୍କ ସଂଚିତ ଅନୁଭବ, ଓ ଆଚରଣ ନିଶ୍ଚିତ ଭାବରେ ସମାଜର ସମ୍ବଳ ଓ ଗ୍ରହଣୀୟ । ସେହି କାରଣରୁ ବାହାରର ବା ବହିର ନଜିର ଓ ନମୁନା ଅକାମୀ ଓ ଅପ୍ରାସଙ୍ଗିକ ହୋଇପଡେ । ସାମାଜିକ ସମ୍ପର୍କ, ପ୍ରକୃତି ତଥା କାମଧନ୍ଦା ସହିତ ମନୁଷ୍ୟର ନିରନ୍ତର ଘାତପ୍ରତିଘାତ ଚାଲିଛି । ପରମ୍ପରାକ୍ରମେ ଓ ଏହି ସବୁ ପରିସ୍ଥିତିର ମୁକାବିଲା କରି ନୂତନ ଆଚରଣ-ପଦ୍ଧତିର ସେ ଅନୁସରଣ କରେ । ଏହା ମନୁଷ୍ୟକୁ ଅଧିକ କର୍ମକୁଶଳୀ, ସମାଜ–ନିପୁଣ ଓ ବ୍ୟକ୍ତି–ସାର୍ଥକ କରିପକାଏ । ଏହାହିଁ ଜୀବନଶିକ୍ଷା, ସ୍ୱୀୟ ଅନୁଭୂତିର ଶିକ୍ଷା । ଆତ୍ମଶିକ୍ଷା ଓ ଏହା ସ୍ୱୟଂଚାଳିତ । ଏହା ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଚାଲିଥାଏ ।

କାଳକ୍ରମେ ଆନୁଷ୍ଠାନିକ ଶିକ୍ଷାର ପ୍ରଚଳନ କରାଯାଇଛି । କିନ୍ତୁ ଜୀବନ ଶିକ୍ଷାର ଉଲ୍ଲିଖିତ ଖୁଅଟି ଏତେ ପରାକ୍ରମୀ, ପ୍ରବଳ ଓ ପ୍ରଭୁତ ଯେ ଆନୁଷ୍ଠାନିକ ଶିକ୍ଷା ଏହାକୁ ଆପଣାର କରିଛି । ସୂତାର ଖୁଅ ବିଗିଡ଼ି ଗଲେ କପଡ଼ା ବଇଁତିରି ଯାଏ ନାହିଁ । ଠିକ୍ ସେହିପରି ଜୀବନ ଶିକ୍ଷାର ଖୁଅକୁ ଧରି ନପାରି ଆନୁଷ୍ଠାନିକ ଶିକ୍ଷାର ମୂଳଦୁଆ ଠିକ ରହୁନାହିଁ । ଏହା ଫଳପ୍ରଦ ହେଉ ନାହିଁ । ଭାରତୀୟ ଶିକ୍ଷାର ଇତିହାସରେ ମହାତ୍ମା ଗାନ୍ଧୀ ପ୍ରଥମେ ଜାତୀୟ ଶିକ୍ଷାର ପରିକଳ୍ପନା କରିଥିଲେ ଓ ଏଥିରେ ଜୀବନ ଶିକ୍ଷାର

ଝୁଅଟିକୁ ପୋଡ଼ିଥିଲେ । ତାଙ୍କ ଭାଷାରେ, ଯେତେ ଛୋଟ ହେଉପଛକେ ଜୀବନରେ ଏପରି କିଛି ନାହିଁ, ଯେଉଁଥିପାଇଁ ଶିକ୍ଷାର ଚିନ୍ତା ପ୍ରକଟ କରାଯାଇ ପାରିବ ନାହିଁ "There is nothing in life, howsoever small, which is no the concern of education." ଏହା ଛଡ଼ା, ଶିକ୍ଷାକୁ ମାନବଜୀବନର ପ୍ରାକୃତିକ ବୃତ୍ତିଗତ ଓ ସାମାଜିକ ସମସ୍ୟା ସହିତ ଜଡ଼ିତ କରାଯାଇଛି । ଏହା କର୍ମ, ଓ ସମାଜସେବା କେନ୍ଦ୍ରିକ ହୋଇଅଛି । ଏହା ଫଳରେ ଶିକ୍ଷା ଜୀବନ ବ୍ୟାପୀ ତ କରାଯାଇଛି । ଏହା ମଧ୍ୟ ଜୀବନ ପାଇଁ ଓ ଜୀବନଯାପନ ମାଧ୍ୟମରେ ଶିକ୍ଷାର୍ଥୀମାନଙ୍କୁ ଦିଆଯାଉଛି । ତେଣୁ ଶିକ୍ଷା ଜୀବନଧର୍ମୀ ଓ ବାସ୍ତବ ହୋଉଛି । ଏହି ବିଷୟର ଶଂସିତ୍ତି ପୁସ୍ତକର ବିଭିନ୍ନ ପ୍ରବନ୍ଧ ମାଧ୍ୟମରେ ଯଥାସମ୍ଭବ ପରିସ୍ଫୁଟ କରାଯାଇଛି ।

ଶିକ୍ଷାର ବିଭିନ୍ନ ଦିଗରେ ପ୍ରବନ୍ଧଗୁଡ଼ିକୁ ପରିପଷ୍ଟ କରିବା ପାଇଁ ଉପଯୁକ୍ତ ଆଧୁନିକ ଚିନ୍ତାଧାରାକୁ ଯଥାସ୍ଥାନରେ ସନ୍ନିବେଶିତ କରାଯାଇଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତା-ଧାରାର ସମନ୍ୱୟ ପାଇଁ ଉଦ୍ୟମ ହୋଇଛି ।

ଅବଶ୍ୟ ପୁସ୍ତକର ଅଧିକାଂଶ ପ୍ରବନ୍ଧ ବିଭିନ୍ନ ଶିକ୍ଷାସମ୍ମେଳନରେ ପଠିତ ହୋଇ ଆଲୋଚନା କରାଯାଇଛି । ସେସବୁ ପ୍ରବନ୍ଧ ରାଜ୍ୟର ପତ୍ର ପତ୍ରିକାରେ ଓ ସମ୍ମେଳନ ସଂକ୍ରାନ୍ତ ସ୍ମରଣିକାରେ ପ୍ରକାଶ ପାଇଛି । କିନ୍ତୁ ଏହି ଅବସରରେ ସମସ୍ତଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ପ୍ରତ୍ୟେକଟିର ନାମୋଲ୍ଲେଖ କରିପାରୁନାହିଁ । ପରିଶେଷରେ ଏହି ପୁସ୍ତକ ପ୍ରକାଶନରେ ମୋର ଛାତ୍ର ଡକ୍ଟର ଭବଗ୍ରାହୀ ମିଶ୍ରଙ୍କ ଅକୁଣ୍ଠ ସହଯୋଗ ଅବିସ୍ମରଣୀୟ । ଏତକ ନ ମିଳିଥିଲେ ଅଧ୍ୟାପନା ଯେ ଅଧ୍ୟୟନସାପେକ୍ଷ ଏହି ସ୍ୱାଭାବିକ ସାଧନାର ପରିଣତିଗୁଡ଼ିକୁ ପୁସ୍ତକର କଳେବରରେ ପ୍ରକାଶ କରାହୋଇ ପାରି ନଥାନ୍ତା ।

ବିନୀତ ଲେଖକ

ଶତ୍ରୁଘ୍ନ ନାଥ

୬୮୯, ଶହୀଦ୍‌ନଗର

ଭୁବନେଶ୍ୱର–୭

**ଅଗଷ୍ଟ ପନ୍ଦର ୧୯୮୫**

# ଶିକ୍ଷା ଓ ବିଶ୍ୱଶାନ୍ତି

କେଉଁ କାଳର କଥା, କଟକ ଚିନ୍ତା ବାଇମୁଣ୍ଡି କି; କିନ୍ତୁ କାଳକାଳର କଥା, ଗୁହାଳୀର ଚିନ୍ତା ଅବଧାନ ବାପୁଡ଼ାକୁ । କଟକ ଚିନ୍ତା ପରି ଗୁହାଳୀର ଚିନ୍ତା ନୂଆ ରୂପ ନେଇଛି । ବେଶ୍ ଜଟିଳ ହୋଇଛି । ଏହାର ଅର୍ଥ ଅର୍ଥାନ୍ତର କରାଯାଉଛି । ବାଇମୁଣ୍ଡି ବି ବଦଳି ଯାଇଛି । ରାଜନୈତିକ ଓ ସାଂସ୍କୃତିକ ବାଇମୁଣ୍ଡିର ଉଦ୍ଭବ ହୋଇଛି । ଅବଧାନ ବାପୁଡ଼ା ଯେମିତି ସେମିତି । ଶିକ୍ଷାର ସବୁସ୍ତରରେ ବହୁ ସମ୍ପର୍କର ଘାତପ୍ରତିଘାତ ହେଉଥିଲେ ହେଁ ସେହି ଅବଧାନ, ଅଧ୍ୟାପକଙ୍କ ମୁଣ୍ଡରେ ସବୁ ଚିନ୍ତା । ଅଭିଭାବକ ନିରୁତ୍ତର, ନିଷ୍କ୍ରିୟ ଓ ଉଦାସୀନ; କାରଣ ପିଲେ ଘରୁ ଚାଲି ଯାଇଛନ୍ତି । ପାଖରେ ନାହାନ୍ତି, ମୁଣ୍ଡର ବୋଝ ହାଲୁକା ହୋଇଛି, ସବୁ ଶାନ୍ତ ହୋଇଛି । ବିଦ୍ୟାୟତନର ଚିନ୍ତାକୁ ଛାଡ଼ି ପ୍ରଶାସନର ଅସୁମାରି ଚିନ୍ତା; ଚିନ୍ତାଜର୍ଜର, ତେଣୁ ବିଦ୍ୟାର ଚିନ୍ତା ସେହି ଜଣଙ୍କ ମୁଣ୍ଡରେ, ସେ ଶିକ୍ଷକ । ଶିକ୍ଷାନୀତି ତ ସମସ୍ତଙ୍କ ଚରାଭୂଇଁ, ସମସ୍ତଙ୍କ ତୁଣ୍ଡରେ ପଦେ ପଦେ । କିନ୍ତୁ କରୁଛି କିଏ ? କିପରି ହେଉଛି ? ଏହାର ଉତ୍ତର ସେହି ଜଣକ ।

ଶ୍ରେଣୀର କାମ ଚାଲିଛି । କଳାପଟାଟି ଖତରା, ଖସି ପଡ଼ୁଛି, ଫାଳ ଫାଳ । ମଥାନ ମୁଣ୍ଡରୁ ପାଣିଧାର ସୁଅଫିଟାଇଛି କେତେ ଦିନରୁ କହିହେବ ନାହିଁ । ସେଥିରେ ଚିତ୍ର, ଚିତ୍ରାଙ୍କନ ଓ ଚରିତ୍ରଚିତ୍ରଣ । ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ପରି ପାଠ ସବୁଦିଗରୁ ଉପଭୋଗ୍ୟ । ଶିକ୍ଷକ ଓ ଶିକ୍ଷାର୍ଥୀ ଆନନ୍ଦରେ ବିଭୋର । କହୁଛନ୍ତି, କରୁଛନ୍ତି ଓ ଚିନ୍ତାଶାଣିତ ହେଉଛି । ନିଜକୁ ଭୁଲି ନାହାନ୍ତି, କିନ୍ତୁ ଆତ୍ମକୈନ୍ଦ୍ରିକ ହୋଇନାହାନ୍ତି । ଆଖି ଖୋଲି ଯାଉଛି, ଚିନ୍ତା ବିସ୍ତାରିତ ହେଉଛି । ନବଦିଗନ୍ତ ଫିଟି ଯାଉଛି, ଦିଗ୍‌ବଳୟ ଘୁଞ୍ଚି ଯାଉଛି, କେତେବାଟ ଯିବ ସମସ୍ତେ ଆଖିତରାଟି ଅନାଇଛନ୍ତି । ସେ ମୁହୂର୍ତ୍ତ ଆସିବ, ସମସ୍ତ ବିଶ୍ୱର ସମସ୍ୟା ନିଜ ପରିସରଭୁକ୍ତ ହେବ, ସମସ୍ତେ ଆଶାୟୀ ଓ ପ୍ରତ୍ୟାଶୀ । ନିଜ ଭିତରେ ବିଶ୍ୱର ସବୁକିଛି ଓ ସମସ୍ତେ ପ୍ରତିଫଳିତ ହେବେ, ନିଜର ଛାଇ ଓ ନିଜେ ଅନ୍ୟମାନଙ୍କ ଅନ୍ତରରେ ଫୁଟି ଦିଶିବ । ଏ ପ୍ରକାର ଆତ୍ମସନ୍ତୋଷ ଓ ଆତ୍ମବିଶ୍ୱାସ ରହିଛି । ବସ୍ତୁତଃ ଏହାହିଁ ବିଶ୍ୱଶାନ୍ତି ପାଇଁ ସୋପାନ ।

ଆମେ ତ ଜଣେ ଜଣେ । ଆମର ନିର୍ଦ୍ଦିଷ୍ଟ ସ୍ଥିତି ରହିଛି । ଆମ ପ୍ରତ୍ୟେକର ସମ୍ପର୍କ ମଧ୍ୟ ସସୀମ । ଚିନ୍ତାପରିସରର ଦୈର୍ଘ୍ୟ ଓ ପ୍ରସ୍ଥ ଅଛି । ଏହାର ବି ଉଚ୍ଚତା ରହିଛି । ପ୍ରତ୍ୟେକଙ୍କ ପାଇଁ ଏସବୁ ଜଣାଶୁଣା ଓ ଜୀବନ୍ତ । ପ୍ରତ୍ୟେକ ପରିବେଶର ସ୍ୱକୀୟ ଆକର୍ଷଣ ରହିଛି । ଏସବୁ କଥା ଯେପରି ସତ୍ୟ, ଆଉ ଗୋଟିଏ କଥା ସେହିପରି ଯୁଗପତ୍ ସତ୍ୟ, ତାହା ହେଉଛି, ଅନ୍ୟ ଭାବନା, ଅନ୍ୟପ୍ରତି ସମ୍ମାନ ଓ ସମବେଦନା, ମମତା ଓ ଅନୁରକ୍ତି, ପ୍ରୀତି ଓ ସଦ୍‌ଭାବନା । ଜଣାଶୁଣା ପରିସରର ସୀମାକୁ ଡ଼େଇଁ ଅଜଣା ବିଷୟରେ ଅଞ୍ଜଳି ହେବାର ମନୋଭାବ, ଚିନ୍ତା ପ୍ରକଟ କରିବାର ଆସକ୍ତି, ବୁଝିବା ଓ ଜାଣିବା ପାଇଁ ଉତ୍କଣ୍ଠା, ଏହି ଦୁଇ ମଧ୍ୟରେ ଦ୍ୱନ୍ଦ୍ୱ ନାହିଁ; ଅଛି ପରିପୂରକତା । ଆସକ୍ତିର ସମ୍ପ୍ରସାରଣରେ ଏହା ସମ୍ଭବ । ନିଜକୁ ଜାଣିବାର ଅଭିଜ୍ଞତା ଓ ଜ୍ଞାନର ସମ୍ପ୍ରସାରଣରେ ଅନ୍ୟକୁ ଜାଣିହୁଏ । ଚେତନାର ଚତୁଃସୀମା ପରିବାରରୁ ଗ୍ରାମକୁ, ଗ୍ରାମରୁ ଗ୍ରାମାନ୍ତର, ସ୍ୱଦେଶରୁ ଦେଶାନ୍ତର ଓ ଅବଶେଷରେ ବିଶ୍ୱକୁ ଟପିଯାଏ । ହିତ ବାଡ଼ ମୁକୁଳା ହୋଇଯାଏ, ବିଶ୍ୱଭାବନା ସ୍ୱକୀୟ ପରିସରଭୁକ୍ତ ହୁଏ, ଏହାହିଁ ମନୁଷ୍ୟ ଜୀବନର ସାର୍ଥକତା ଓ ସ୍ୱଭାବ, ବ୍ୟକ୍ତିସତ୍ତା ସଙ୍ଗେ ସଙ୍ଗେ ସାମାଜିକତାର ପରିପ୍ରକାଶ ଓ ସମ୍ପ୍ରସାରଣ ।

ଏ ବିଷୟରେ ତତ୍ତ୍ୱଦର୍ଶୀମାନଙ୍କ ଅନୁଭବ ଯେପରି ସୁସ୍ପଷ୍ଟ, ସମାଜ–ବିଜ୍ଞାନୀମାନଙ୍କର ପ୍ରମାଣ ସେହିପରି ପରୀକ୍ଷା–ଲବ୍‌ଧ । ବିଶ୍ୱକୁ ସମ୍ବୋଧିତ କରି ବେଦାନ୍ତ କହେ, **ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ** । ଭାରତୀୟ ଜନଜୀବନର ଉପାସନା ଓ ଦିନଚର୍ଯ୍ୟାରେ ପ୍ରତିଧ୍ୱନିତ ହୁଏ, ବସୁଧୈବ କୁଟୁମ୍ବକମ୍ । ସମଗ୍ର ବିଶ୍ୱପ୍ରତି କୌଟୁମ୍ବିକ ଭାବନା, ମାନବ ସମାଜ ପ୍ରତି ଭ୍ରାତୃତ୍ୱର ମମତା, କାରଣ ଚରାଚର ହେଉଛି ବିଶ୍ୱପିତାଙ୍କ ସୃଷ୍ଟି । ସେଥିପାଇଁ ଚରାଚରସ୍ୟ ହିତାୟ ସର୍ବଧର୍ମର ମୂଳମନ୍ତ୍ର ଓ ବିଶ୍ୱର ଚିରବାଞ୍ଛିତ ମୂଲ୍ୟବୋଧ । ଉଣେଇଶ ଶହ ବର୍ଷରୁ ଅଧିକ କାଳ ହେଲଣି, ଯିଶୁଖ୍ରୀଷ୍ଟ କହିଥିଲେ, ତୁମେ ନିଜକୁ ଯେପରି ଭଲପାଅ, ତୁମ ପଡୋଶୀକୁ ସେପରି ଭଲ ପାଇବ । Thou shalt love thy neighbour as thyself. ହିଂସାରେ ଜର୍ଜରିତ ବିଶ୍ୱ ଯୁଦ୍ଧର ସମ୍ମୁଖୀନ ହୋଇଅଛି ବା ହେବାପାଇଁ ପ୍ରସ୍ତୁତ ହେଉଅଛି । ଏପରି ସ୍ଥଳରେ ବେଦବେଦାନ୍ତର ବାଣୀ ଓ ଧର୍ମଗୁରୁମାନଙ୍କ ଉପଦେଶ ମାନବ–ସମାଜ କେବେ ଶୁଣିବ ଏହାହିଁ ଗଭୀର ଚିନ୍ତାର ବିଷୟ । ତଥାପି ମାନବ ହୃଦୟକୁ ବିଶ୍ୱଜୀବନ ପାଇଁ ପ୍ରସ୍ତୁତ କରିବାରେ ମନୀଷୀଗଣ ସେମାନଙ୍କ ପ୍ରଚେଷ୍ଟା ଅବ୍ୟାହତ ରଖିଛନ୍ତି । କବିଗୁରୁଙ୍କ

ପରୀକ୍ଷିତ ଶାନ୍ତିନିକେତନର ଧ୍ୟେୟ ହେଉଛି, ଯତ୍ର ବିଶ୍ୱଂ ଭବତ୍ୟେକ ନୀଡମ୍ । ଶ୍ରୀ ଅରବିନ୍ଦଙ୍କ ଯୋଗସାଧନାର ଚରମ ଧ୍ୟେୟ ହେଉଛି, ବ୍ୟକ୍ତିର ଦେଶ ସହିତ ଓ ପରିଶେଷରେ ବିଶ୍ୱ ସହିତ ସମନ୍ୱୟ ସାଧନ କରିବା । ସ୍ୱାମୀ ବିବେକାନନ୍ଦ, ଗାନ୍ଧୀ ପ୍ରଭୃତି ସାଧକଗଣ ଆଧ୍ୟାତ୍ମିକତା ଓ ନୈତିକତାର ଭିତ୍ତି ଉପରେ ମାନବସମାଜର ସଂହତି ପ୍ରତିଷ୍ଠା କରିବାର ଲକ୍ଷ୍ୟ ରଖିଛନ୍ତି । ଗାନ୍ଧୀଙ୍କ ଭାଷାରେ ମାନବ ସମାଜର ସେବାହିଁ ଈଶ୍ୱରଙ୍କ ସେବା । ସେହି ପରିପ୍ରେକ୍ଷିତରେ ବିନୋବାଙ୍କ ଧ୍ୱନୀ, **ଜୟ ଜଗତ, ଜୟ ଭାରତ** ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ସନ୍ଥକବି ଭୀମଭୋଇ ତାଙ୍କ ଗୁରୁ ଓ ମହିମା ଧର୍ମର ସଂସ୍ଥାପକ ମହିମାସ୍ୱାମୀଙ୍କ ଅଭୟପୟରରେ କାତର ନିବେଦନ କରିଛନ୍ତି, "ଏ ଜଗତ ଜନ ହତ ହୋଇଗଲେ କାହିଁ ପ୍ରଚରିବି ମୁହିଁ ?" ସେତିକି ନୁହେଁ, ସେ ନିଜକୁ ପ୍ରଭୁ ପାଦପଦ୍ମରେ ସମର୍ପଣ କରିବାକୁ ଦୃଢ଼ ପ୍ରତିଜ୍ଞ ହେଲେ, କାରଣ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" । ସେବେଠୁଁ ଏଯାଏଁ ଜଗତଭଗତ, ମହିମା ଧର୍ମାବଲମ୍ବୀଙ୍କର ଧ୍ୟାନ ଧାରଣାରେ ରହି ଆସିଅଛି । **ବିଶ୍ୱ ଅଧ୍ୟେ ପ୍ରତି ଉତ୍କଳବନ୍ଧୁର** ସଂକଳ୍ପ ନେଇ ସ୍ୱଦେଶପ୍ରେମୀ ଦରଦୀକବି ଗୋପବନ୍ଧୁ ଜାତୀୟ ମମତା ସହିତ ବିଶ୍ୱଜନ ପ୍ରୀତିର ନୀତିକୁ ତାଙ୍କ କବିତା, ଜୀବନ ତଥା ସାଧନା ମାଧ୍ୟମରେ ବିଶ୍ୱପ୍ରତି ଅର୍ପଣ କରି ଯାଇଛନ୍ତି । ସ୍ୱାର୍ଥକୁ ଆହୁତି ଦେଇ ଜାତିପ୍ରେମବହ୍ନି ପ୍ରଜ୍ୱଳିତ କରଗଲେ ଏହାର ଉଜ୍ଜ୍ୱଳ ସ୍ଫୁଲିଙ୍ଗ ହେବ ବିଶ୍ୱପ୍ରେମ । ବସ୍ତୁତଃ ସ୍ୱଦେଶ ବାତ୍ସଲ୍ୟର ସାର୍ଥକ ପରିଣତି ହୁଏ ବିଶ୍ୱଭ୍ରାତୃତ୍ୱ । ସମାଜବିଜ୍ଞାନୀମାନେ ଅନୁରୂପ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି । The will to give is as fundamental as the will to receive. ଦେବାର ସଂକଳ୍ପ ଯେତିକି ମୌଳିକ, ନେବାର ସଂକଳ୍ପ ସେତିକି । ସମୟ, ଶିକ୍ଷା ଓ ପ୍ରଭବର ଗତିରେ ସାମାଜିକୀକରଣର ସ୍ୱାଭବିକ ଅଙ୍ଗଭବରେ ମନୁଷ୍ୟ ଆନ୍ତର୍ଜାତିକ ମନୋଭବାପନ୍ନ ହୋଇଥାଏ । ଶାନ୍ତିରେ ମିଳିମିଶି ଚଳିବା ହେଉଛି ସୁଭ୍ୟଜୀବନ ଧାରଣର ପ୍ରଥମ ଆବଶ୍ୟକତା । ଯଦି ଏହା ହୋଇ ନ ପାରିଲା ତେବେ ଆମ ଶିକ୍ଷା, ରାଜନୀତି ଓ ସମାଜ ପରିଚାଳନାର ଅର୍ଥ କ'ଣ ?

ଆଜି କିନ୍ତୁ ସଙ୍କଟ । ଏହା ବାସ୍ତବ ଓ ଘନୀଭୂତ । ବହୁବିଧ ମାରଣାସ୍ତ୍ର ଯେପରି ଭୟାବହ, ସେସବୁର ପ୍ରୟୋଗରେ ମୁହୂର୍ତ୍ତକେ ସମସ୍ତ ବିଶ୍ୱକୁ ଧୂଳିସାତ୍ କରି ଦେବାର ବିପଦ ସେପରି ଆସନ୍ନ । ରାଜନୈତିକ ଝଡ଼ଝଞ୍ଜା ବିଶ୍ୱଜୀବନର ଚିରସହଚର । ସେ ଦୃଷ୍ଟିରୁ ଆମେ ସମଗ୍ର ଧ୍ୱଂସର ଦ୍ୱାରଦେଶରେ । ବିଜ୍ଞାନର ବିସ୍ଫୋରକ ବିକାଶ ଫଳରେ

ସାରା ସଂସାର ଆଜି "ଘର ବଖୁରିଏ" ପରି ହୋଇଛି । ଦୂରତା ଅତିକ୍ରାନ୍ତ ଓ ସେଥିପାଇଁ 'ଛଡ଼ାଛୋଡ଼ା" ଛିଡ଼ାଇ ଦେବାର ଜୀବନବ୍ୟାପୀ ସଂଗ୍ରାମ କରିବାର ନୁହେଁ । ବିଭିନ୍ନ ଦେଶର ସମସ୍ୟା ବ୍ୟକ୍ତିବିଶେଷଙ୍କର ସହଜ ଗୋଚରୀଭୂତ । ସୁତରାଂ ଆନ୍ତର୍ଜାତିକ ବୁଝାମଣା ଓ ସଦ୍‌ଭାବ ଆଜି ସହଜ ସମ୍ଭବ ହେବାର କଥା । କିନ୍ତୁ ସଂକୀର୍ଣ୍ଣତା, ସ୍ୱାର୍ଥାନ୍ଧତା ଓ ଅହମିକା ଆମକୁ ଏପରି କବଳିତ କରି ପକାଇଛି ଯେ ବିଜ୍ଞାନର ସୁଯୋଗ ନେବା ପରିବର୍ତ୍ତେ ଏହା ଆମ ପାଇଁ ନାହିଁ ନଥିବା ଦୁର୍ଯୋଗରେ ପରିଣତ ହୋଇଛି । ବ୍ୟକ୍ତି, ପରିବାର ଓ ଦେଶ ମଧ୍ୟରେ ଦୁର୍ଭେଦ୍ୟ ପ୍ରାଚୀର ଆମକୁ ଜାକି ଦେଉଛି । ସଂକୀର୍ଣ୍ଣତା ସୃଷ୍ଟି କରିଛି ବୈୟକ୍ତିକ, ସାମାଜିକ, ରାଜନୈତିକ ଆଦି ଯାବତୀୟ ବିଭାଜନ । ବିଭାଜନରୁ ବିବାଦ ଓ ବିବାଦରୁ ବିନାଶ । ସେଥିପାଇଁ କୁହାଯାଏ, ସମ୍ମେଳନ ଆଣିଦିଏ ସଂହତି ଓ ଉନ୍ନତି । କିନ୍ତୁ ବିଭାଜନରୁ ଜାତ ହୁଏ ଅଧୋଗତି ଓ ପତନ । ଏକଥା ଗୋଟିଏ ଦେଶ ପାଇଁ ଯେପରି ଲାଗୁହୁଏ, ବିଶ୍ୱ ପାଇଁ ମଧ୍ୟ ସେହିପରି ।

ଏପରି ସ୍ଥଳରେ ଆନ୍ତର୍ଜାତିକ ସହଯୋଗ ଅଧୁନା ଏକ ବାସ୍ତବତା । ଏହା ବିଶ୍ୱବ୍ୟାପୀ ସ୍ୱୀକୃତି ଲାଭ କରିଛି । କାରଣ ବିକାଶ ହେଉଛି ଏକ ସାମୂହିକ ଓ ଚିରନ୍ତନ ପ୍ରକ୍ରିୟା । ଏହା ମଧ୍ୟ ବିଶ୍ୱବ୍ୟାପୀ । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ, ସଂସ୍କୃତି, ଅର୍ଥନୀତି ଆଦି ଦିଗରୁ କୌଣସି ଦେଶର ବିକାଶ ଅନ୍ୟ ଦେଶର ବିନା ସହଯୋଗରେ ସମ୍ଭବ ନୁହେଁ । ଅଧିକନ୍ତୁ ପଡୋଶୀ ରାଷ୍ଟ୍ର ଓ ରାଷ୍ଟ୍ରଗୁଡ଼ିକର ବିନା ବିକାଶରେ କୌଣସି ଗୋଟିଏ ରାଷ୍ଟ୍ରର ବିକାଶ ଅର୍ଥହୀନ ହୋଇପଡ଼େ । ଏକଥା କୌଣସି ବ୍ୟକ୍ତି ବା ରାଷ୍ଟ୍ର ପକ୍ଷରେ ଯେପରି ପ୍ରଯୋଜ୍ୟ, ବିଶ୍ୱପକ୍ଷରେ ମଧ୍ୟ ସେହିପରି ।

ଆହୁରି ମଧ୍ୟ ଯୁଦ୍ଧର ବିରତିରୂପେ ସନ୍ଧି ସ୍ୱାକ୍ଷର କରି ଶାନ୍ତି ପ୍ରତିଷ୍ଠା କରାଯାଇ ନ ପାରେ । ଏହା କ୍ଷଣସ୍ଥାୟୀ । ଏହି ଦୃଷ୍ଟିରେ ଗଠିତ League of Nations ବିଫଳ ହେଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ବିଶ୍ୱବକ୍ଷରେ ବିଭୀଷିକା ସୃଷ୍ଟି କଲା । ଏସବୁ ଅଭିଜ୍ଞତାରୁ ଜନ୍ମ ନିଏ ମିଳିତ ଜାତିସଂଘ । UNESCO ଆଦି ଏହାର ବହୁବିଧ ଅଙ୍ଗଗୁଡ଼ିକ ଶାନ୍ତି ପ୍ରତିଷ୍ଠା ପାଇଁ ମାନବସମାଜର ସମସ୍ୟାଗୁଡ଼ିକୁ ସମାଧାନ କରିବା ଉଦ୍ଦେଶ୍ୟରେ ଆନ୍ତର୍ଜାତିକ ସହଯୋଗ, ଆଲୋଚନା, ବିଚାରବିମର୍ଷ ଓ କଥୋପକଥନ ପାଇଁ ସୁଯୋଗ ସୃଷ୍ଟି କଲା । ଅଶାନ୍ତିର ଅଭାବରେ ଶାନ୍ତି ମିଳେ ନାହିଁ । ଶାନ୍ତିର ସ୍ୱକୀୟ ଅସ୍ତିତ୍ୱ ରହିଛି । ଇଉନେସ୍କୋଙ୍କ ବିଚାର ଅନୁସାରେ Since wars begin

in the minds of men, it is in the minds of men that the defences of peace must be constructed. ଦେଶ ଦେଶ ମଧ୍ୟରେ ବିଦ୍ୱେଷ, ଘୃଣା, ସନ୍ଦେହ, ଅବିଶ୍ୱାସ, କୁହାରଟନା, ଆକ୍ରମଣର ମନୋଭାବ ଆଦି ଯୁଦ୍ଧ ପାଇଁ କ୍ଷେତ୍ର ପ୍ରସ୍ତୁତ କରେ । ଏହା ବନ୍ଧୁକ, ହାତହତିଆରର ଯୁଦ୍ଧ ହୁଏ ନାହିଁ । ବୁଦ୍ଧିର, ଜ୍ଞାନର ଯୁଦ୍ଧ ହୁଏ । ତେଣୁ ଶାନ୍ତିର ସୁରକ୍ଷାଖୁଣ୍ଟି ମନୁଷ୍ୟ ମନରେ ପୋତିବାକୁ ହେବ । ମନରେ ଶାନ୍ତିର ମଞ୍ଜି ବୁଣାଯାଇ ପାରିବ । ମନର ମୂଳେ ଏ ଜଗତ । ମନରେ ଜ୍ଞାନ ଉଦୟ ହେଲେ ଶାନ୍ତି, ସଦ୍‌ଜ୍ଞାନ, ସହୃଦୟତା, ସହାନୁଭୂତି ଓ ସମବେଦନା ଆସିବ । ସେଥିପାଇଁ ଇଂରାଜୀକବି ଟେନିସନ କହନ୍ତି,

If knowledge brings the sword,
That knowledge takes the sword away.

ଠିକ୍ ସେହି ମର୍ମରେ ଆଚାର୍ଯ୍ୟ କୃପାଲିନୀ କହିଥିଲେ, Democracy without education is the government of the cattle, by the cattle and for the cattle. ଗଣତନ୍ତ୍ର, ପ୍ରଗତି ଓ ଶାନ୍ତି ମନୁଷ୍ୟର ଦିବ୍ୟ ଚେତନା ଉପରେ ଆଧାରିତ ଓ ଏହି ଚେତନାକୁ ଜାଗ୍ରତ, ଉଦ୍‌ବୁଦ୍ଧ ଓ ସମୃଦ୍ଧ କରିବା ପାଇଁ ଉପଯୁକ୍ତ ଶିକ୍ଷା ଆବଶ୍ୟକ । ଦାନବ ସ୍ତରକୁ ମାନବର ଅଧଃପତନ ନ ହୋଇ ସେ ଦେବ ଭୂମିକାରେ ଅଳଂକୃତ ହେବ । ସେହି ଶିକ୍ଷା ଆବଶ୍ୟକ, ଯହା ପ୍ରପଞ୍ଚ, କୁସଂସ୍କାର ଓ ସଙ୍କୀର୍ଣ୍ଣତାରୁ ମନୁଷ୍ୟକୁ ମୁକ୍ତ କରି ତାକୁ ମାନବିକ ହେବାରେ ସାହାଯ୍ୟ କରିବ । ତାହାହେଲେ ସମତା, ସହଯୋଗ, ସ୍ୱାଧୀନତା, ସହିଷ୍ଣୁତା ଆଦି ସଦ୍‌ଗୁଣରେ ସେ ଭୂଷିତ ହେବ । ଜେ. କୃଷ୍ଣମୂର୍ତ୍ତିଙ୍କ ଭଷାରେ "ଶାନ୍ତି କେବଳ ସେତେବେଳେ ଆସିବ, ଯେତେ-ବେଳେ ଆମେ ବହିରାବରଣ ତଳେ କ'ଣ ଅଛି ବୁଝିପାରିବା ଓ ତେଣୁ ଆମ ଆକ୍ରମଣ-ମୂଳକ ମନୋଭାବ ଏବଂ ଭୟ ହେତୁରୁ ଯେଉଁ ଧ୍ୱଂସର ସୁଅ ଛୁଟିଛି ତାକୁ ବନ୍ଦ କରି ପାରିବା ଓ କେବଳ ସେତେବେଳେ ଆମ ପିଲାଙ୍କ ପାଇଁ ଆଶା ଓ ବିଶ୍ୱ ପାଇଁ ମୁକ୍ତି ରହିବ ।" ଏହା ହେବ Wendell Wilkieଙ୍କ ଏକ ବିଶ୍ୱ ।

ଏଥିପାଇଁ ଶିକ୍ଷାରେ ତାଳିପକା ସଂସ୍କାର କଲେ ଚଳିବ ନାହିଁ । କିମ୍ବା ଆମ ପ୍ରାଚୀନ ଧାରଣାଗୁଡ଼ିକ ଓ କୁସଂସ୍କାରର ପୁନଃ ବିନ୍ୟାସ କଲେ ହେବ ନାହିଁ । ଉଦ୍ଦେଶ୍ୟର ପୁନଃକଥନ ନିମ୍ନମତେ କରିବାକୁ ପଡ଼ିବ ।

( ୧ ) ପିଲମାନଙ୍କୁ ଆନ୍ତର୍ଜାତିକ ମନୋଭାବାପନ୍ନ ହେବାରେ ସାହାଯ୍ୟ କରିବା,

( ୨ ) ସତ୍ୟ, ସାଧୁତା, ସହାବସ୍ଥାନ, ସହଯୋଗ, ସହନଶୀଳତା ଆଦି ମୂଲ୍ୟ-ବୋଧକୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ପିଲଙ୍କ ଆଚରଣରେ ଫଳାଇବା ।

( ୩ ) ପିଲଙ୍କର ମାନସିକ ଦିଗ୍‌ବଳୟର କ୍ରମ ସଂପ୍ରସାରଣ ପାଇଁ ଉଦ୍ୟମ କରିବା,

( ୪ ) ବ୍ୟକ୍ତି, ପରିବାର, ଗ୍ରାମ ଓ ରାଜ୍ୟ ମଧ୍ୟରେ ପରସ୍ପର ନିର୍ଭରଶୀଳତା ଉପରେ ବିଭିନ୍ନ ବିଷୟର ଶିକ୍ଷା ମାଧ୍ୟମରେ ଗୁରୁତ୍ୱ ଦେବା,

( ୫ ) ଜାତୀୟ ନିଷ୍ଠା ଓ ଆନ୍ତର୍ଜାତିକ ସଦ୍‌ଭାବ ତଥା ବ୍ୟକ୍ତି ଓ ସମାଜ ଯେ ପରସ୍ପର ପରିପୂରକ ଏହା ପ୍ରତିପାଦନ କରିବା ।

ଏପରିଭାବରେ ଉଦ୍ଦେଶ୍ୟର ନିର୍ଣ୍ଣୟ କରିବା ପରେ ତଦନୁରୂପ .ପାଠ୍ୟକ୍ରମ ସମ୍ବନ୍ଧରେ ଚିନ୍ତା କରାଯାଇପାରେ । ଏଥିପାଇଁ ପ୍ରଚଳିତ ପାଠ୍ୟକ୍ରମରେ ଆଂଶିକ ପରିବର୍ତ୍ତନ କରି ସମସ୍ତ ବିଷୟକୁ ସେହିସବୁ ଉଦ୍ଦେଶ୍ୟ ଅନୁକୂଳ କରାଯାଇପାରେ । ଇଉନେସ୍କୋର ମାର୍ଗଦର୍ଶନରେ ଇତିହାସ, ଭୂଗୋଳ, ସମାଜବିଜ୍ଞାନ, ଭାଷା ସମ୍ବନ୍ଧୀୟ ପାଠ୍ୟପୁସ୍ତକର ଓ ବିଷୟସୂଚୀର ବାରମ୍ବାର ସମୀକ୍ଷା କରାଯାଉଛି । ସେଥିରେ ଯେପରି ଦେଶ ଦେଶାନ୍ତର ମଧ୍ୟରେ ସଂକୀର୍ଣ୍ଣତା, ମତାନ୍ଧତା ଓ ପକ୍ଷପାତିତା ପ୍ରତିଫଳିତ ନ ହୁଏ ସେଥିପାଇଁ ଦୃଷ୍ଟି ଦିଆଯାଉଛି । ବିଶ୍ୱର ବିଭିନ୍ନ ଅଞ୍ଚଳର କଳା, ସାହିତ୍ୟ, ସଂସ୍କୃତି ଆଦି କ୍ଷେତ୍ରରୁ ସର୍ବୋତ୍ତମ ଅଂଶଗୁଡ଼ିକୁ ନିର୍ବାଚନ କରି ସେସବୁକୁ ବିଭିନ୍ନ ଭାଷାରେ ଅନୁବାଦ କରାଯାଇପାରେ । ଏହାଦ୍ୱାରା ବିଭିନ୍ନ ଲୋକଙ୍କର ମାନସପଟରେ ସେସବୁ ଦେଶର ପ୍ରତିଛବି ଉଦ୍ଭାସିତ ହୋଇପାରିବ । ବିଭିନ୍ନ ଦେଶର ଲୋକଙ୍କୁ ଭ୍ରାତୃତ୍ୱ ରଜ୍ଜୁରେ ବାନ୍ଧିବା ପାଇଁ ଲୋକନୃତ୍ୟ, ଲୋକକଥା, ପରମ୍ପରା ଆଦିକୁ ବୁଣି ଦେଇ ହେବ । ଏଥିରେ ଗଣମାଧ୍ୟମ ସହାୟକ ହେବ । ପ୍ରକୃତତଃ ଅଜ୍ଞତା ହିଁ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଦୂରତ୍ୱ ସୃଷ୍ଟି କରେ । ଭ୍ରାନ୍ତଧାରଣା ମନକୁ ଆସିଯାଏ । ଏହା ବିଶ୍ୱପ୍ରେମର ବ୍ୟାଧିସ୍ୱରୂପ କାର୍ଯ୍ୟ କରେ । ଅଜ୍ଞତା ଦୂର କରି ଲୋକ ଲୋକ ମଧ୍ୟରେ ଭାଇଭାବନା ଓ ମୈତ୍ରୀ ସୃଷ୍ଟି କରିବା ପାଇଁ ଶିକ୍ଷାର୍ଥୀ, ଶିକ୍ଷକ, ବିଭିନ୍ନ ବିଷୟ–ବିଶାରଦ ତଥା ପଣ୍ଡିତମାନଙ୍କର ଦେଶାନ୍ତର ଭ୍ରମଣ ଓ ମିଳନର ବ୍ୟବସ୍ଥା କରାଯାଇପାରେ । ସେଥିପାଇଁ ଜାତୀୟ ସ୍ତରରେ ଯେପରି, ଆନ୍ତର୍ଜାତିକ ସ୍ତରରେ ସେହିପରି ସଭା, ସମିତି ଓ ସମ୍ମିଳନୀ ଆୟୋଜନ କରାଯାଉଛି ଓ ଅଧିକରୁ ଅଧିକ ହେବା ଉଚିତ । ବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟ ସ୍ତରରେ

ବିଦ୍ୟାର୍ଥୀମାନଙ୍କ ପାଇଁ ପତ୍ରବନ୍ଧୁତ୍ୱର ବ୍ୟବସ୍ଥା ରହିଛି । ତଦ୍ୱାରା ଦୁଇ ଦେଶର ଛାତ୍ରମାନଙ୍କ ଦୃଷ୍ଟି ଓ ଦୃଷ୍ଟିକୋଣ ତଥା ତତ୍‌ସମ୍ପୃକ୍ତ ପରିବେଶ ଏବଂ ଭାବ ଓ ଭାବନାର ବିନିମୟ କରାଯାଇପାରିବ । ବିଭିନ୍ନ ଆନ୍ତର୍ଜାତିକ ସଂଗଠନ ଏହି କାର୍ଯ୍ୟକ୍ରମର ପୃଷ୍ଠପୋଷକତା କରନ୍ତି । ପତ୍ରବନ୍ଧୁତ୍ୱରେ ଗୋଟିଏ ଦେଶର ଛାତ୍ରକୁ ଅନ୍ୟ ଦେଶକୁ ଯିବାକୁ ପଡେ ନାହିଁ । ଅନ୍ୟ ଏକ କାର୍ଯ୍ୟକ୍ରମ ରହିଛି, ଯଦ୍ୱାରା ଗୋଟିଏ ଦେଶର ଛାତ୍ରମାନଙ୍କୁ ଦଳ ଦଳ କରି ଦେଶାନ୍ତରକୁ ପଠାଯାଏ ଓ ସେମାନେ ସେଠି ବିଭିନ୍ନ ପରିବାରରେ କିଛି ସମୟ ପାଇଁ ଜୀବନ ଅତିବାହିତ କରନ୍ତି, ପ୍ରତ୍ୟକ୍ଷ ଧାରଣା ଗ୍ରହଣ କରନ୍ତି । ଛାତ୍ରମାନଙ୍କୁ ବିଭିନ୍ନ ଦେଶର ଡାକ ଟିକେଟ, ମୁଦ୍ରା, ଜାତୀୟ ପତାକା ଆଦି ସଂଗ୍ରହ କରିବାକୁ ଉତ୍ସାହିତ କରାଯାଏ । ଏପରି କରି ସ୍କୁଲମାନଙ୍କରେ ଯାଦୁଘର କରାଯାଇପାରେ । ଏହାଦ୍ୱାରା ଅନ୍ୟ ଦେଶ ସମ୍ବନ୍ଧରେ ଅଧିକ ଜାଣିବା ପାଇଁ ଆଗ୍ରହ ସୃଷ୍ଟି କରାଯାଇପାରେ । ସଂଗୃହୀତ ଉପାଦାନଗୁଡ଼ିକୁ ଆଧାରିତ କରି ସେସବୁ ଦେଶର ଇତିହାସ, ଭୂଗୋଳ, ସଂସ୍କୃତି ଆଦି ବିଷୟରେ ଶିକ୍ଷା ଦିଆଯିବ । ସମୟ ସମୟରେ ପ୍ରଦର୍ଶନୀ ଓ ପ୍ରତିଦ୍ୱନ୍ଦିତା କରାଯାଇ ପୁରସ୍କୃତ କରାଗଲେ ଆଗ୍ରହ ନିଶ୍ଚିତଭାବରେ ଶତଗୁଣିତ ହେବ ଓ ଏହା ଶିକ୍ଷାର୍ଥୀମାନଙ୍କୁ ଆନ୍ତର୍ଜାତିକ ମନୋଭାବାପନ୍ନ କରିବାରେ ସହାୟକ ହେବ ।

ଶିକ୍ଷାକୁ ଶାନ୍ତି ପ୍ରତିଷ୍ଠାର ଆୟୁଧ କରିବା ପାଇଁ ଦୀର୍ଘମିଆଦୀ ହେଉ ବା ସ୍ୱଳ୍ପ-ମିଆଦୀ ହେଉ କେତେକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ହାତକୁ ନିଆଯାଇପାରେ । ବ୍ୟାପକ ବିଶ୍ୱସମସ୍ୟାଗୁଡ଼ିକୁ ଶ୍ରେଣୀ କୋଠରୀର ସୀମିତ ପରିସର ମଧ୍ୟରେ ପ୍ରତିଫଳିତ କରାଯାଇପାରେ । ଆଲୋଚନା, ଯୁକ୍ତିତର୍କ, ପ୍ରଦର୍ଶନୀ, ଦଳଗତ ଅଧ୍ୟୟନ, ବକ୍ତୃତା ବିଶେଷଜ୍ଞଙ୍କ ସହିତ ବିଚାର, ପ୍ରଶ୍ନୋତ୍ତର ଆଦି ଏହାର ମାଧ୍ୟମ ହେବ । ସେସବୁ ହେଉଛି; (୧) ଶାନ୍ତି ଓ ନିରାପତ୍ତା ଶୀର୍ଷକ ସମସ୍ୟା, (୨) ନିରସ୍ତ୍ରୀକରଣ ସମସ୍ୟା, (୩) ମାନବିକ ଅଧିକାର ଓ ମୌଳିକ ସ୍ୱାଧୀନତା ସଂପୃକ୍ତ ସମସ୍ୟା, (୪) ଜନସଂଖ୍ୟା ଶୀର୍ଷକ ସମସ୍ୟା, (୫) ଦାରିଦ୍ୟ ଓ ଅର୍ଥନୈତିକ ପ୍ରଗତି ସଂପୃକ୍ତ ସମସ୍ୟା, (୬) ମାନବିକ ପରିବେଶ ସମସ୍ୟା, (୭) ସମୁଦ୍ର ଓ ସମୁଦ୍ରଶଯ୍ୟା ସମ୍ପୃକ୍ତ ସମସ୍ୟା, (୮) ଶ୍ରମିକଙ୍କ ପାଇଁ ସାମାଜିକ ନ୍ୟାୟର ସମସ୍ୟା, (୯) ଖାଦ୍ୟ ଓ କ୍ଷୁଧା ଶୀର୍ଷକ ସମସ୍ୟା, (୧୦) ସ୍ୱାସ୍ଥ୍ୟ ସଂକ୍ରାନ୍ତ ସମସ୍ୟା, (୧୧) ଶିଶୁ ଓ ଯୁବ ସମ୍ପ୍ରଦାୟର ସମସ୍ୟା, (୧୨) ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ସମ୍ବନ୍ଧୀୟ ସମସ୍ୟା ଇତ୍ୟାଦି । ପଠନର ପରିସର ଓ ଗଭୀରତା ପାଠକମାନଙ୍କ

ମାନସିକ ବିକାଶ ଓ ପୁସ୍ତକାଗାର ଆଦି ଉପରେ ନିର୍ଭର କରିବ । କୌଣସି ଗୋଟିଏ ଶ୍ରେଣୀରେ ଉଲ୍ଲିଖିତ ସମସ୍ୟାକୁ ଏକତ୍ର ଆରମ୍ଭ ନ କରି ସୁବିଧାନୁସାରେ ଏକ ବା ଏକାଧିକ ସମସ୍ୟା ଉପରେ ଦୃଷ୍ଟି ନିକ୍ଷେପ କରାଯାଇପାରେ ।

ଏହାଛଡ଼ା ନିମ୍ନମାଧ୍ୟମିକ ସ୍କୁଲର ଉପର ଦୁଇ ଶ୍ରେଣୀରେ ଓ ଉଚ୍ଚ ମାଧ୍ୟମିକ ଶ୍ରେଣୀଦ୍ୱୟରେ ପିଲାମାନଙ୍କୁ କେତେକ ପ୍ରକଳ୍ପ ଦିଆଯାଇପାରେ । ସେସବୁ ପ୍ରକଳ୍ପ ହେଉଛି : (୧) ଆମ୍ଭେମାନେ କିପରି ଖାଉଁ, ? (୨) ଆମେ ଖାଦ୍ୟ କିପରି ପ୍ରସ୍ତୁତ କରୁଁ ? (୩) ଆମ ପୋଷାକ ଓ ପିନ୍ଧା କିପରି ? (୪) ଆମ ବାସଗୃହ କିପରି ? ଇତ୍ୟାଦି । ଜଣ ଜଣ କରି ବା କେତେ ଜଣ ପିଲେ ମିଳିମିଶି ଗୋଟିଏ ଗୋଟିଏ ପ୍ରକଳ୍ପକୁ ଭୂଗୋଳ, ସମାଜବିଜ୍ଞାନ ଆଦି ବିଷୟର ଶିକ୍ଷକଙ୍କ ମାର୍ଗଦର୍ଶନରେ ମାସେ ବା ଦୁଇମାସ ମଧ୍ୟରେ ସମ୍ପନ୍ନ କରିବେ । ଖଣ୍ଡେ ଖଣ୍ଡେ ଖାତା କରି ସାରବିଶ୍ୱର ପରିପ୍ରେକ୍ଷୀରେ ଖାଦ୍ୟ, ବାସଗୃହ ଓ ପୋଷାକ ମାନବ-ଜାତିର ଏହି ତିନୋଟି ମୌଳିକ ସମସ୍ୟା ସମ୍ବନ୍ଧରେ ବିବରଣୀ ସଂଗ୍ରହ କରିବେ । Lands and People ପରି ଗ୍ରନ୍ଥ, ଜ୍ଞାନମଣ୍ଡଳ, ବିଶ୍ୱକୋଷ ଆଦିରୁ ବର୍ଣ୍ଣନା ସଂଗ୍ରହ କରି ଆବଶ୍ୟକସ୍ଥଳେ ଖଞ୍ଜି ଦେବେ । ବିଭିନ୍ନ ଛବିଳ ପତ୍ରପତ୍ରିକାରୁ ଚିତ୍ର, ଦୃଶ୍ୟାବଳୀ କାଟି ସେହି ଖାତାରେ ଖଚିତ କରିବେ । ନିଜ ହାତରେ କିଛିଟା ଅଙ୍କନ କରିବେ । ଏସବୁର ପ୍ରଦର୍ଶନୀ କରାଯିବ । ବିଶ୍ୱର ସୁବିସ୍ତୃତ ବିଭିନ୍ନତା ବିଷୟରେ ଜ୍ଞାନ ବଢ଼ିବ ଓ ସେମାନଙ୍କର ଆଖି ଖୋଲିଯିବ । ବ୍ୟକ୍ତି ଓ ଦେଶର ଚେତନା କ୍ରମେ ସଂପ୍ରସାରିତ ହୋଇ ବିଶ୍ୱଚେତନା ସହିତ ସମନ୍ୱିତ ହୋଇଯିବ ।

ବିଶ୍ୱଶାନ୍ତି ପାଇଁ ପ୍ରତିଷ୍ଠିତ ସଂଗଠନ ଓ ସେସବୁର ସାଫଲ୍ୟ ତଥା ବୈଫଲ୍ୟ ସମ୍ବନ୍ଧରେ ଶିକ୍ଷା ଦିଆଯିବ । ମିଳିତ ଜାତିସଂଘ ଓ ଏହାର ବିଭିନ୍ନ ବିଶେଷ ସଂଗଠନ ସମ୍ବନ୍ଧରେ ଶିକ୍ଷା ଦିଆଯିବ । ସେମାନଙ୍କର ଆଦର୍ଶ, ଆଭିମୁଖ୍ୟ ଓ ପ୍ରତ୍ୟୟ (Concepts) ସମ୍ବନ୍ଧରେ ଧାରଣା ଦିଆଯିବ । ଆଞ୍ଚଳିକ ଭାଷାରେ ଏ ପ୍ରକାର ସରଳ ପୁସ୍ତକ ରହିବା ଉଚିତ । ବିଶ୍ୱବନ୍ଧୁ, ଜଗତରେ ଭାରତ ପରି ପୁସ୍ତକ ଲେଖକର ପ୍ରଥମ ପ୍ରଚେଷ୍ଟା ଓ ଏହା ଏକଦା ଛାତ୍ରଛାତ୍ରୀମାନଙ୍କର ଆଦର ଲାଭ କରିଥିଲା ।

ଆମ ସଂସ୍କୃତିର ବିଶ୍ୱପ୍ରେମ ସହାୟକ ଉକ୍ତି ଓ ସୂକ୍ତିଗୁଡ଼ିକୁ ସଂଗ୍ରହ କରି ଗଳ୍ପ ମାଧ୍ୟମରେ ଶିକ୍ଷା ଦିଆଯିବ । ଏସବୁ ମଧ୍ୟରୁ କେତୋଟି ହେଉଛି :"ଚରାଚରସ୍ୟ ହିତାୟ; ବସୁଧୈବ କୁଟୁମ୍ବକମ୍, ମାନବ ଦେହେ ଦିବ୍ୟ ଜ୍ଞାନ, ଦେଖି ସନ୍ତୁଷ୍ଟ ଭଗବାନ;

" ଏକମ୍ ସତ୍, ବିପ୍ରାଃ ବହୁଧା ବଦନ୍ତି"; ସତ୍ୟମେବ ଜୟତେ; ମାନବ ସେବାହିଁ ଈଶ୍ୱର ସେବା; ନରନାରାୟଣ; ସର୍ବଜନହିତେରତା ଇତ୍ୟାଦି

ବିଭିନ୍ନ ଭାଷା, ସମୟ ଓ ସ୍ଥାନର ପ୍ରଖ୍ୟାତ ଭ୍ରମଣ ବୃତ୍ତାନ୍ତ ସହିତ ପିଲାଙ୍କୁ ପରିଚିତ କରାଯିବ । କଳ୍ପନାବିଳାସୀ ଚପଳମତି ବାଳଯୁବାମନରେ ଭ୍ରମଣର ରୋମାଞ୍ଚ ପରିରାଇଜକୁ•ନ ନେଇ ବିଶ୍ୱବିଳାସୀ କରିପକାଇବା । ଅଖ୍ୟାତ ପୁରପଲ୍ଲୀର ବିଭିନ୍ନ ସ୍ଥର, ସମୟ ଓ ସାଧନାରେ ସୁଖ୍ୟାତ ମନୀଷୀମାନଙ୍କ କାହାଣୀ ବିଶ୍ୱଚରିତ୍ର ନିର୍ମାଣରେ ପରିପୋଷକ ହେବ । ପ୍ରତ୍ୟେକ ଶ୍ରେଣୀ ପାଇଁ ଗ୍ଲୋବ (ଭୂମଣ୍ଡଳ)ରେ ଜଗତରେ ଭାରତ ଚିହ୍ନ ତ ହୋଇ ପରିଦର୍ଶିତ ହେବ । ଆବଶ୍ୟକ ପଡ଼ିଲେ, ହାତତିଆରି ଗ୍ଲୋବ ସ୍ୱଳ୍ପ ମୂଲ୍ୟରେ ଶିକ୍ଷକ ଓ ତାଙ୍କ ପ୍ରେରଣାରେ ଶିକ୍ଷାର୍ଥୀ କରି ପାରିବେ । ବିଶ୍ୱଭାବନାର ସହାୟକ ବାୟୁମଣ୍ଡଳ ଶ୍ରେଣୀ କୋଠରୀରେ ସୃଷ୍ଟି କରାଯାଇପାରିବ ।

ଆମ ଦେଶର ବିଭିନ୍ନ ଭାଷା ଶିକ୍ଷା ଯେପରି ଆମ ସାଂସ୍କୃତିକ ଏକାତ୍ମତା ଓ ଜାତୀୟ ସଂହତି ରକ୍ଷା ଦିଗରେ ସାହାଯ୍ୟ କରେ, ବିଶ୍ୱର ବିଭିନ୍ନ ଭାଷା ଶିକ୍ଷା କଲେ ଏହା ସେହିପରିଭାବରେ ଆମକୁ ଆନ୍ତର୍ଜାତିକ ମନୋଭାବାପନ୍ନ କରିବାରେ ଉତ୍ସାହପ୍ରଦ ହୁଏ । ତ୍ରିଭାଷୀ ସୂତ୍ର ଓ କୋଠାରୀ କମିଶନଙ୍କ ସୁପାରିଶ ଅନୁସାରେ ସ୍କୁଲ ସ୍ତରରେ ଅଧ୍ୟୟନ ପାଇଁ ଇଂରାଜୀ ଭାଷାହିଁ ଶିକ୍ଷାର ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇ ରହିବ । କୋଠାରୀ କମିଶନ ମଧ୍ୟ ମତ ଦିଅନ୍ତି ଯେ ରୁଷ, ଜର୍ମାନ, ଫରାସୀ, ସ୍ପେନିଶ୍, ରୁଚ୍ଛନିଜ କିମ୍ବା ଜାପାନିଜ୍ ପ୍ରଭୃତି ଭାଷା ଅଧ୍ୟେତବ୍ୟ । କେତୋଟି ନିର୍ଦ୍ଦିଷ୍ଟ ବିଦ୍ୟାଳୟରେ ଇଂରାଜୀ ବା ହିନ୍ଦୀ ପରିବର୍ତ୍ତେ ବା ଏହାଛଡ଼ା ଏସବୁ ମଧ୍ୟରୁ ଗୋଟିଏ ଭାଷା ଅଧ୍ୟୟନ କରିବାରେ ସୁଯୋଗ ରହିବ । ଅବଶ୍ୟ ବିଶ୍ୱବିଦ୍ୟାଳୟ ସ୍ତରରେ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ଅନୁସାରେ ରୁଷ, ଜର୍ମାନ ପ୍ରଭୃତି ଭାଷା ଅଧ୍ୟୟନ ପାଇଁ ବ୍ୟବସ୍ଥା ରହିଛି ।

ପୂର୍ବରୁ ସୂଚିତ ହୋଇଅଛି ଯେ ଛାତ୍ରମାନେ ମିଳିତ ଜାତିସଂଘ ସମ୍ବନ୍ଧରେ ଅବହିତ ହେବା ଉଚିତ । ଏହା କିପରି କାର୍ଯ୍ୟ କରୁଛି ଏହା ଜାଣିବା ଦରକାର । ନିରାପତ୍ତା ପରିଷଦ, ମିଳିତ ଜାତିସଂଘର ସାଧାରଣ ସମ୍ମିଳନୀର ପ୍ରହସନ ଅଧିବେଶନ କରି ପିଲାମାନଙ୍କୁ ବିଭିନ୍ନ ଭୂମିକା ଗ୍ରହଣ କରିବାକୁ ସୁଯୋଗ ଦିଆଯାଇପାରେ ।

କୌଣସି କୌଣସି ଶିକ୍ଷାୟତନ ମିଳିତ ଜାତିସଂଘର ଆଦର୍ଶ ପ୍ରତି ନିଜକୁ ସମର୍ପଣ କରି ମିଳିତ ଜାତି ଅନୁଷ୍ଠାନ ହୋଇପାରେ ।

ପରିଶେଷରେ ଗାନ୍ଧୀଙ୍କର ଗୋଟିଏ ଉକ୍ତି ସ୍ମରଣ କରିବା । ସେହି ଉକ୍ତିର ମର୍ମ ହେଉଛି : "ମୁଁ ମୋ ଘରର କବାଟ, ଝରକା ଆଦି ଖୋଲି ରଖିବି, ଯାହାଫଳରେ ବାହାରର ଆଲୋକ ଓ ପବନ ମୋ ଘରେ ଅବାଧରେ ପଶି ପାରିବ । କିନ୍ତୁ ମୁଁ ମୋ ଘରକୁ ଉଡ଼ିଯିବାକୁ ଦେବି ନାହିଁ, ଯଦିଓ ବାହାରର ପବନ ଓ ଆଲୋକ ଦ୍ୱାରା ମୁଁ ସମୃଦ୍ଧ ହେବି ।" ତାହାହିଁ କରିବା ଓ ପ୍ରାର୍ଥନା କରିବା ଆନୋ ଭଦ୍ରାଃ କ୍ରତବୋ ଯନ୍ତୁ ବିଶ୍ୱତଃ
**Let noble thoughts come to me from all sides.** ❋

# ଜ୍ଞାନାନନ୍ଦ

"ଜ୍ଞାନ ପାଇଲେ ଜ୍ଞାନୀ ହେବ" ଏହି ଉପଦେଶ ଦିଆଯାଏ । ଜ୍ଞାନ ପାଇବା ଓ ଜ୍ଞାନୀ ହେବା–ଏହି ଉଭୟ ହେଉଛି becoming ଓ being ପ୍ରକ୍ରିୟା । ଜ୍ଞାନ ପାଇବା ସଙ୍ଗେ ସଙ୍ଗେ ଜ୍ଞାନ ବଢ଼େ ଓ ଜ୍ଞାନୀ ହେବାକୁ ପଡେ । ଠିକ୍ ସେହିପରି ଜ୍ଞାନୀ ହେବା ମାତ୍ରେ ଜ୍ଞାନ ପାଇବା ପାଇଁ ପିପାସା ବଢ଼େ । ଅଧିକରୁ ଅଧିକ ଜ୍ଞାନ ଗ୍ରହଣ କରିବା ପାଇଁ ଆଗ୍ରହ ସୃଷ୍ଟି ହୁଏ ।

ସେ ଦୃଷ୍ଟିରୁ ଜ୍ଞାନ ପାଇବା ଲାଗି ଭଗବତକାର ଗାଇଛନ୍ତି, "କୁସଙ୍ଗ, କୁସଙ୍ଗୀଙ୍କ ସଙ୍ଗ; ଦୂରେ କରିବ ପରିତ୍ୟାଗ" । ଜ୍ଞାନ ବଢିବ ଓ ଜ୍ଞାନୀ ହେବାକୁ ପଡ଼ିବ ସୁସଙ୍ଗରେ, ସୁଶାସ୍ତ୍ର ଅଧ୍ୟୟନ କରି । ସଦ୍‌ଗୁରୁ ମାର୍ଗ ଦର୍ଶନ ଦେବେ । ସେ ପଥପ୍ରଦର୍ଶକ ହେବେ । ଜ୍ଞାନର ଦାଣ୍ଡ ଫିଟିଯିବ । ଦଣ୍ଡାହିତ । ଗ୍ଭଲିବାକୁ ବଡ଼ ମଜା । କିନ୍ତୁ ବାଟବଣା ହେଲେ ବିଲରେ ଅମଡ଼ା ମାଡ଼ିବାକୁ ପଡ଼ିବ । ଗାଁ ଗୋହିରୀର କୋଇଲିଅଖା କଣ୍ଟା ଅଜାଣତରେ ଭୁକିଯିବ । ବବୁଲକଣ୍ଟା ସହଜରେ ଦିଶେ ନାହିଁ । ସତେ ଯେପରି ବଣା ବାଟୋଇକୁ ଅପେକ୍ଷା କରି ବସି ରହିଥାଏ । ଲୁଚିଛପି ଗଳିଯାଏ ଓ ଲହୁଲୁହାଣ କରିପକାଏ । ଅନ୍ୟ ପକ୍ଷରେ ସୁଶାସ୍ତ୍ର ଓ ସଦ୍‌ଗୁରୁଙ୍କୁ ଭରସା କଲେ ହିତ ପଡ଼ିଯାଏ । ଆଖିବୁଜି ଗ୍ଭଲିହେବ । ଗୋଡ଼ ଗଡ଼ି ଗ୍ଭଲିବ । ଗ୍ଭରିଆଡ଼ ଫରଗ୍ଭ ଦିଶିବ । କେଡେ ମଜା । କେତେ ଆନନ୍ଦ । ଶବରୀର ଅଇଁଠା କୋଳି ଖାଇ ଶ୍ରୀରାମଚନ୍ଦ୍ର ସମ୍ଭବତଃ ଏତେ ଆନନ୍ଦ ପାଇ ନଥିବେ । ଜ୍ଞାନମଞ୍ଜି ପାଟିରେ ପଡ଼ିଲେ ଲାଳ ବହିବ । ଚକୋଲେଟ, ଚଟଣୀ ଓ ଗ୍ଭଟରେ ମନ ରହିବ ନାହିଁ । ଜ୍ଞାନର ସୁଆଦ ଓ ଜ୍ଞାନୀ ହେବାର ମଉଜ ମନକୁ ମତାଣିଆ କରିଦେବ । ଏହାହିଁ ଜ୍ଞାନାନନ୍ଦ । ଜ୍ଞାନର ଅଞ୍ଜନ ଆଖିରେ ଲାଗିବ । ଆଖି ଖୋଲିଯିବ । ସୁଦୂର ଅତୀତ ଓ ଅଜଣା ଭବିଷ୍ୟତର ଜ୍ଞାନ ଆଖିକୁ ଦିଶିଯିବ ।

ଏବେ ତ ଜ୍ଞାନ ଆହରଣର ପ୍ରଧାନ ଅସ୍ତ୍ର ହେଉଛି ପୁସ୍ତକ । ପିଲାଙ୍କ ପୁସ୍ତକ ଦେଖିଲେ ପଢ଼ା ଓ ଅପଢ଼ା ପିଲା ଭିତରେ ବାରି ହେବ ନାହିଁ । ଅଦେଖା ଚିତ୍ର ଓ ଅକୁହା କଥା ସେଥିରେ ଅଛି । ବିଲ୍‌କୁଲ ଅକଥା । ଶିକ୍ଷାର ବିସ୍ତାର ହେଲାଣି ଓ ହେଉଛି ।

ଅପଢ଼ା ଓ ପଢ଼ା ଭିତରେ ବାରି ନ ହେଉ, ଭଲ କଥା । କିନ୍ତୁ ଫଳରୁ ଗଛର ଗୁଣ ଜଣାପଡେ । ସାଙ୍ଗସାଥିଙ୍କଠାରୁ ମନୁଷ୍ୟର ପ୍ରକୃତି ଜଣା ପଡ଼େ, ଠିକ୍ ସେହିପରି ଯିଏ ଯେଉଁ ବହି ପଢ଼େ ସେଥିରୁ ସେହି ମନୁଷ୍ୟର ଗତିବିଧି ଠଉର କରିହୁଏ । ଗୁରୁ ତ ଗାଧୋଇ ଗଲେଣି । ଏ ପ୍ରକାର ବହିରୁ ଆମ ସଂସ୍କୃତି, ଶିକ୍ଷା ଓ ଦୀକ୍ଷାର ସ୍ତର କିପରି ଜାଣିବା ? ବାହାର ଜଗତରେ ଆମେ କି ପରିଚୟ ଦେବା ? ଏପରି ବହିରୁ ଆମେ କି ଜ୍ଞାନ ନେବା ଓ କି ପ୍ରକାର ଜ୍ଞାନୀ ହେବା ? କେତେକେ ଏସବୁ ବହିକୁ ଶସ୍ତା ବୋଲି କହନ୍ତି । ନା, ନା, ଶସ୍ତା ନୁହେଁ, ଦାମ ବେଶ୍ ବେଶୀ । ସହଜରେ ଆମ ମନକୁ କିଣି ନିଏ । ଆମେ ଶସ୍ତା ମଜା ପାଉଁ । ଇନ୍ଦ୍ରିୟାସକ୍ତିର ଶସ୍ତା ଆନନ୍ଦ ପାଉଁ । ବିକାଶ ପରିବର୍ତ୍ତେ ବିନାଶ ହୁଏ । ଆମେ 'ବିଦ୍ୟାଳୟ' ନ ହୋଇ ବିଦ୍ୟା ବିଲୟର ସାଧନ ହୋଇ ଯାଉଁ । ଏହା ଜ୍ଞାନାନନ୍ଦ ନୁହେଁ । ଜରା, ମରଣ ଓ ବ୍ୟାଧିକୁ ଧିକ୍କାର କରି ସଦ୍‌ଜ୍ଞାନ ଓ ପରାବିଦ୍ୟା ଅର୍ଜନର ଆନନ୍ଦ ଏହା ନୁହେଁ । ଗୁରୁକୁଳ ଆଶ୍ରମ ଯାଇଛି । ଆଉ ଆସିବ ନାହିଁ । ସେହି ଗୁରୁ ପରମ୍ପରା ମଧ୍ୟ ହଜି ଯାଇଛି । ଯାଉ, ଗତସ୍ୟ ଶୋଚନା ନାସ୍ତି । ଦୁଃଖର କଥା ଏହି ଯେ କର୍ପୂର ଉଡ଼ିଯାଇଛି, କନା ଖଣ୍ଡିକ ଛିଡ଼ି ଯାଇଛି । ମନର ମୋହ ବେଳେ ବେଳେ ପ୍ରକାଶ ପାଇଛି । ଆଚ୍ଛା, ସଦ୍‌ଶାସ୍ତ୍ର କଥା କଅଣ ହେଲା ? ପିଲାଙ୍କ ପାଖରେ କଅଣ ଅଛି ? ମାନହୀନମାନେ ବହି । ଅଛି ପ୍ରଶ୍ନୋତ୍ତର । ସହଜ ସାଫଲ୍ୟର ବହି ରହିଛି । ଟେଷ୍ଟ ପେପର ତଳିପାରୁ ତାଳୁ ପର୍ଯ୍ୟନ୍ତ ସବୁ ପରୀକ୍ଷାକୁ ଜଗି ରହିଛି । ନିର୍ଦ୍ଧାରିତ ପାଠ୍ୟପୁସ୍ତକକୁ ମଧ୍ୟ କେହି ଦେଖୁନାହାନ୍ତି । ଖଣ୍ଡେଅଧେ କିଣାହେଲେ ଶ୍ରେଣୀଟା ପାଇଁ ଯଥେଷ୍ଟ । ଗୋଟିଏ ପିଲାପାଇଁ ଖଣ୍ଡେ କିଣା ହେଲେ ସେହି ପରିବାରର ପାଞ୍ଚଟା ପିଲା ପଢିଯାଇ ପାରିବେ । ଯେଉଁ ପାଠ୍ୟକ୍ରମ, ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କଠାରୁ ଏହି ପାଠ୍ୟ-ପୁସ୍ତକ ଗୃହୀତ ସେ କଥା ପଗ୍ଭରୁଛି କିଏ ? ମୂଳ ଛାଡ଼ି ଡ଼ାଳ ଧରୁଛୁ । ତା ବି କରୁନାହିଁ । ବିଲକୁଲ ପତରରେ ଝୁଲୁଛୁ । ଆମର ଜ୍ଞାନ କାହିଁ ? ଆମେ ଜ୍ଞାନୀ ହେବୁ କିପରି ? ଯଦି ଶସ୍ତା ଓ ସହଜ ପଢିଦେଲେ ଚଳିବ ତେବେ କଷ୍ଟ-ସାଧ୍ୟ ଓ ଜଟିଳ ପ୍ରକ୍ରିୟା ଆଡ଼କୁ ଯାଉଛି କିଏ ? ପୁଣି ଏହି ମହରଗ ଯୁଗରେ ଶସ୍ତା ଉପରେ ସମସ୍ତଙ୍କ ମନ । ତେବେ ଶିକ୍ଷାର୍ଥୀ ଓ ଶିକ୍ଷକ ଛାଡ଼ିବେ କାହିଁକି ? କିନ୍ତୁ ଏସବୁ ବାସୀ ଓ ପୋଚରା ତରକାରୀ ପରି । ନର୍ଦ୍ଦମା ପାଣିପରି । ମୂଳ ଗ୍ରନ୍ଥରୁ ଓ ଗ୍ରନ୍ଥ-କାରଙ୍କଠାରୁ ସ୍ୱଚ୍ଛ ପାଣି ଝରୁଛି । ଏହାର ସ୍ୱାଦ ଭିନ୍ନେ । ଏହାକୁ ଖୋଜିବାକୁ ପଡ଼ିବ । ବୁଝିବା ପାଇଁ ପରିଶ୍ରମ କରିବାକୁ ହେବ । ଗଛଚଢ଼ା ଜାଣି ନଥିବା ଲୋକ

ସିନା କୁଆ ଅଇଁଠା ଖାଏ । କିନ୍ତୁ ସଜଫଳ ଖାଇବା ପାଇଁ ମାଙ୍କଡ଼ ପରି ଗଛ ଚଢ଼ା ଶିଖିବାକୁ ହେବ । ବାଇବେଲ, କୋରନ, ଗ୍ରନ୍ଥସାହେବ, ବେଦ ଓ ବେଦାନ୍ତାଦି ମୂଳଗ୍ରନ୍ଥ ସଙ୍ଗେ ପରିଚୟ ଆବଶ୍ୟକ । ସେ ସବୁଥିରେ ପ୍ରବେଶ ମଧ୍ୟ ଦରକାର । ଚିନ୍ତା ରାଜ୍ୟରେ ନୂଆ ନୂଆ ସୃଷ୍ଟି ବରବର ଗ୍ରଲିଛି । ତେଣୁ ସେ ବେଳର କଥା ଛାଡ଼ି ଏବକାର ଏପରି ସବୁ ସମୟର ଶିଳ୍ପୀ, କଳାକାର, କୃତୀ ସନ୍ତାନ ଓ ସ୍ରଷ୍ଟା ଏମାନେ ଯେଉଁଠାରେ ଓ ଯେଉଁ ବେଳର ହୁଅନ୍ତୁ ପଛକେ ଏମାନଙ୍କୁ ଜାଣିବାକୁ, ଚିହ୍ନିବାକୁ ଓ ବୁଝିବାକୁ ହେବ । ବର୍ତ୍ତମାନ ଖାଲି ଧାଇଁ ଗଲି, ଧାଇଁ ଆସିଲି; ଘରେ ବସି ସମସ୍ତଙ୍କୁ ଓ ସବୁ କିଛି ଜାଣିନେବାର ଯୁଗ ହୋଇଛି । ଗପିବାର ଯୁଗ । ନାଁ ନାଁ, ଜ୍ଞାନାନନ୍ଦ ପାଇବା କିପରି ? ଭୁବନେଶ୍ୱର ବସଷ୍ଟାଣ୍ଡରେ "ଟ-କ-ଟ-କ-ଟ-କ......" ଡାକୁଥିବା ଲୋକ "କଟକ" ସଙ୍ଗେ ଯେପରି ପ୍ରୀତି ଓ ସମ୍ପର୍କ ରଖୁଥାଏ ଆମେ ସେପରି ଖାଲି ନାଁ ଧରି ସେଇଆ କରୁଛୁଁ । ଠକେଇ ମକେଇ ପରୀକ୍ଷାରେ ପାଶ କରିହେବ । ଗ୍ରକିରୀ ଯୋଗାଡ କରିହେବ । କିନ୍ତୁ ଜ୍ଞାନାନନ୍ଦ କାହିଁ ? ପଢି ପଢି ପାଠ ନାହିଁ । ଏସବୁ କେବଳ ପଲ୍ଲବଗ୍ରାହିତା । ଯଦି କେବଳ ଧର୍ମଗ୍ରନ୍ଥ ପଢିଦେଲେ ଧାର୍ମିକ ହୋଇପାରନ୍ତେ, ତେବେ ସବୁ ପାଠପଢ଼ା ଲୋକ ଧାର୍ମିକ ହୋଇଯିବେ । ସେହିପରି ଯଦି ବହି ପଢିଦେଲେ ପଣ୍ଡିତ ହୋଇ ପାରନ୍ତେ ତେବେ ଭରତ କାହିଁକି, ସାର ବିଶ୍ୱରେ ପଣ୍ଡିତଙ୍କର ଅଭବ ରହନ୍ତା ନାହିଁ । ହଁ, ଏପରି ଭୁଷ୍‌ପଣ୍ଡିତ ଅନେକ ଅଛନ୍ତି । ଏସବୁ ଫମ୍ପା ପାଣ୍ଡିତ୍ୟ । ନିଦା ପଣ୍ଡିତଙ୍କର ଜ୍ଞାନାନନ୍ଦ ଥାଏ । ଏହା ଆନନ୍ଦର ନିର୍ଝର । ଏଥିରୁ ଆନନ୍ଦ ଝରୁଥାଏ । ଏହା ଆଦୌ ଶୁଖେ ନାହିଁ ।

ସେଥିପାଇଁ କୁହାଯାଏ, ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ । ଜ୍ଞାନଲାଭ ତଥା ଜ୍ଞାନୀ ହେବାରେ ଶ୍ରଦ୍ଧାଳୁ ହେବାକୁ ପଡ଼ିବ । ସେଥିରେ ଅନୁରାଗ ପ୍ରକାଶ ପାଇବ । ଅଧ୍ୟୟନ କରି ଅବବୋଧ ଆଚରଣରେ ଗ୍ରହଣ କରିନେବାକୁ ହେବ । ପୂରାପୂରି ମଜ୍ଜିଯିବାକୁ ହେବ । କେବଳ କଣ୍ଠସ୍ଥୀକରଣରେ ଚଳିବ ନାହିଁ କିମ୍ବା ତା ଉପରସ୍ତରକୁ ଉଠିଯାଇ ବୁଝିଗଲେ ହେବ ନାହିଁ । ଶ୍ରଦ୍ଧା ସେତିକିବେଳେ ହେବ, ସେତେବେଳେ ନୂତନ ଜ୍ଞାନ ନିଜ ଆଚରଣର ଅଂଗ ହୋଇଯିବ । ଏହି ପ୍ରକ୍ରିୟା ପାଇଁ ଉତ୍‌କଣ୍ଠା ପ୍ରକାଶ ପାଇବ । ଆଖି, କାନ ଆଦି ଜ୍ଞାନ ଗ୍ରହଣ କରିବାର ଅଙ୍ଗଗୁଡ଼ିକ ଉନ୍ମୁକ୍ତ ରହିବ ଓ ଗ୍ରହଣୀୟ ଉପାଦାନକୁ ମାର୍ଜିତ କରି ସମାଜରେ ବ୍ୟକ୍ତିତ୍ୱର ପରିପ୍ରକାଶ ପାଇଁ ଅନୁକୂଳ କରିନେବ । ଏଥିପାଇଁ ବ୍ୟକ୍ତିର ବିବେକ ଓ ସ୍ୱର୍ଗୀୟ ସମ୍ଭାବନା ସହାୟକ ହୋଇଥାଏ ।

କିନ୍ତୁ ପ୍ରତିକୂଳ ପ୍ରଭାବ ଏସବୁକୁ ଅବରୁଦ୍ଧ କରିପକାଏ । ସାମାଜିକ ଓ ପ୍ରାକୃତିକ ପରିବେଶରୁ ଏହି ପ୍ରଭାବ କ୍ଷରି ଆସେ । ଏହି ପରିପ୍ରେକ୍ଷୀରେ ସଦ୍‌ଗୁରୁ ଓ ସଦ୍‌ଗ୍ରନ୍ଥର ପ୍ରଭାବ ସମ୍ବନ୍ଧରେ ପୂର୍ବରୁ ଆଲୋଚନା କରଯାଇଅଛି ।

ପରିଶ୍ରମ କାତରତା ସବୁ ସାରିଦିଏ । ଉତ୍ସୁକତାର ଉଷ୍ଣମ ଭାଙ୍ଗିଦିଏ । ଉତ୍ସାହରେ କାଳି ବୋଳିଦିଏ । ସବୁଥିରେ ବିମୁଖତା ଆସିଯାଏ । ସେପରି ସ୍ଥଳରେ ଜ୍ଞାନାନନ୍ଦ ଆସିବ କେଉଁଠୁ ? "ମୁଁ ନୂଆ କଥା ଜାଣିବି, ନୂଆ ନୂଆ ଚିନ୍ତା କରିବି, ନୂଆ ଢ଼ଙ୍ଗରେ କାମ କରିବି; ଜ୍ଞାନର ଅଜଣା ଗଭୀର ଭିତରକୁ ଧସି ପଶିବି" ଇତ୍ୟାଦି ଦିଗରେ ମନ ଉଛନ୍ନ ହେବ । ଗତିରେ ନିଦ ହେବ ନାହିଁ । ଜ୍ଞାନର ଉତ୍ସ ଖୋଜିବାକୁ ପଡ଼ିବ । ପୁସ୍ତକାଗାରରେ ପଶିଯିବାକୁ ହେବ । ଜାଣିବା-ଶୁଣିବା ଲୋକକୁ ପଚାରି ବୁଝାଯିବ । କିଏ କଅଣ କହୁଛନ୍ତି– ସେଥିରୁ ଛାଣି ନିଆଯିବ । ଯେଉଠୁ ସେଇଠୁ ହେଉ ପଛକେ– ପ୍ରେରଣାର ପ୍ରାଣକୁ ସନ୍ଧାନ କରଯିବ । ଇମିତିକା ହେଲେ ଜ୍ଞାନାନନ୍ଦ ଉସ୍‌କରି କୁଲୁରି ଆସିବ । ଥରେ ବିଜ୍ଞାନର ପିଲାଙ୍କୁ ସାହିତ୍ୟ ଆଦି କଳାତ୍ମକ ବିଷୟ ପଢିବାକୁ କୁହାଗଲା । ସେମାନେ ନାକ ଟେକିଦେଲେ । ଠିକ୍ ଓଲଟା କରି କଳାତ୍ମକ ବିଷୟର ଛାତ୍ରମାନଙ୍କୁ ବିଜ୍ଞାନର ଜ୍ଞାନ ଜାଣିବାକୁ କୁହାଗଲା । ସେମାନେ କାନ କୁଣ୍ଡାଇ ହେଲେ । ବି. ଏ. ପାଶ କରିଥିବା କେତେକ ପିଲାଙ୍କର ହସ୍ତାକ୍ଷର ଅତି କଦର୍ଯ୍ୟ ହୋଇଥିବାରୁ ହସ୍ତାକ୍ଷର ଭଲ କରିବାକୁ କୁହାଗଲା । ସେମାନେ ଏହାକୁ ହସି ଉଡାଇ ଦିଅନ୍ତି । ଏସବୁ ମନୋଭାବ ଜ୍ଞାନାନନ୍ଦର ବିରୋଧକରେ । ଆତ୍ମୋନ୍ନତିର ପ୍ରେରଣା ମନକୁ ଉତ୍କଣ୍ଠିତ କରିପକାଏ ।

ଏହା ହେଲା ଜ୍ଞାନାନନ୍ଦର ଗୋଟିଏ ଦିଗ । ଜ୍ଞାନ ପାଇବା ଓ ଜ୍ଞାନୀ ହେବାରେ ଆନନ୍ଦ । ଅନ୍ୟ ଦିଗଟି ହେଉଛି ଜ୍ଞାନଦାନରେ ଆନନ୍ଦ । ଜ୍ଞାନ ପାଇ ଜ୍ଞାନୀ ହେଲେ ସ୍ୱତଃ ଜ୍ଞାନଦାନ ହୋଇଯାଏ । ସିଦ୍ଧ ସାଧୁ ଓ ସନ୍ଥ ପରମ୍ପରାରେ ଏହାହିଁ ସତ୍ୟ । ଜ୍ଞାନପିପାସୁ ସେମାନଙ୍କ ସମୀପକୁ ଆକୃଷ୍ଟ ହୁଅନ୍ତି । ନବଜାତ ଶିଶୁକୁ ସ୍ତନ୍ୟଦାନ କରିବା ଜନନୀ ପକ୍ଷରେ ଯେପରି ଏକ ସ୍ୱାଭାବିକ ଓ ସ୍ୱତଃ ଆନନ୍ଦଦାୟକ ପ୍ରକ୍ରିୟା ଆତ୍ମସିଦ୍ଧ ମନିଷୀମାନଙ୍କ ପକ୍ଷରେ ଜ୍ଞାନଦାନ କରିବା ସେହିପରି । ସେମାନଙ୍କ ହୃଦୟରୁ ଜ୍ଞାନ ଝରିଆସେ । ସାଧାରଣ ଅନୁଭବରେ ଶିକ୍ଷକମାନେ ହିଁ ଏପ୍ରକାର ଜ୍ଞାନଦାନ କିଞ୍ଚିତ ପାଇଥାନ୍ତି । ଅନ୍ତର ପୁଲକିତ ହୋଇ ଉଠେ । କାବ୍ୟକବିତାଦିର ଅଧ୍ୟୟନ ପରି ଶିକ୍ଷାଦାନ ରସୋତ୍ତୀର୍ଣ୍ଣ ହୋଇପଡେ । ଗୁଣି ଗାରେଡ଼ିର ଗୁରୁ

ସ୍ୱାର୍ଥାନ୍ୱେଷୀ ହୋଇ ଶିଷ୍ୟ ଅନ୍ୱେଷଣ କରନ୍ତି । କିନ୍ତୁ ସଦ୍‌ଗୁରୁ ଓ ସୁଜ୍ଞାନୀ ପଣ୍ଡିତ ଶିଷ୍ୟ ସମଭିବ୍ୟାହାରରେ ବିଚରଣ କରନ୍ତି । ଏଠି ଜ୍ଞାନର ବିକୀରଣ ହୁଏ । ପରସ୍ପର ସହଯାତ୍ରୀ ହୋଇ ପଡ଼ନ୍ତି । କାରଣ ଜ୍ଞାନୀ ହେବାର ଆନନ୍ଦ ଯେପରି ଜ୍ଞାନଦାନର ଆନନ୍ଦରେ ପରିଣତ ହୁଏ, ସେହିପରି ଜ୍ଞାନଦାନର ଆନନ୍ଦ ଜ୍ଞାନୀ ହେବାର ଆନନ୍ଦକୁ ଶତଗୁଣିତ କରି ପକାଏ । ଅଧ୍ୟୟନ ଓ ଅଧ୍ୟାପନା ଏକ ସଂଯୁକ୍ତ ଓ ସହଯୋଗୀ ପ୍ରକ୍ରିୟା ହୋଇଯାଏ । ଏଠାରୁ ସଙ୍କୀର୍ଣ୍ଣତା ପଳାୟନ କରେ । ଏହା ହିଁ ଆମ ଗୁରୁକୁଳର ପରମ୍ପରା ଓ ପ୍ରାଚୀନ ସମାଜ ରଚନାର ଭିତ୍ତିଭୂମି । ଏହାର ଅଜ୍ଞବବୋଧହିଁ ଆମକୁ ସ୍ୱାର୍ଥାନ୍ଧ ଓ ବ୍ୟକ୍ତି-ସର୍ବସ୍ୱ କରି ପକାଇଛି ।

ଜ୍ଞାନାନନ୍ଦ ପାଇଁ ବୟସର ସୀମା କିଛି ନାହିଁ । ବାଲ୍ୟ, ଯୌବନ ଆଦ କୌଣସି ନିର୍ଦ୍ଦିଷ୍ଟ ଅବସ୍ଥାରେ ଏହା ସୀମିତ ନୁହେଁ । ସମଗ୍ର ଜୀବନ ହିଁ ଏହାର ପ୍ରଶସ୍ତ କ୍ଷେତ୍ର ।

ଯଦି ବ୍ୟକ୍ତି ଓ ସମାଜ ଜ୍ଞାନାନନ୍ଦରେ ମାତି ଉଠନ୍ତି ତେବେ ସେମାନେ ପ୍ରତିଭାର ଅଧିକାରୀ ହୁଅନ୍ତି । ଚିନ୍ତା ଓ ଚେତନାରେ ସର୍ବଦା ଯୌବନରେ ଅଧିରୂଢ଼ ହୋଇ ନବୀନତା ଓ ନବୋନ୍ମେଷ ଆସ୍ୱାଦନ କରନ୍ତି । ଜଣେ କେହି ଏକଦା ଗ୍ରୀସ୍‌ବାସୀଙ୍କର ଜ୍ଞାନୋନ୍ମୁଖତାକୁ ଲକ୍ଷ୍ୟକରି କହିଥିଲେ "You Greeks, you are always young" ଏପରିସ୍ଥଳରେ ମୃତ୍ୟୁ ପରାଜୟ ସ୍ୱୀକାର କରେ ଓ ବାର୍ଦ୍ଧକ୍ୟ ଜୀବନରେ ପ୍ରବେଶ କରିପାରେ ନାହିଁ । ଏହା ହିଁ ହୁଏ ପ୍ରକୃତ ପ୍ରଗତି, ଯେଉଁଥିରେ ସମସ୍ତେ ସମବେତ ହୋଇ ଯୋଗ ଦିଅନ୍ତି । ଏଥିରେ ସମସ୍ତଙ୍କର ଦାନ ଥାଏ ଓ ଏହାହିଁ ସମସ୍ତଙ୍କ ଭୋଗ୍ୟ । ଏଥିରେ ଭେଦ, ବାଦ ଓ ବିଦ୍ୱେଷ ରହେ ନାହିଁ । ବ୍ରହ୍ମାନନ୍ଦ ପରି ଜ୍ଞାନାନନ୍ଦ ପରମ ସୁଖଦ ହୋଇପଡ଼େ ।

ବସ୍ତୁତଃ ଆନନ୍ଦାତ୍ ଇବ ଇମାନି ଭୂତାନି ଜାୟନ୍ତେ । ସର୍ବ ସୃଷ୍ଟି ଓ କୃତିର ଉତ୍ସ ହେଉଛି ଆନନ୍ଦ । ଏହି ଉତ୍ସଟି ସଙ୍ଗଳିତ ହୋଇ ପାରିଲେ ଏହାର ପରିଣାମ ବହୁମୁଖୀ ହୁଏ । ବ୍ୟଥା ଓ ନୈରାଶ୍ୟ ଆଜି ଆମକୁ ବିକୃତ ଓ ବିପଥଗାମୀ କରିଦେଇଛି । ଏପରି ବିକୃତ ମନୋଭାବରୁ ଚରିତ୍ର ସଂହାର ଜାତ ହୁଏ । ବାସ୍ତବରେ ଜ୍ଞାନାନନ୍ଦ ହୁଏ ସଚ୍ଚିଦାନନ୍ଦ । ଏଥିରେ ସତ୍, ଚିତ୍ ଓ ଆନନ୍ଦ ପରସ୍ପରଠାରୁ ପୃଥକ ନୁହନ୍ତି କିମ୍ବା ସାଧନା କାଳରେ ପୃଥକ୍ ପୃଥକ୍ ଅନୁଭୂତ ହୁଅନ୍ତି ନାହିଁ । ସଚ୍ଚିଦାନନ୍ଦ ଏକ ଓ ଅଭିନ୍ନ । ଏ ପ୍ରକାର ସାଧନା ଦ୍ୱାରା ସଂସ୍କୃତିର ପ୍ରସାର ହୁଏ । ଏହା ବିଜୟ ନୁହେଁ । ଏହା ଅହମିକା ନୁହେଁ । ଏଥିରେ କ୍ଷମତାର ଜୟ ନାହିଁ, ଏଠି ଅଛି ହୃଦୟର ସମୃଦ୍ଧ ପରିବ୍ୟାପ୍ତି ।

# ଏକ ଶିକ୍ଷଣ ସମାଜ

## ଆଜ ଓ ଆସନ୍ତା କାଲ

ସମଗ୍ର ବିଶ୍ୱ ପାଇଁ "ଏକ ଶିକ୍ଷଣ ସମାଜ" ପ୍ରତିଷ୍ଠାର ଆଭିମୁଖ୍ୟକୁ ରୂପାୟନ କରିବା ଆଜି ଓ ଆସନ୍ତା କାଲିର ଏକମାତ୍ର ଆବଶ୍ୟକତା । ଶିକ୍ଷାଜଗତ ଓ ସମାଜର ସମୃଦ୍ଧ ସମ୍ପର୍କ ଏଥିରେ ନିହିତ ଅଛି ।

ଇତିହାସର ଅଧ୍ୟୟନରୁ ଜଣାଯାଏ, ଶିକ୍ଷାକ୍ରମ ସର୍ବପ୍ରଥମରୁ ଏକ ବିକ୍ଷିପ୍ତ ଆନ୍ଦୋଳନ ରୂପେ ପ୍ରକାଶ ପାଇଥିଲା । ଏହା ମଧ୍ୟ ଅସମ୍ପୂର୍ଣ୍ଣଭାବରେ କାର୍ଯ୍ୟକାରୀ ହେଉଥିଲା । ଉପରନ୍ତୁ ଏହା କେତେକ ବିଶିଷ୍ଟ ଶ୍ରେଣୀର ଲୋକଙ୍କପାଇଁ ଅଭିପ୍ରେତ ହୋଇଥିଲା । କିନ୍ତୁ କାଳକ୍ରମେ ଏହା ଏକ ଧାରାବାହିକ ପଦ୍ଧତିରେ ପରିଣତ ହୋଇଅଛି । ଏହା ବର୍ତ୍ତମାନ ସୁବିନ୍ୟସ୍ତ ଓ ବୈଧାନିକ ରୂପ ନେଇଅଛି ଏବଂ ଆନୁଷ୍ଠାନିକ ଶୃଙ୍ଖଳା ଗ୍ରହଣ କରିଅଛି । ଫଳରେ ଶିକ୍ଷାୟତନ—ବହିର୍ଭୂତ ବିଭିନ୍ନ ସଂସ୍ଥା, ସଂଗଠନ ଓ କାର୍ଯ୍ୟକଳାପ ସହିତ ଏହା ସମ୍ପର୍କ ହରାଇଅଛି । ଏହା ଏତେଦୂର ସଙ୍କୁଚିତ ଓ ସୁଦୃଢ଼ ହୋଇ ଯାଇଅଛି ଯେ, ଏହା ଏକ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ପଦ୍ଧତି ହୋଇଅଛି ଓ ସେଥିରେ ସାମାଜିକ କ୍ରିୟା ଓ ପ୍ରକ୍ରିୟା ସ୍ଥାନ ପାଇପାରୁନାହିଁ । ଶିକ୍ଷାୟତନ ଓ ଏତଦ୍‌ବ୍ୟତୀତ ସମାଜର ଅନ୍ୟାନ୍ୟ ଅନୁଷ୍ଠାନ ମଧ୍ୟରେ କୌଣସି ସମ୍ପର୍କ ରହୁ ନାହିଁ । ଏହି ଉଭୟ ମଧ୍ୟରେ ସମନ୍ୱୟର ଅଭାବକୁ ଦୂର କରିବା ପାଇଁ ଉଦ୍ୟମ ସମୟକ୍ରମେ କରାଯାଇଅଛି । ଶିକ୍ଷାପଦ୍ଧତି ସହିତ ଶିକ୍ଷାୟତନ-ବହିର୍ଭୂତ ବିଭିନ୍ନ ପଦ୍ଧତିର ଯୋଗାଯୋଗ ସ୍ଥାପନ କରିବାକୁ ପଦକ୍ଷେପ ନିଆଯାଇଅଛି । ଏତିକିବେଳେ ଲକ୍ଷ୍ୟ କରାଯାଇପାରେ, ବହୁ ସମ୍ଭାବନା ଓ ବାସ୍ତବତା ଜୀବନକୁ କ୍ରମେ କ୍ରମେ ସମୃଦ୍ଧ କରୁଅଛି । ତେଣୁ ଶିକ୍ଷା ସହିତ ସମାଜର ବହୁବିଧ ସୁଯୋଗକୁ ମିଶାମିଶି କରି ଶିକ୍ଷାକୁ ସୁଦୃଢ଼ କରିବାର ଆଶା ଆଜିର ଅଭାବ ପୂରଣ

---

ଇଉନେସ୍କୋଦ୍ୱାରା ନିଯୁକ୍ତ ଆନ୍ତର୍ଜାତିକ ଶିକ୍ଷା ଆୟୋଗଙ୍କ "ଶିକ୍ଷାବିକାଶ" ଶୀର୍ଷକ ରିପୋର୍ଟ (୧୮।୫।୧୯୭୨)ର ଅନୁସରଣରେ ଲିଖିତ ।

କରିପାରିବ ନାହିଁ, ଆସନ୍ତାକାଲି ପାଇଁ ଏହି ଆଶା ଆହୁରି କମ୍ । ସେଥିଯୋଗୁଁ ଏହି ପଦ୍ଧତିର ପରିକଳ୍ପନାକୁ ଅତିକ୍ରମ କରି ଅନ୍ୟ ଏକ ଯୋଜନାର ଚିନ୍ତା କରିବାକୁ ପଡ଼ିବ ।

"କେତେକ ପୂର୍ବ ନିର୍ଦ୍ଧାରିତ ବ୍ୟବସ୍ଥା, ଆବଶ୍ୟକତା ଓ ଭବନା ଅନୁଯାୟୀ ଆଗାମୀ କାଲିର ସମାଜ ପାଇଁ ନେତୃବର୍ଗଙ୍କୁ ତାଲିମ୍‌ଦେବା କାମରେ ଶିକ୍ଷାକୁ ସୀମିତ କରିଦେବା ଅତୀତରେ ଯେପରି ଆଜି ମଧ୍ୟ ସେହିପରି ଅପ୍ରାସଙ୍ଗିକ ହୋଇଅଛି । ଠିକ୍ ସେହିପରି କୌଣସି ଗୋଟିଏ ପ୍ରକାର ନିର୍ଦ୍ଦିଷ୍ଟ ବ୍ୟବସ୍ଥା ପାଇଁ ସ୍ଥାୟୀଭବରେ ଯୁବଗୋଷ୍ଠୀଙ୍କୁ ପ୍ରସ୍ତୁତ କରିବା ଯେ ଶିକ୍ଷାର କାର୍ଯ୍ୟ ହୋଇପାରେ ଏହା ମଧ୍ୟ ଅପ୍ରାସଙ୍ଗିକ । ଶିକ୍ଷା ଏକ ଅଭିଜାତ ଶ୍ରେଣୀ ପାଇଁ ଆଉ ଉଦ୍ଦିଷ୍ଟ ନୁହେଁ । ଏହା ମଧ୍ୟ ଏକ ନିର୍ଦ୍ଦିଷ୍ଟ ଯୁଗର ସହଗାମୀ ହୋଇ ପାରେନାହିଁ । ସମଗ୍ର ସମାଜ ତଥା ବ୍ୟକ୍ତି-ବିଶେଷଙ୍କର ସମଗ୍ର ଜୀବନକୁ ଆଧାରିତ କରିବାରେ ଶିକ୍ଷାର ଭୂମିକା ଅଧିକରୁ ଅଧିକ ସୁଦୂରପ୍ରସାରୀ ହେଉଅଛି ।"

ଏହିପରି ବିଚ୍ଛରରେ ଅଗ୍ରସର ହୋଇ ଅନ୍ୟ କେତେକ ଚିନ୍ତାଶୀଳ ବ୍ୟକ୍ତି ବୈପ୍ଲବିକ ସିଦ୍ଧାନ୍ତରେ ମଧ୍ୟ ଉପନୀତ ହୁଅନ୍ତି । ସେମାନଙ୍କ ମତରେ ପଦ୍ଧତିକୁ ଓଲଟାଇ "ଅପଦ୍ଧତି" (non-system) କରିବାକୁ ହେବ । ଶିକ୍ଷାର ଗ୍ରହିଦା ବର୍ତ୍ତମାନ ନାହିଁନଥିବା ବଢିଯାଇଅଛି । ଏପରି ସମୟରେ ପଦ୍ଧତି ନୁହେଁ, ମାତ୍ର "ଅଣପଦ୍ଧତି" (unsystem) ଆବଶ୍ୟକ ହେଉଅଛି ।

ଆମ୍ଭେମାନେ ଯଦି ଲକ୍ଷ୍ୟ କରୁ, ତେବେ ଜାଣିପାରିବା ଯେ ଶତ-ଶତ ଶତାବ୍ଦୀ-ସଂଚିତ ପରଂପରାକୁ ଶିକ୍ଷା ଅତିକ୍ରମ କରିବାରେ ଲାଗିଛି । ଦେଶ ଓ କାଳକୁ ଏହା କ୍ରମେ କ୍ରମେ ଟପି ମାଡ଼ିଚାଲିଛି । ସମଗ୍ର ମାନବ-ଜୀବନ ଓ ତାହାର ସମସ୍ତ ବିଭବ ବର୍ତ୍ତମାନ ଶିକ୍ଷାର ଅନ୍ତର୍ଭୁକ୍ତ ହେଉଅଛି । ଏହା ଏପରି ଜଟିଳ ଓ ବ୍ୟାପକ ଯେ, ଆମ୍ଭେମାନେ ଯେଉଁ ବିବର୍ତ୍ତନହୀନ ଓ ସ୍ଥାଣୁ ଅର୍ଥରେ "ପଦ୍ଧତି" ପ୍ରୟୋଗ କରୁ ତାହା ମଧ୍ୟରେ ଏହାକୁ ଆବଦ୍ଧ କରିହେବ ନାହିଁ । ଏପରିସ୍ଥଳରେ "ଅଧ୍ୟାପନା" ବଦଳରେ ଅଧ୍ୟୟନକୁ ସ୍ଥାନ ଦିଆଯିବ । ଅଧ୍ୟାପନାକୁ ପୁରାପୂରି ସ୍ଥଗିତ କରାନଗଲେ ସୁଦ୍ଧା ଶିଶୁକୁ ଅଧ୍ୟାପନାର ଉଦ୍ଦେଶ୍ୟ ନ କରି ସେ ନିଜେ ଅଧ୍ୟୟନର କର୍ତ୍ତା ହେବ । ଶିକ୍ଷାର୍ଥୀ ପାଇଁ ଶିକ୍ଷା ତା'ର ଅଭିଭବକ ଓ କ୍ଷମତାସୀନ ବ୍ୟକ୍ତିମାନଙ୍କର ଦାନ ନୁହେଁ । ଏହା ମଧ୍ୟ ସେମାନଙ୍କର ତା'ପାଇଁ ଏକ ସମାଜସେବାର କାର୍ଯ୍ୟ ନୁହେଁ । ସେ ଅର୍ଜିତ ଜ୍ଞାନର ଗ୍ରହୀତା ନୁହେଁ ।

ବସ୍ତୁତଃ ସେ ସ୍ୱୟଂ ଜ୍ଞାନକୁ ନିଜର କରି ସେହି ଜ୍ଞାନର ସର୍ବୋଚ୍ଚ କର୍ତ୍ତା ଅଟେ । ଏହା ଶିକ୍ଷାର୍ଥୀଠାରୁ ଆରମ୍ଭ ହୁଏ । ଏହା ଶିକ୍ଷାର୍ଥୀ ଉପରେ ଆରୋପିତ ନୁହେଁ । ଫଳରେ ଆଜିକାଲି ଶିକ୍ଷାଦାନର ପାରମ୍ପରିକ ଓ ଶାସ୍ତ୍ରୀୟ ନୀତି ପରିବର୍ତ୍ତେ ଅଧ୍ୟୟନ ବା ଶିକ୍ଷଣ ନୀତି ଉପରେ ଗୁରୁତ୍ୱ ଦିଆଯାଉଅଛି ।

ଆଉ ଗୋଟିଏ କଥା, ଯେ କୌଣସି ବିଦ୍ୟାୟତନ ଯେତେ ବିଶାଳ ହେଉ ପଛକେ ସେପ୍ରକାର କେବଳ ମାତ୍ର ଗୋଟିଏ ଅନୁଷ୍ଠାନ ଦ୍ୱାରା ସମାଜ ଏହାର ସମସ୍ତ ଅଂଶକୁ ଫଳପ୍ରଦଭାବରେ ପ୍ରଭାବିତ କରିପାରିବ ନାହିଁ । ଯଦି ଆମ୍ଭେମାନେ ସ୍ୱୀକାର କରିବା ଯେ, ପ୍ରତ୍ୟେକ ମନୁଷ୍ୟର ଆଦିମ ଆବଶ୍ୟକତା ରୂପେ ଶିକ୍ଷା ଅଧିକରୁ ଅଧିକ ପରିଗଣିତ ହୋଇଅଛି ଓ ଭବିଷ୍ୟତରେ ଆହୁରି ଅଧିକ ହେବ, ତେବେ ଆମ୍ଭମାନଙ୍କୁ ଯେ କେବଳ ବିଶ୍ୱବିଦ୍ୟାଳୟ ଆଦି ବିଭିନ୍ନ ଶିକ୍ଷାୟତନକୁ ବହୁଗୁଣିତ କରିବାକୁ ହେବ, ସେସବୁକୁ ସମୃଦ୍ଧ କରାଯିବ ଓ ସେମାନଙ୍କର ବିକାଶ ସାଧନ କରାଯିବ; କେବଳ ସେତିକି ନୁହେଁ, ଏହା ସଙ୍ଗେ ସଙ୍ଗେ ସମଗ୍ର ସମାଜର ସମସ୍ତ ବିଭାଗରେ ଶିକ୍ଷାକାର୍ଯ୍ୟ ସଂପ୍ରସାରିତ ହୋଇ ଉଲ୍ଲିଖିତ କାର୍ଯ୍ୟକୁ ଅତିକ୍ରମ କରିଯିବ । ବିଦ୍ୟାଳୟର ସ୍ୱକୀୟ ଭୂମିକା ରହିଛି ସତ, ଏହାକୁ ଆହୁରି ଅଧିକ ବିକଶିତ କରାଯିବ । କିନ୍ତୁ ସମାଜର ଏକ ବିଶିଷ୍ଟ ଅଧିକାର ଭାବରେ ଏହା ଯେ ସମସ୍ତ ଶିକ୍ଷାକାର୍ଯ୍ୟ ତୁଲାଇ ପାରିବ, ଏ ପ୍ରକାର ଦାବୀ ବିଦ୍ୟାଳୟ ଅଧିକରୁ ଅଧିକ କରିପାରିବ ନାହିଁ । ସାଧାରଣ ପ୍ରଶାସନ, ଶିଳ୍ପ, ଯାତାୟାତ, ପରିବହନ ଆଦି ସମସ୍ତ ବିଭାଗ ଶିକ୍ଷାପ୍ରସାରରେ ଅଂଶ ଗ୍ରହଣ କରିବା ଦରକାର । ସ୍ଥାନୀୟ ଓ ଜାତୀୟ ଗୋଷ୍ଠୀ ତଥା ସଂଗଠନ ଆପଣା ଆପଣା ମଧ୍ୟରେ ଜଣାଶୁଣାଭାବରେ ଶିକ୍ଷାପ୍ରଦ ଅନୁଷ୍ଠାନ ହୋଇ ରହିଅଛି ଓ ସେସବୁ ଶିକ୍ଷା କାର୍ଯ୍ୟରେ ସକ୍ରିୟ ଦାୟିତ୍ୱ ବହନ କରିପାରିବେ । ପ୍ଲୁଟାର୍କ (Plutarck) ଥରେ କହିଥିଲେ, "ସହରହିଁ ପ୍ରଖ୍ୟାତ ଶିକ୍ଷକ," ସହରରେ ଭାବର ବଳିଷ୍ଠ ବିନିମୟ ଚାଲିଥାଏ । ନାଗରିକ-ଭାବନା ଓ ଭ୍ରାତୃତ୍ୱ ଶିକ୍ଷାଦେବାରେ ସହର ଏକ ବିଦ୍ୟାଳୟ ସଦୃଶ । ଫଳରେ ସହରର ସାମାଜିକ, ପ୍ରଶାସନିକ ଓ ସାଂସ୍କୃତିକ ସଂଗଠନ ଯୋଗୁଁ ଏଥିରେ ବିପୁଳ ଶିକ୍ଷା-ସହାୟକ ସମ୍ଭାବନା ରହିଅଛି ।

"ଏଥେନ୍ସରେ ଶିକ୍ଷା ଏକ ପୃଥକ୍ କାର୍ଯ୍ୟକ୍ରମ ନ ଥିଲା । କେତେକ ଘଣ୍ଟା ପାଇଁ, କେତେକ ସ୍ଥାନରେ ଓ ଜୀବନର କେତେକ ସମୟ ପାଇଁ ଶିକ୍ଷା ଦିଆଯାଉନଥିଲା । ସହର ମନୁଷ୍ୟକୁ ଶିକ୍ଷା ଦେଉଥିଲା ଓ ଏହାହିଁ ସମାଜର ଲକ୍ଷ୍ୟ ହୋଇଥିଲା । ଏଥେନ୍ସୀୟ

ସଂସ୍କୃତି (Paideia)ରୁ ଶିକ୍ଷା ପାଉଥିଲେ । ଏହା ଦାସତ୍ୱଦ୍ୱାରା ସମ୍ଭବ ହେଉଥିଲା......। ଏଥେନ୍‌ସର ଭାଗ୍ୟବାନ୍ ମୁଷ୍ଟିମେୟ ଲୋକଙ୍କ ପାଇଁ ଦାସପ୍ରଥା ଯାହା କରୁଥିଲା, ତାହା ଆଧୁନିକ ସମାଜର ପ୍ରତ୍ୟେକ ମନୁଷ୍ୟପାଇଁ ଯନ୍ତ୍ରପାତି (machines) ଦ୍ୱାରା କରାଯାଇପାରିବ ।

ଯନ୍ତ୍ରପାତିଗୁଡ଼ିକୁ ଉପଯୁକ୍ତ ସାମାଜିକ ପରିବେଶରେ ବିନିଯୋଗ କରାଯାଇ ପାରିଲେ ସେସବୁ ନିଶ୍ଚିତଭାବରେ ଶିକ୍ଷାକାର୍ଯ୍ୟ ସମ୍ପାଦନ କରିବାକୁ ସମର୍ଥ ହେବ । ଏହା ମଧ୍ୟ ସୁନିଶ୍ଚିତ ଯେ, ସମଗ୍ର ସମାଜର ଶିକ୍ଷଣ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଦୃଷ୍ଟିଭଙ୍ଗୀ ଦିନକୁ ଦିନ ପ୍ରସାରିତ ହେଲେ ଏହାର ବହୁ ପରିଣତି ରହିବ । ମନୁଷ୍ୟର ନୂତନ ଆବଶ୍ୟକତା ଦୃଷ୍ଟିରୁ ପ୍ରତ୍ୟେକ ଅନୁଷ୍ଠାନକୁ ପୁନର୍ଗଠିତ କରିବାକୁ ହେବ । ନୂତନ ପ୍ରକାରର ଅନୁଷ୍ଠାନର ସୃଷ୍ଟି କରାଯିବ । ଜ୍ଞାନାର୍ଜ୍ଜନର ପରୋକ୍ଷ ପ୍ରଣାଳୀର ଅଧ୍ୟୟନକୁ ପରିପୁଷ୍ଟ କରିବାକୁ ହେବ, ସେସବୁର କର୍ମକୁଶଳତାକୁ ଉନ୍ନତ କରାଯିବ ଓ ସେସବୁର ପରିଣତିର ମୂଲ୍ୟାଙ୍କନ ନିର୍ବୈ୍ୟକ୍ତିକ ଭାବରେ କରିବାକୁ ହେବ । ଯେଉଁ ସବୁ ଅନୁଷ୍ଠାନ ବର୍ତ୍ତମାନ ରହିଛି ସେସବୁକୁ ସମାଜର ଦାବି ଓ ଆବଶ୍ୟକତା ଏପରି ପ୍ରଭାବିତ କରୁଛି ଯେ, ଅଧିକରୁ ଅଧିକ ବିଭିନ୍ନ ସୁବିଧାସୁଯୋଗ ତଥା ପ୍ରବେଶ, ପରିତ୍ୟାଗ ଓ ପରିବର୍ତ୍ତନର ସମୟ ଗ୍ରହଣ କରିବାକୁ ସେସବୁ ଅନୁଷ୍ଠାନ ବିଗ୍ରହ କରିବାକୁ ବାଧ୍ୟ ହେବେ । ଏହାହିଁ ଶିକ୍ଷାର ବାସ୍ତବ ଗଣତାନ୍ତ୍ରୀକରଣ ଦିଗରେ ବଳିଷ୍ଠ ପଦକ୍ଷେପର ପ୍ରଥମ ଅବସ୍ଥା । ପୃଥିବୀ ପୃଷ୍ଠରେ ବିଭିନ୍ନ ସମାଜ ଥରକୁ ଥର ସେମାନଙ୍କର ସଂରଚନା (structures)କୁ ସୁଦୃଢ଼ କରିଛନ୍ତି ବା ରୂପାନ୍ତରିତ କରିଛନ୍ତି—ଏହା ହେଉଛି ମନୁଷ୍ୟର ବଞ୍ଚିରହିବାର ଅଧିକାର ପାଇଁ ଆବଶ୍ୟକ ଭିତ୍ତି । ସମାଜରେ ଧନ ଦୌଲତ ବୃଦ୍ଧି ପାଇଛି ଓ ଏହା ହେଉଛି, ମନୁଷ୍ୟର ଅଧିକ ପ୍ରାପ୍ତିର ଅଧିକାର ପାଇଁ ଆବଶ୍ୟକ । ଏହିସବୁ ଯୁଗେ ଯୁଗେ ସମାଜର ମୌଳିକ ଉଦ୍ଦେଶ୍ୟ ହୋଇ ରହିଅଛି । ବର୍ତ୍ତମାନ "ପରିପୂର୍ତ୍ତିର ଶିକ୍ଷା" (Learning for fulfilment) ଯାହାକି ମାନବସମାଜର ଶିକ୍ଷା—ଏହାକୁ ମୌଳିକ ଅଗ୍ରାଧିକାର ରୂପେ ପ୍ରତିଷ୍ଠା କରାଯିବା ଉଚିତ ନୁହେଁ କି ?

"ଗୋଟିଏ, କେବଳମାତ୍ର ଗୋଟିଏ ଲମ୍ବଭାବରେ ଉଚ୍ଚୋଚ୍ଚପରମ୍ପରାରେ ଗଠିତ ସଂସ୍ଥା, ଯାହାକି ସମାଜରେ ଏକ ସ୍ୱତନ୍ତ୍ର ସଂଗଠନ, ତାହା ଉପରେ ଶିକ୍ଷାଦେବାର ସମସ୍ତ ଶକ୍ତିକୁ ଭାରାର୍ପିତ କରିବା ପରିବର୍ତ୍ତେ ସମାଜର ସମସ୍ତ ଦଳ, ସଂଘ, ୟୁନିଅନ, ସ୍ଥାନୀୟ

ଗୋଷ୍ଠୀ ଓ ମଧ୍ୟବର୍ତ୍ତୀ ସଂଗଠନ ଶିକ୍ଷାଦାୟିତ୍ୱ ବହନ କରିବେ ।... ଏଥିରୁ ପ୍ରତୀତ ହୁଏ, ସ୍ୱତଃସିଦ୍ଧ ଧାରଣା ଅର୍ଥହୀନ ହୋଇଯାଉଛି । ଏହାର ଉଦାହରଣ ସ୍ୱରୂପ ଆମେ ସକ୍ରିୟ ଓ ନିଷ୍କ୍ରିୟ ଜୀବନ ମଧ୍ୟରେ ଯେଉଁ ପାର୍ଥକ୍ୟ କରୁ, ସର୍ବସାଧାରଣ ତଥା ରାଷ୍ଟ୍ରର କ୍ଷମତା ବିଷୟରେ ଆମର ଯେଉଁ ଧାରଣା ବର୍ତ୍ତମାନ ଅଛି, ସେ ସବୁ ପରିବର୍ତ୍ତିତ ହୋଇଯାଉଅଛି । ଶିକ୍ଷା କାର୍ଯ୍ୟରେ ସ୍ୱତନ୍ତ୍ର ଭାବରେ ନିଯୁକ୍ତ କର୍ମଚାରୀଙ୍କ ଛଡ଼ା ଅନ୍ୟ ଲୋକମାନଙ୍କ ପକ୍ଷରେ ଶିକ୍ଷାଦେବା ସମ୍ଭବ । ଉପରକୁ ଉପର ହୋଇ ଲମ୍ବଭାବରେ ଶିକ୍ଷାନୁଷ୍ଠାନର ଯେଉଁ ବିଭାଜନ ଅଛି, ତାହା ଦୂର ହୋଇଯାଉଛି । ବିଦ୍ୟାଳୟର ପରିସର ଓ ଯାହାକୁ ସମାନ୍ତରାଳ ବିଦ୍ୟାଳୟ (Parallel school) ବୋଲି କୁହାଯାଏ, ରାଷ୍ଟ୍ର ଓ ବ୍ୟକ୍ତିଗତ ଉଦ୍ୟମ, ସରକାରୀ କିମ୍ବା ଶିକ୍ଷାବୃତ୍ତିରେ ସ୍ୱତନ୍ତ୍ରଭାବରେ ଚୁକ୍ତିବଦ୍ଧ କର୍ମଚାରୀ ଓ ନିର୍ଦ୍ଦିଷ୍ଟ ବା ସାମୟିକ ଶିକ୍ଷାକାର୍ଯ୍ୟରେ ରତ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ସୀମା ସମ୍ପର୍କର ଅର୍ଥ ଆଉ କିଛି ନାହିଁ ।"

ଏସବୁ କ୍ରମେ ନିକଟତର ହୋଇ ଆସୁଛି । ଏହା ଫଳରେ ସାଧାରଣ ଧାରାବାହିକ ପରିବର୍ତ୍ତନ, ଯେତେଦୂର ବୈପ୍ଳବିକ ହେଉ ପଛକେ ଆମ୍ଭେମାନେ ଏହାକୁ ଅତିକ୍ରମ କରି ଅଗ୍ରସର ହେଉଅଛୁଁ । ସମାଜ ଓ ଶିକ୍ଷା ମଧ୍ୟରେ ସମ୍ପର୍କର ପ୍ରକୃତି କ୍ରମେ ପରିବର୍ତ୍ତିତ ହୋଇଯାଉଅଛି । ଏକ ପ୍ରକାର ସାମାଜିକ ସଂରଚନା ହୋଇଛି, ଯେଉଁଥିରେ ଶିକ୍ଷାକୁ ଉଲ୍ଲିଖିତ ପ୍ରକାରର ସ୍ଥାନ ଓ ପଦମର୍ଯ୍ୟାଦା ଦିଆଯାଇଛି—ସେହି ସାମାଜିକ ସଂରଚନାର ନାମକରଣ ସ୍ୱତନ୍ତ୍ରଭାବରେ ହେବା ଉଚିତ ଓ ତାହା ହେଉଛି "ଶିକ୍ଷଣ ସମାଜ" । ଏହି ସମାଜର ଆଗମନର ପରିକଳ୍ପନା କେବଳ ଏକ ପ୍ରକ୍ରିୟାଭାବରେ କରାଯାଇପାରେ—ଯେଉଁ ପ୍ରକ୍ରିୟାର ଶିକ୍ଷା ଓ ସାମାଜିକ, ରାଜନୈତିକ ଏବଂ ଅର୍ଥନୈତିକ ରୂପ ଅତି ଘନିଷ୍ଠଭାବରେ ପରସ୍ପର ସମ୍ପୃକ୍ତ ଓ ଯାହାକି ପାରିବାରିକ ଓ ନାଗରିକ ଜୀବନକୁ ପରିବ୍ୟାପ୍ତ । ଏଥିରୁ ଏହାି ସୂଚିତ ହୁଏ ଯେ, ପ୍ରତ୍ୟେକ ନାଗରିକ ଯେପରି ନିଜେ ଶିକ୍ଷାଲାଭ କରିପାରିବ, ତାଲିମ ପ୍ରାପ୍ତ ହେବ ଓ ଆତ୍ମାନୁଶୀଳନ କରିପାରିବ ସେପରି ଉପାୟ ସବୁ ଅବସ୍ଥାରେ ତାକୁ ସ୍ୱାଧୀନ ଭାବରେ ମିଳିପାରିବ; ଯଦ୍ୱାରା ସେ ତା'ର ନିଜ ଶିକ୍ଷା ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୂତନ ଢଙ୍ଗରେ ଏକ ଭିନ୍ନ ଅବସ୍ଥାରେ ଉପନୀତ ହୋଇପାରିବ । ରାଷ୍ଟ୍ରର କର୍ତ୍ତବ୍ୟ ପରିବର୍ତ୍ତେ ଶିକ୍ଷା ପ୍ରତ୍ୟେକ ନାଗରିକର ଦାୟିତ୍ୱ ହେବ ।

"ଏହିପରି ଦୃଷ୍ଟିରେ ବିଚାରକଲେ, ଆସନ୍ତା କାଲିର ଶିକ୍ଷା ଏକ ସମନ୍ୱିତ ସମଗ୍ର ରୂପ ନେବ; ସେଥିରେ ସମାଜର ସମସ୍ତ ବିଭାଗ ଓତଃପ୍ରୋତ ଭାବରେ ଜଡ଼ିତ ହେବ ।

ଏହା ସାର୍ବଜନୀନ ହେବା ସଙ୍ଗେ ସଙ୍ଗେ ନିରବଚ୍ଛିନ୍ନ ହେବ । ବ୍ୟକ୍ତିବିଶେଷଙ୍କ ଦୃଷ୍ଟି-କୋଣରୁ ଦେଖିବାକୁ ଗଲେ ଶିକ୍ଷା ସମସ୍ତ ଜୀବନ ଓ ପ୍ରତ୍ୟେକ ଜୀବନର ସମସ୍ତ ଦିଗକୁ ପ୍ରସାରିତ ହେବ । ଏହା ସର୍ଜନାତ୍ମକ ହେବ । ସୁତରାଂ ଏହା ବ୍ୟକ୍ତି-ଆଧାରିତ ଓ ଆତ୍ମନିର୍ଦ୍ଦେଶିତ ହେବ । ଏହା ସଂସ୍କୃତିର ଦୂର୍ଗ ଓ ପ୍ରେରଣାଦାୟକ ଶକ୍ତି ହେବ । ଏହା ମଧ୍ୟ ବୃତ୍ତିଗତ କ୍ରିୟାକୁ ଉତ୍ସାହିତ କରିବ । ଏହି ଆନ୍ଦୋଳନ ଅପ୍ରତିହତ ଓ ଅପରିବର୍ତ୍ତନୀୟ । ଏହାହିଁ ଆମ ସମୟର ସାଂସ୍କୃତିକ ବିପ୍ଳବ ।"

ଅତଏବ ପୂର୍ବ ଆଲୋଚିତ ଶିକ୍ଷଣ ସମାଜର ନିମ୍ନୋକ୍ତ ଲକ୍ଷ୍ୟ ଓ ଲକ୍ଷଣ ରହିବ :

(କ) ଜୀବନବ୍ୟାପୀ ଶିକ୍ଷା ଏହାର ମୂଳମନ୍ତ୍ର । ପ୍ରତ୍ୟେକ ନାଗରିକ ଜୀବନ ସାରା ଶିକ୍ଷା ସୁଯୋଗ ଲାଭ କରିବ ।

(ଖ) ଶିକ୍ଷାକ୍ରମ କେବଳ ଶ୍ରେଣୀରେ ସୀମିତ ହୋଇ ରହିବ ନାହିଁ । ସମାଜର ସକଳ ପ୍ରକାର ଆର୍ଥନୀତିକ ଓ ଅନ୍ୟାନ୍ୟ କ୍ରିୟା ଏବଂ ଅନୁଷ୍ଠାନ ଶିକ୍ଷାକାର୍ଯ୍ୟରେ ଅଙ୍ଗାଙ୍ଗୀ ଜଡ଼ିତ ରହିବେ । ଶିକ୍ଷାର ଓ ଶିକ୍ଷାୟତନ-ବହିର୍ଭୂତ ସକଳ ଶକ୍ତି ଏବଂ କ୍ରିୟାପ୍ରକ୍ରିୟାକୁ ସଂଯୁକ୍ତ କରାଯିବ ।

(ଗ) ବୌଦ୍ଧିକ ପୁଂଜି (Intellectual capital) ଅର୍ଜନ କରିବାର ଅର୍ଥ ହେଉଛି ଯେ, ଏହାର ଅଧିକାରୀ ଏହାକୁ ଅନ୍ୟମାନଙ୍କ ସହିତ ଭାଗୀଦାର ହେବେ—ଏହି ଧାରଣାରେ ସବୁ ଶିକ୍ଷିତ ବ୍ୟକ୍ତି ଅନୁପ୍ରାଣିତ ହେବେ ।

(ଘ) ସମସ୍ତ ଶିକ୍ଷାର୍ଥୀଙ୍କର ସ୍ୱଶିକ୍ଷାର୍ଜନରେ ଗୁରୁ ଦାୟିତ୍ୱ ରହିଛି । ସମସ୍ତ ଶିକ୍ଷାପଦ୍ଧତିରେ ମଧ୍ୟ ତାଙ୍କର କର୍ତ୍ତବ୍ୟ ଅଛି ।

(ଙ) ଫଳରେ ଶିକ୍ଷା ଆଜୀବନ ପ୍ରକ୍ରିୟା ହେବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ମିଳିପାରିବା ଉଚିତ । କେବଳ ସେତିକି ନୁହେଁ, ଏହା ମଧ୍ୟ ପ୍ରତ୍ୟେକ ବ୍ୟକ୍ତିର ଜୀବନଯାପନ ପ୍ରକ୍ରିୟାର ମାନଦଣ୍ଡ ହୋଇ ରହିବ ।

ସମସ୍ତ ବିକାଶଯୋଜନା "ଶିକ୍ଷଣ ସମାଜ" ପରିକଳ୍ପନାକୁ ଆଧାରିତ କରିବ । ଏହାର ରୂପାୟନ କିପରି ଢ଼ଙ୍ଗରେ କରାଯିବ, ଏହା ଆଲୋଚନା-ସାପେକ୍ଷ । ଆନ୍ତର୍ଜାତିକ ଶିକ୍ଷା ଆୟୋଗଙ୍କ ରିପୋର୍ଟରେ ଏ ବିଷୟରେ ସୁବିସ୍ତୃତ ଆଲୋଚନା କରାଯାଇଅଛି ।

# ସମାଜରେ ଗୁରୁ-ଶିଷ୍ୟ ସମ୍ପର୍କ

"ଗୁରୁଙ୍କୁ ନ ମଣିବ ନର, ଗୁରୁହିଁ ସାକ୍ଷାତ ଈଶ୍ୱର", ଏହି ଭାବ, ଭାବନା ଓ ଭାବମୂର୍ତ୍ତି ବସ୍ତୁତଃ ପୁରାଣଯୁଗର । ଗୁରୁକୂଳ ଶିକ୍ଷାର ଏହା ପ୍ରାଣ ସ୍ୱରୂପ । ସେ ଯୁଗରେ "ଗୁରୁ ସାକ୍ଷାତ୍ ପରଂବ୍ରହ୍ମ" ଏହି ଦର୍ଶନରେ ଶିଷ୍ୟ ନତମସ୍ତକ ହୁଏ । ଏହି ସମ୍ପର୍କ ସାଧନାଶାଣିତ, ଜ୍ଞାନଦୀପ୍ତ ଓ ଜୀବନ ଆଧାରିତ । କିନ୍ତୁ କର୍ପୂର ଯାଇଛି ମାତ୍ର କନା ପଡ଼ି ରହିଛି । "ଅତୀତକୁ ଉଦ୍‌ବୋଧଇ ବୃଥା ଭଳି ଭଳି" ନ୍ୟାୟରେ ସମସ୍ତ ଅତୀତ ଯେପରି ଶିକ୍ଷାର ଏହି ଇତିବୃତ୍ତ, ସେହିପରି କେବଳ ବୃଥା ଭାବନାରେ ପରିଣତ ହୋଇଛି । ଏ ବିଷୟରେ କେହି କେହି ବୃଥା ଭାବନା କରିବାକୁ ଇଚ୍ଛା କରନ୍ତି ନାହିଁ । ଏସବୁ ଆଜି ଅବାସ୍ତବ, ଅବାନ୍ତର ଓ ଅପ୍ରାସଙ୍ଗିକ । ଅନ୍ୟ କେତେକେ କହନ୍ତି, କି ଥିଲା ଏ ରାଜ୍ୟ, କି ହୋଇଛି ଆଜ ? ସେମାନେ କଳ୍ପନା ବିଳାସୀ । ସ୍ୱପ୍ନର ଆନନ୍ଦ ସେମାନଙ୍କୁ ବିଭୋର କରେ । କିନ୍ତୁ ଜାଗ୍ରତ ଅବସ୍ଥା ମର୍ମାନ୍ତିକ ଯନ୍ତ୍ରଣାଦାୟକ ହୁଏ । କିନ୍ତୁ ପ୍ରଶ୍ନ ହେଉଛି, ସେ ସମ୍ପର୍କ ଆଉ ଫେରିବ କି ?

ସମ୍ପର୍କ ଦୂରେ ଥାଉ, ଶିକ୍ଷକ ଆଜି ଗୁରୁ ରୂପେ ପରିଚିତ ହେବାକୁ ମନ କରୁ ନାହାନ୍ତି । ସେପରି ସମ୍ବୋଧନ ମଧ୍ୟ ଏକପ୍ରକାର ବ୍ୟଙ୍ଗ ବା ଗ୍ଲାନି ହୋଇ ଯାଉଛି, ଯାହାକୁ ସହଜରେ ସହି ହେଉ ନାହିଁ । ଶିକ୍ଷା ପଦ୍ଧତିର ମୂଳରୁ ଚୂଳ ପର୍ଯ୍ୟନ୍ତ ଗୁରୁ ପଦ-ବାଚ୍ୟ ହେବାର ବାସନା ମନରେ ନାହିଁ । ଶିଷ୍ୟ ଶବ୍ଦର ସେହି ଅର୍ଥ ଆଜି ଅଭିଧାନ ବହିର୍ଭୂତ ପରି ମନେ ହୁଏ । ଛାତ୍ର ଆଜି ଶାସନ ବିରୁଦ୍ଧରେ ବିଦ୍ରୋହୀ ଓ ବିପ୍ଳବୀ । ଶାସନ ସମ୍ଭବତଃ ଅପ୍ରାସଙ୍ଗିକ ଓ ପ୍ରଗତିର ପରିପନ୍ଥୀ । ଉଦ୍ଦାମ ଓ ଉନ୍ମୁଖ ଶକ୍ତି ଏହି ଶୃଂଖଳାରେ ଶ୍ୱାସରୁଦ୍ଧ । ତେଣୁ ଏହା ଶିଷ୍ୟର ପ୍ରାଣ ପରିଗ୍ରାହକ ହେବ କିପରି ? ପକ୍ଷାନ୍ତରରେ ଗୁରୁ-ଶିଷ୍ୟ ଶବ୍ଦ ଆଜି ଅଭିଧାନରେ ରୂପାନ୍ତରିତ ହୋଇଅଛି । ଶଠତା, ସଂକୀର୍ଣ୍ଣତା, ସ୍ୱାର୍ଥାନ୍ଧତା, ହିଂସା, ହତ୍ୟା, ହୁଙ୍କାର ଆଦି ଆଚରଣରେ ଗୁରୁ ଓ ଶିଷ୍ୟ ଭୂମିକା ଗ୍ରହଣ କରିଛନ୍ତି । କାଳର ଗତିରେ ମୂଲ୍ୟବୋଧର ଅବକ୍ଷୟ ଘଟିଛି । ଏହା ଫଳରେ ରୂପାନ୍ତରୀକରଣ ହୋଇଅଛି । କିନ୍ତୁ ପରିବର୍ତ୍ତିତ ଭୂମିକାରେ ମଧ୍ୟ ମୂଳ

ପ୍ରକୃତ ଦୁଇଟି ଦିଗରେ ଅତୁଟ ରହିଛି, ତାହା ହେଉଛି, ସମ୍ପର୍କରେ ଅଭେଦତ୍ୱ, ଅର୍ଥାତ ଯେ ଗୁରୁ ସେ ଶିଷ୍ୟ ଓ ଯେ ଶିଷ୍ୟ ସେ ଗୁରୁ । ଏହାଛଡ଼ା ଦ୍ୱିତୀୟ ଦିଗ ହେଉଛି, ଶିଷ୍ୟାତ୍ ଇଚ୍ଛେତ୍ ପରାଜୟମ୍ ।

ଏହା ସତ୍ତ୍ୱେ, ଏକଥା ସତ୍ୟ ଯେ କୌଣସି ଦେଶର ଗୌରବ, ସେ ଦେଶର ଲୋକ ଚରିତ୍ର ଉପରେ ନିର୍ଭର କରେ । ତଦ୍ୱାରା ଦେଶ ବଳୀୟାନ ହୁଏ । ଲୋକମାନଙ୍କ ଚରିତ୍ର ଓ ଜୀବନର ଗୁଣ ଶକ୍ତିର ମୁଖ୍ୟ ଉତ୍ସ ଅଟେ । ଜାତିର ଜୟଗାଥାର ମୂଳ ପିଣ୍ଡ ହେଉଛି ଜୀବନ । ଅଥଚ ଏହି ଜୀବନର ନିର୍ମାଣ ବିଦ୍ୟାଳୟରେ କରାଯାଏ । ଜୀବନ ପ୍ରଭାବିତ ହୁଏ । ଜୀବନ ସୌଧର ମୂଳଭିତ୍ତି ଶିକ୍ଷାଳୟରେ ପଡ଼ିଥାଏ । ଚରିତ୍ର ଗଠନ ସେଠୁ ବିଧିବଦ୍ଧ ଭାବରେ ହୁଏ । ପୁଣି ଶିକ୍ଷକ ହୁଅନ୍ତି ବିଦ୍ୟାଳୟ । ଶିକ୍ଷାୟତନକୁ ସତ୍ୟ, ଶିବ ଓ ସୁନ୍ଦର କରିବାରେ ଶିକ୍ଷକହିଁ ମୁଖ୍ୟତଃ ଦାୟୀ । ଏହି ନୀତି ସିନା ଗୁରୁକୂଳର ଶିକ୍ଷାକୁ ପରିଚାଳିତ କରିଥିଲା କିନ୍ତୁ ଆଜିର ଜଟିଳ ସମାଜରେ ଏହାର ଆବଶ୍ୟକତା ଅଧିକ ।

ଶିକ୍ଷକଙ୍କ ଗୁରୁତ୍ୱ ସମ୍ବନ୍ଧରେ କୁହାଯାଏ ଯେ ପିତା ମାତା ଜନ୍ମ ଦିଅନ୍ତି । ଜନ୍ମଦାନ ସମ୍ପର୍କରେ ତାଙ୍କ କର୍ତ୍ତବ୍ୟ ଏତିକିମାତ୍ର । ଘାତକ ଖଣ୍ଡାରେ ପ୍ରାଣ ନିଅନ୍ତି ଓ ତାଙ୍କ କାର୍ଯ୍ୟ ସେତିକିରେ ସରେ । କିନ୍ତୁ ଶିକ୍ଷକଙ୍କ ଶିକ୍ଷା ଚିରନ୍ତନ । ଜୀବନ–ବ୍ୟାପୀ କୋଟି କୋଟି ପ୍ରାଣକୁ ଶିକ୍ଷକ ପ୍ରଭାବିତ କରନ୍ତି । ତାଙ୍କ ପ୍ରଭାବ ଅନନ୍ତ । ଏହା କେବେ ସରିବ କିଏ କହିବ ? ଏହା କାଳାତୀତ ଓ ଏହା କାଳଲିପିକୁ ପ୍ରଭାବିତ କରେ । ଏହି କାଳ-ଜୟୀ ପ୍ରଭାବ ବିଷୟରେ ଶିକ୍ଷାୟତନର ସଚେତନତା ଏକାନ୍ତ ଆବଶ୍ୟକ । ଏହାର ଜ୍ୟୋତି ଚିର ଜାଜ୍ୱଲ୍ୟମାନ । ଦୀପରୁ ଦୀପ ଜଳି ଜଳି ଯାଏ । ଏହା କିନ୍ତୁ କ୍ଷୀଣ ହୁଏ ନାହିଁ । ବରଂ ନିଜେ ଜଳି ଜଳି ଯାଏ । ଏପରି ବିରଳ ଆତ୍ମତ୍ୟାଗର ଦୃଷ୍ଟାନ୍ତ ଶିକ୍ଷା ଓ ସେବା କ୍ଷେତ୍ରକୁ ବହୁଳ ଭାବରେ ଗର୍ବିମନ୍ତ କରିଛି । ପଠନ-ପାଠନର ସତ୍ୟନିଷ୍ଠ ସାଧନା ଶିକ୍ଷାର ଇତିହାସକୁ ମହିମାନ୍ୱିତ କରିଛି । ପଠନ ବିରହିତ ପାଠନ କେବଳ ଶୁଷ୍କ ବଖାଣରେ ପରିଣତ ହୋଇଅଛି । ପ୍ରଭାବକାରୀ ପ୍ରାଣର ପ୍ରାଚୁର୍ଯ୍ୟ ଗୁରୁଜୀବନକୁ ଗରୀୟାନ୍ କରେ । ଆଦର୍ଶ ଦ୍ୱାରା ଏହା ଜୀବନ୍ତ ହୁଏ । ସଂକ୍ରମଣରେ ସହାୟକ ହୁଏ ।

ସେଥିପାଇଁ ଗୁରୁଙ୍କ ସ୍ଥାନ ଉଚ୍ଚରେ । ଶିକ୍ଷାପଦ୍ଧତିର ସର୍ବୋର୍ଦ୍ଧ୍ୱରେ । ଯୁଗେ ଯୁଗେ ସେ କେବଳ ଶିକ୍ଷାର୍ଥୀଙ୍କର ନୁହେଁ, ସମଗ୍ର ସମାଜର ନମସ୍ୟ । ଜଣେ ମନୀଷୀ ଏହି ଭାବନାକୁ ସ୍ୱୀୟ ବାଣୀରେ ପ୍ରକାଶ କରିଛନ୍ତି । ତାହା ହେଉଛି "ମୁଁ ମୋର ଜନ୍ମ ପାଇଁ ପିତାମାତାଙ୍କ ସମୀପରେ ଋଣୀ, କିନ୍ତୁ ମୋର ଜୀବନ ପାଇଁ ଗୁରୁଙ୍କ ସମୀପରେ ଋଣୀ ।" ଗୁରୁ ପ୍ରାଣ ପ୍ରତିଷ୍ଠା କରନ୍ତି । ଶ୍ରେଣୀ କୋଠରୀ ନ ଥାଇ ପାରେ । ଉପକରଣ ନ ଥାଉ । ଆଡ଼ମ୍ବର ଦୂରେଇ ଯାଉ । ସେ ହିଁ ସବୁ । ଗୁରୁଙ୍କର ମାତ୍ର ପଦଟିଏ କଥା ଶିଷ୍ୟମାନଙ୍କର କୋଟି କୋଟି ପ୍ରାଣରେ କୋଟି କୋଟି ରୂପରେ ଉଦ୍ଭାସିତ ହୁଏ ।

ଏତ ହେଲା ଗୋଟିଏ ଦିଗ । କାହା ପାଇଁ ଗୁରୁ ? ସେ କାହାର ? ତାଙ୍କ ସମ୍ପର୍କ କାହା ସହିତ ? ସତ୍ୟପ୍ରତି ସମର୍ପଣ ଓ ଜ୍ଞାନ ଦାନରେ ନିଷ୍ଠା ଯୋଗୁଁ ଶିଷ୍ୟଙ୍କର ଜ୍ଞାନ ପିପାସା ବୃଦ୍ଧି ପାଇବ । କିନ୍ତୁ ଶିକ୍ଷା ପ୍ରକ୍ରିୟାରେ କେନ୍ଦ୍ରସ୍ଥ ହେଉଛନ୍ତି ଶିଷ୍ୟ । ସେ ଶ୍ରଦ୍ଧାବାନ୍ ହେବେ । ସେ ସ୍ୱାଧ୍ୟାୟ କରିବେ । ସେ ଅନୁରାଗୀ ହେବେ । ଏହା ଫଳରେ ଗୁରୁ-ଶିଷ୍ୟ ସମ୍ପର୍କରେ ମୂଳମନ୍ତ୍ର, "ତେଜସ୍ୱିନାମବଧୀତମସ୍ତୁ" କାର୍ଯ୍ୟତଃ ପ୍ରକାଶ ପାଇବ । ଗୁରୁ ହେବେ "ଶିଷ୍ୟପରାୟଣ" ଓ ଶିଷ୍ୟ ହେବେ "ଗୁରୁପରାୟଣ ।" ଉଭୟ ଗୁରୁ ଓ ଶିଷ୍ୟ ବିଦ୍ୟାପରାୟଣ ହେବେ । ସେମାନଙ୍କ ବିଦ୍ୟା ସେବାପରାୟଣ ହେବ । ଏଥିରେ ଗୁରୁ, ଶିଷ୍ୟ, ସମାଜ ଓ ଅଭିଭାବକ ଜଡ଼ିତ ହେବେ ।

ଦୁଃଖର କଥା, ବର୍ତ୍ତମାନ ଆମର ଗୁରୁ-ଶିଷ୍ୟ ସମ୍ପର୍କ ଏପ୍ରକାର ନୁହେଁ । ସମ୍ପର୍କ ନିବିଡ ନହୋଇ ଅନେକ ସ୍ଥଳରେ କଳୁଷିତ ହୋଇଯାଉଛି । କୁତ୍ସା ଓ କଳଙ୍କ ଆରୋପ କରାଯାଉଛି । ସନ୍ଦେହ ଓ ଶଙ୍କା ଉଭୟଙ୍କ ମଧ୍ୟରେ ବିଭେଦ ଓ ବ୍ୟବଧାନ ସୃଷ୍ଟି କରିଛି । ଶିକ୍ଷାର ପ୍ରସାର ଓ ଶିକ୍ଷାୟତନର ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଗୁରୁ ଓ ଶିଷ୍ୟଙ୍କ ମଧ୍ୟରେ ଦୂରତ୍ୱ ବୃଦ୍ଧି ପାଉଛି । ଏହାଫଳରେ ବ୍ୟକ୍ତିର ପ୍ରତିଭା ଓ ଜାତୀୟ ନୈପୁଣ୍ୟର ବିକାଶ ହେଉ ନାହିଁ । ସମ୍ବଳର ସମୁଚିତ ଉପଯୋଗ ହୋଇପାରୁନାହିଁ । ଶିକ୍ଷାର ଲକ୍ଷ୍ୟ ପଣ୍ଡ ହୋଇଯାଉଛି । ଶିକ୍ଷାଳୟ ସମାଜଠାରୁ ଦୂରେଇ ଯାଉଛି । ଶ୍ରଦ୍ଧାର ବୃଦ୍ଧି ପରିବର୍ତ୍ତେ ଜୀବନ, ସମୟ, ଶକ୍ତି ଓ ଅର୍ଥ ଶ୍ରାଦ୍ଧହିଁ ସାର ହୋଇ ଯାଉଛି । ଶିକ୍ଷାୟତନ ସାଧନାର ପୀଠ ନହୋଇ ସଂଘର୍ଷ ଓ ସଂଗ୍ରାମର କ୍ଷେତ୍ର ହୋଇଯାଉଛି । ଆଧ୍ୟାତ୍ମିକ ଶକ୍ତିର ସଂଗ୍ରହ ଘଟିବା ପରିବର୍ତ୍ତେ ଅସୁର ଶକ୍ତିର ତାଣ୍ଡବଲୀଳା ସଂଗଠିତ ହେଉଛି । ସହଯୋଗ-ସୂତ୍ରର ସମ୍ମିଳିତ ଉଦ୍ୟମ ଆଦୌ ନାହିଁ କହିଲେ ଚଳେ । ବରଂ ସଙ୍କୀର୍ଣ୍ଣ ସ୍ୱାର୍ଥ ସାଧନ

ପାଇଁ ଅହେତୁକ ପ୍ରତିଦ୍ୱନ୍ଦିତା ଚାଲିଛି । ଏସବୁ ବିପର୍ଯ୍ୟୟର କାରଣ ମଧ୍ୟ ଅନୁସନ୍ଧାନ କରାଯାଇ ଅଛି । ଚିନ୍ତାଶୀଳ ବ୍ୟକ୍ତିମାନେ ଉଦ୍‌ବେଗ ପ୍ରକାଶ କରିବା ସଙ୍ଗେ ସଙ୍ଗେ କାରଣ ନିର୍ଣ୍ଣୟ କରିଛନ୍ତି ଓ ପୁନର୍ଗଠନ ପାଇଁ ପ୍ରସ୍ତାବ ଦେଇଛନ୍ତି । ବହୁ କମିଟି ଓ କମିଶନ ମାଧ୍ୟମରେ ବିଚାର ବିମର୍ଶ କରାଯାଇଛି । ଜାତୀୟ ଅର୍ଥ ଓ ବ୍ୟକ୍ତିଗତ ଉତ୍‌କଣ୍ଠା ପଣ୍ଡ ହୋଇଯାଇଛି । ବରଂ ଏସବୁ କମିଟି, କମିଶନ ବସାଇବାରେ ଓ ଚିନ୍ତାକୁ ଠୁଳୀଭୂତ କରିବାରେ ଯେତିକି ବ୍ୟସ୍ତତା, ବ୍ୟଗ୍ରତା ଓ ବ୍ୟାକୁଳତା ପ୍ରକାଶ ପାଉଛି, ସେମାନଙ୍କ ସୁପାରିଶକୁ ପରିହାର କରି ଯାହାଥିଲା ତାକୁ ଜାବୁଡ଼ି ଧରିବା ପାଇଁ ଦୃଢ଼ତା ଦେଖାଯାଉଛି । ଏହା ଏକ ଅଦ୍ଭୁତ ପରିସ୍ଥିତି । ଆମ ଶିକ୍ଷା ଏକ ଗଣ ପ୍ରକ୍ରିୟା ହୋଇପାରି ନାହିଁ । ଏହା ଫଳରେ ଯେଉଁ ମୁଷ୍ଟିମେୟ ଲୋକ ଶିକ୍ଷାର ସୁବିଧା ଭୋଗ କରୁଛନ୍ତି, ସେମାନେ ଏହାକୁ ସମ୍ପୂର୍ଣ୍ଣ କରଗତ କରି ପକାଉଛନ୍ତି । ପରିବର୍ତ୍ତନର ସକଳ ପ୍ରଚେଷ୍ଟା ପାଣି ଫୋଟକା ପରି ମିଳେଇ ଯାଉଛି ।

•

ଆହୁରି ଟିକିଏ ବିଚାର କଲେ ଅନ୍ୟ କେତୋଟି ପ୍ରସଙ୍ଗ ମନକୁ ଆସେ । ସେସବୁ ଚର୍ବିତଚର୍ବଣ ବହୁ କ୍ଷେତ୍ରରେ କରାଯାଇଛି । ପୁନରାବୃତ୍ତି କରିବା କେବଳ ଖଡ଼ାବଡ଼ିଥୋଡ଼, ଥୋଡ଼ବଡ଼ିଖଡା ହେବ । ତଥାପି ଏକ ସଂକ୍ଷିପ୍ତ ବିଶ୍ଳେଷଣ ଆବଶ୍ୟକ । ଆମ ଶିକ୍ଷା ବିଶେଷ ଭାବରେ ପୁସ୍ତକ–କେନ୍ଦ୍ରିକ । ମୁଖସ୍ଥୀକରଣ ଖୁବ୍ ଗୌରବ ଅର୍ଜନ କରିଛି । ଏହା ଗୁରୁ-ଶିଷ୍ୟର ସୁସମ୍ପର୍କ ସ୍ଥାପନ କରିବାରେ ପରିପନ୍ଥୀ । ବରଂ ଗୁରୁଙ୍କର ସ୍ୱୀକୃତି ଅନାବଶ୍ୟକ ମନେହୁଏ । କାମର ଜଗତ ଓ ପାଠର ଜଗତ ମଧ୍ୟରେ ବ୍ୟବଧାନ ବଢି ବଢି ଚାଲିଛି । ସମାଜଠାରୁ ବିଚ୍ଛିନ୍ନ ଓ ବିରକ୍ତ ହୋଇ ଶିକ୍ଷାୟତନର ସୌଧ ଉପରକୁ ଉଠି ଯାଉଛି । ଏପରି ସ୍ଥଳରେ ଅନର୍ଗଳ ବଖାଣିବା ଓ ବକ୍ତୃତା ଦେବା ଗୁରୁଙ୍କର ପରମ ଧର୍ମ ହୋଇଛି । ଛାତ୍ରମାନେ ଏହାକୁ ଅଧିକ ମୂଲ୍ୟ ଦେଉଛନ୍ତି । ସେମାନେ ଦୂରରୁ ଶୁଣୁଛନ୍ତି । ସେତିକିରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେବାର ଯୋଗ୍ୟତା ମିଳି ପାରୁଛି । ଶିଷ୍ୟଙ୍କ ପକ୍ଷରେ ଗୁରୁଙ୍କର ସମୀପ ହେବାର ଆବଶ୍ୟକତା ନାହିଁ । କରି ଦେଖାଇ ଦେବାର ସୁଯୋଗ ନାହିଁ । ପରସ୍ପରର ଜୀବନକୁ ସମୃଦ୍ଧ କରିବାର ସଚେତନତା ଆସିବ କାହିଁକି ? ବ୍ୟକ୍ତିଗତ ଓ ସାଧାରଣ ଜୀବନରେ ଐକ୍ୟ ପ୍ରତିଷ୍ଠା କରି ବିଚାରକୁ ଆଚରଣରେ ସଙ୍କେଇବାର ଆବଶ୍ୟକତା ନାହିଁ । ପ୍ରଣାଳୀ, ପରୀକ୍ଷା, ପ୍ରଶାସନ ଆଦି ସକଳ କ୍ଷେତ୍ର ଗୁରୁ ଶିଷ୍ୟ ନିକଟ ସମ୍ପର୍କ ପ୍ରତିଷ୍ଠା କରିବାରେ ସହାୟକ ହେଉ ନାହିଁ । ଛୋଟ ବଡ ସବୁ କାମରେ ରାଜନୀତିର କଳୁଷିତ ଅନୁପ୍ରବେଶ ଏକ

ପ୍ରଧାନ ଅନ୍ତରାୟ ହୋଇଅଛି । ଶିକ୍ଷା ଏକ ସହଯୋଗୀ ବିକାଶମୂଳକ କାର୍ଯ୍ୟକ୍ରମ– ଏହ ସାବ୍ୟସ୍ତ ହୋଇ ପାରୁନାହିଁ । ପ୍ରତିଭାର ପରିପୂର୍ଣ୍ଣ ପ୍ରକାଶ କ୍ୱଚିତ୍ ଦେଖାଯାଉଛି । କାଗଜ ପତ୍ରରେ ପ୍ରତିଷ୍ଠା, କିନ୍ତୁ କାମରେ କାହିଁ ?

ଅତଏବ ଗୁରୁ-ଶିଷ୍ୟର ସୁସ୍ଥ ସମ୍ପର୍କ କେବଳ ଗୁରୁକୂଳ ଶିକ୍ଷା ବ୍ୟବସ୍ଥାର ଗୌରବାବହ ବୈଶିଷ୍ଟ୍ୟ ନୁହେଁ, ଏହା ଆଜିର ଆବଶ୍ୟକତା । ଶିକ୍ଷା ଏକ ଗଣ-ଆନ୍ଦୋଳନରେ ପରିଣତ ହେବାକୁ ଯାଉଛି । ଏହା ସାମାଜିକ ଓ ଅର୍ଥନୈତିକ ବିକାଶର ଅଙ୍ଗ ଓ ସାଧନ ଅଟେ । ସେହି ଦୃଷ୍ଟିରୁ ପ୍ରତ୍ୟେକ ଅନୁଷ୍ଠାନକୁ ସାମାଜିକ ଦାୟିତ୍ୱ ବହନ କରିବାକୁ ପଡ଼ିବ । ଶିକ୍ଷାର ସାମାଜିକ ଲକ୍ଷ୍ୟ ରହିବା ଉଚିତ । ଶିକ୍ଷାର ପ୍ରତ୍ୟେକ ସ୍ତରରେ ସମାଜସେବା ଏହାର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେବ । ଶିକ୍ଷାନୁଷ୍ଠାନରେ ଶ୍ରେଣୀ ଅନ୍ତର୍ଗତ ଓ ବହିର୍ଭୂତ କାର୍ଯ୍ୟଗୁଡ଼ିକ ସାମାଜିକ ସମସ୍ୟା ଓ ପ୍ରସଙ୍ଗ ସହିତ ସମ୍ପର୍କୀକୃତ ହେବ । ଏବେ ସମାଜସେବା ଶିବିର ଦ୍ୱାରା କିଛି କିଛି କାର୍ଯ୍ୟ କରାଯାଉଛି । ଏହା ସ୍ୱାଭାବିକ ରୀତିରେ ଶିକ୍ଷାୟତନର ଅଙ୍ଗୀଭୂତ ହେବ । ତଦ୍ୱାରା ଏବକାର ମାମୁଲି କାର୍ଯ୍ୟଗୁଡ଼ିକ ଚିତ୍ତାକର୍ଷକ ଓ ପ୍ରାସଙ୍ଗିକ ହେବ । ଏହା ଫଳରେ ସମସ୍ତ କାର୍ଯ୍ୟ ଗତିଶୀଳ ହେବ । ଶିକ୍ଷାୟତନର ସମସ୍ତ ସମୟ ଯଦି କେତେଖଣ୍ଡ ପାଠ୍ୟପୁସ୍ତକକୁ ବାରମ୍ବାର ପୁନରାବୃତ୍ତି କରିବାରେ ଆବଦ୍ଧ ହୁଏ, ତେବେ ସମସାମୟିକ ସମାଜ ପ୍ରତି ଏହା ଅର୍ଥହୀନ ହୋଇପଡ଼ିବ ।

ଏବେ ସମାଜରେ ପରିବର୍ତ୍ତନ ଚାଲିଛି । ବିକାଶମୂଳକ କାର୍ଯ୍ୟକ୍ରମ ଦ୍ୱାରା ସାମାଜିକ ଜୀବନ ନିରନ୍ତର ପ୍ରଭାବିତ ହେଉଅଛି । ଉତ୍ପାଦନର କୌଶଳ ଏକ ନୂତନ ଦିଗରେ ବିକାଶ ଲାଭ କରୁଛି । ଜ୍ଞାନର ପରିସୀମା କ୍ଷିପ୍ରତର ଗତିରେ ବିସ୍ଫାରିତ ହେଉଅଛି । ସଂସ୍କୃତିର ସ୍ୱରୂପ ସମୃଦ୍ଧ ହେବାରେ ଲାଗିଛି । ସେପରି ସ୍ଥଳରେ ଶିକ୍ଷାୟତନ ସାମାଜିକ ପରିବର୍ତ୍ତନର ମାଧ୍ୟମ ହେବ । ଗୁରୁ-ଶିଷ୍ୟ-ଅଭିଭାବକଙ୍କ ସମ୍ମିଳିତ ଉଦ୍ୟମରେ ବିଭିନ୍ନ ପ୍ରକଳ୍ପ ହାତକୁ ନିଆଯିବ । ବଡ଼ ବଡ଼ ଶିକ୍ଷାୟତନର ଶିକ୍ଷାର୍ଥୀମାନଙ୍କୁ ଶ୍ରେଣୀ ନିର୍ବିଶେଷରେ ୧୦ ଜଣ ବା ୧୫ ଜଣ କରି ଦଳଗଠନ କରାଯିବ ଓ ଜଣେ ଜଣେ ଶିକ୍ଷକ ଏମାନଙ୍କ ଦାୟିତ୍ୱରେ ରହି କାମ କରିବେ । ଶିକ୍ଷା ଓ ବୃତ୍ତିଗତ ନିର୍ଦ୍ଦେଶନା, ବିଶେଷ କରି ବ୍ୟକ୍ତିଗତ ନିର୍ଦ୍ଦେଶନା ଅନୁଷ୍ଠାନର ଅଙ୍ଗ ହେବ । ପ୍ରତ୍ୟେକ ଅନୁଷ୍ଠାନରେ ଗୁରୁ-ଅଭିଭାବକ

ସମିତି ଗଠନ କରଯିବ । ଏହାଦ୍ୱାର ଶିକ୍ଷାର୍ଥୀଙ୍କର ସମ୍ପୂର୍ଣ୍ଣ ବିକାଶ କରଯାଇ ପାରିବ । ଶିକ୍ଷାର ଉନ୍ନତି ଓ ସଂସ୍କାର ବିଧାନ କରଯାଇ ପାରିବ । ପରିବାରକୁ ଶିକ୍ଷା ସହାୟକ କରି ଏହା ଶିକ୍ଷାଳୟର ଯେପରି ସହଯୋଗୀ ହେବ ସେହି ଆଭିମୁଖ୍ୟ ରହିବ । ପରିଶେଷରେ ଶିକ୍ଷାର ଲକ୍ଷ୍ୟ ସାଧିତ କରଯାଇ ପାରିବ ।

ବିଜ୍ଞାନ ଓ କାରିଗରି ବିଦ୍ୟାର ନାହିଁ ନ ଥିବା ବିକାଶର ପ୍ରସାର ଓ ପ୍ରଭବ ବଢୁଛି । ଏହା ଫଳରେ ରେଡ଼ିଓ, ଟେଲିଭିଜନ, ଚଳଚିତ୍ର ଆଦି ଗଣ ମାଧ୍ୟମର ବିକାଶ ହୋଇଛି । ଆନନ୍ଦ ଓ ଆମୋଦ ଦେବା ସଙ୍ଗେ ସଙ୍ଗେ ସେସବୁ ଶିକ୍ଷାର ଏକ ଅଭିନବ ଉତ୍ସ ରୂପେ କାର୍ଯ୍ୟ କରୁଛି । ତେଣୁ ସେ ବେଳ ପରି ଏବେଳରେ ଗୁରୁ ଆଉ ଜ୍ଞାନଦାନର ଏକମାତ୍ର ଅଧିକାରୀ ହୋଇ ନାହାନ୍ତି । ଶ୍ରେଣୀ କୋଠରୀ ଜ୍ଞାନାର୍ଜ୍ଜନର ଏକମାତ୍ର ପରିସର ହୋଇ ରହିନାହିଁ । ଏପରି ସ୍ଥଳରେ ଗୁରୁଶିଷ୍ୟର ସମ୍ପର୍କ ନିୟାମକ ଓ ପ୍ରାଧିକାର-ଭିତ୍ତିକ ନ ହୋଇ ସହାୟକ, ସହଯୋଗୀ ଓ ଉତ୍ସାହପ୍ରଦ ହେବା ଉଚିତ ।

ଶିକ୍ଷାଳୟ ଏକ ପରମ୍ପରଗତ ଅନୁଷ୍ଠାନରେ ପରିଣତ ନ ହୋଇ ଏକ ସାମାଜିକ ଗବେଷଣାଗାର ହେବ । ଗୁରୁ ଓ ଶିଷ୍ୟ ହେବେ ସାମାଜିକ ଇଞ୍ଜିନିୟର । ଚିରଚରିତ ଓ ଚିରନ୍ତନ ମୂଲ୍ୟବୋଧର ପୁନଃ ମୂଲ୍ୟାୟନ କରଯିବ । ସମାଜର ସୁରକ୍ଷା ଓ ନୂତନ ସମାଜର ସୃଷ୍ଟି– ଏହି ଉଭୟ ଦିଗରେ କାର୍ଯ୍ୟ କରଯିବ ।

ପାଠ୍ୟତାଲିକା, ପାଠ୍ୟପୁସ୍ତକ ଓ ପରୀକ୍ଷାର ଦାସ ନ ହୋଇ ଗୁରୁ ଓ ଶିଷ୍ୟ ଏକ ଉନ୍ମୁକ୍ତ ପରିବେଶରେ କାର୍ଯ୍ୟ କରିବେ । ସାମାଜିକ ସମସ୍ୟାର ଅଧ୍ୟୟନ କରଯିବ । ସେସବୁର ସମାଧାନ ପାଇଁ ଚିନ୍ତା ଓ ସାମର୍ଥ୍ୟର ସଞ୍ଚର କରଯାଇ ପାରିବ । ସମୀପସ୍ଥ ପରିବେଶର ସମସ୍ୟାପ୍ରତି ଦୃଷ୍ଟି ରହିବ । ଏହାଦ୍ୱାର ଗୁରୁ ଓ ଶିଷ୍ୟ ଶିକ୍ଷାର ପୁନର୍ଗଠନରେ ସହାୟକ ହୋଇ ପାରିବେ ।



# ସମାଜର ବିକାଶରେ ଶିକ୍ଷକଙ୍କ ଭୂମିକା

ଶିକ୍ଷାର ପରିସର ବସ୍ତୁତଃ ଶିକ୍ଷାୟତନ ମଧ୍ୟରେ ସୀମିତ । ଅସୀମ ସମ୍ଭାବନା ପରିପୂର୍ଣ୍ଣ ଜୀବନକାଳର ସ୍ୱଳ୍ପାଂଶ ଶିକ୍ଷାୟତନରେ ବ୍ୟୟିତ ହେଲେ ହେଁ ଏହାକୁ ସମସ୍ତ ପ୍ରସ୍ତୁତିର ଏକମାତ୍ର କ୍ଷେତ୍ରରୂପେ ଗ୍ରହଣ କରିବା ଏକ ବିରାଟ ବିଡ଼ମ୍ବନା । କେବଳ ସେତିକି ନୁହେଁ, ଶିକ୍ଷାୟତନ ବହିର୍ଭୂତ ସମସ୍ତ ଅଭିଜ୍ଞତା ଓ ଜୀବନର ସକଳ ସୁଯୋଗରେ ଶିକ୍ଷାର ପ୍ରୟୋଗକୁ ଅତି ଚତୁରତା ସହକାରେ ବାଦ ଦିଆଯାଇଥାଏ । ପାଠ୍ୟକ୍ରମର ବିନ୍ୟାସ ଓ ପରୀକ୍ଷାର ପରିସର ମଧ୍ୟରେ ଏଥିପାଇଁ ସୁଯୋଗ ନ ଥାଏ, କାରଣ ଏହା ସହଜସାଧ୍ୟ । ଆହୁରି ମଧ୍ୟ ସାମାଜିକ ସ୍ଥିତାବସ୍ଥାର କଳ୍ପନା ଏଥିରେ ନିହିତ । ଜ୍ଞାନରାଶି ମାତ୍ର କତିପୟ ଓ ଏହା ସୁସ୍ଥିର–ଏ ପ୍ରକାର ଏକ ଅସ୍ୱାଭାବିକ ଚିନ୍ତାକୁ ଏଥିରେ ଆଶ୍ରୟ କରାଯାଇଥାଏ । ଏଥିରେ ଜୀବନଦର୍ଶନ ନଥାଏ । ଆଚରଣସିଦ୍ଧ ହେବାର ପରିକଳ୍ପନା ନଥାଏ । ଗୁରୁଙ୍କର ମୁଖନିଃସୃତ ବାଣୀକୁ ଶିଷ୍ୟମାନଙ୍କ କର୍ଣ୍ଣ ଗୋଚରୀଭୂତ କରାଯାଏ । ଆବଶ୍ୟକ ସ୍ଥଳରେ ମନଃପ୍ରାଣଶୂନ୍ୟ କଣ୍ଠସ୍ଥୀକରଣର ଆଶ୍ରୟ ନିଆଯାଏ । ଏହା ନିଶ୍ଚିତ ଭାବରେ ଏକ ପ୍ରମାଣପତ୍ରସର୍ବସ୍ୱ ବ୍ୟବସ୍ଥା । ଏଥିରେ ଜୀବନର ରଚନା ନାହିଁ । ତେଣୁ ଜୀବନର ଆଧେୟ ସମାଜ ସହିତ ସମ୍ପର୍କ କାହିଁ ?

ଏହି ଦୟନୀୟ ପରିସ୍ଥିତିର ପରିଣତି ଭୟାବହ ହୋଇଅଛି । ଗୁରୁ ଓ ଶିଷ୍ୟ ମଧ୍ୟରେ ସମ୍ପର୍କ କ୍ରମେ ଦୂରତର ହେଉଅଛି । ଶିକ୍ଷା ସମାଜର ଆବଶ୍ୟକତା ପୂରଣ କରିପାରୁନାହିଁ । ସମାଜର ଆବଶ୍ୟକତା ଓ ବ୍ୟକ୍ତିର ଆବଶ୍ୟକତା ମଧ୍ୟରେ ସଂଯୋଗର ସେତୁ ନାହିଁ । ଏହା ଫଳରେ ଅନେକ ସ୍ଥଳରେ ଏପରି ଦେଖାଯାଏ ଯେ ଶିକ୍ଷା ଓ ଶିକ୍ଷାପ୍ରାପ୍ତ ବ୍ୟକ୍ତିଙ୍କୁ ପ୍ରତ୍ୟାଖ୍ୟାନ କରାଯାଉଛି । ବ୍ୟକ୍ତି ଜୀବନର ଯେଉଁ ଦୁଇଟି ଦିଗ ଅଛି, ଯଥା ବ୍ୟକ୍ତିଗତ ଓ ସାମାଜିକ-ସେଥି ମଧ୍ୟରେ ସମନ୍ୱୟ ସ୍ଥାପନ କରାଯାଉ ନାହିଁ । ଏହା ଫଳରେ ବ୍ୟକ୍ତିର ଜୀବନ ସମନ୍ୱିତ, ସଙ୍ଗଠିତ ଓ ସୁସଂହତ ହୋଇ ପାରୁନାହିଁ । ଏଥି ଯୋଗୁଁ ସମାଜ ଓ ଏହାର ପରିବର୍ତ୍ତନକୁ ବ୍ୟକ୍ତି ଗ୍ରହଣ କରିପାରୁ ନାହିଁ । ଏହିଁ ସ୍ଥିତି ଦ୍ୱୈତ ହୋଇଥିବାରୁ ଦ୍ୱନ୍ଦ୍ୱହିଁ ସାର ହେଉଛି । ଜ୍ଞାନର

ଉତ୍ପାଦନ ଏହା ଫଳରେ ଆଶାନୁରୂପ ବା ଆଦୌ ହେଉନାହିଁ । ଶୁକ ପକ୍ଷୀର ଜ୍ଞାନଭଣ୍ଡାର ପରି ଜ୍ଞାନର ରାଜ୍ୟରେ ଚର୍ବିତ ଚର୍ବଣ କରାଯାଉଛି । ଜୀବନର ବିଭିନ୍ନ ଅବସ୍ଥା ଓ ବହୁବିଧ ସ୍ଥିତିର ଜୀବନ ମଧ୍ୟରେ ଭାବର ସଞ୍ଚାର ହୋଇ ପାରୁନାହିଁ । ଏହା ଏକ ଅହେତୁକ ବିଭାଜନ ସୃଷ୍ଟି କରିଛି । ବିଭିନ୍ନ ସ୍ଥିତିରେ ସାମାଜିକ ବିକାଶ ପାଇଁ ଅନୁରୂପ ଓ ଅନ୍ୟାନ୍ୟ କୌଶଳ ସମ୍ଭବ ହେଉନାହିଁ । ତେଣୁ ବିକାଶ ବ୍ୟାହତ ଓ ରୋଗଗ୍ରସ୍ତ ହୋଇଅଛି । ଆମେ ଅନ୍ୟ ଦେଶର କୌଶଳକୁ ଅନ୍ଧ ଭାବରେ ଅନୁକରଣ କରୁଅଛୁ । ଏହାଦ୍ୱାରା ସମାଜ ଖଣ୍ଡିତ ହୋଇଅଛି । ଏହାର କଳ୍ପନା ଓ ଏକକ, ପରିବାର ମଧ୍ୟରେ ଆବଦ୍ଧ ହୋଇଅଛି । କେତେକ ସ୍ଥାନରେ ଏକ ବ୍ୟକ୍ତି, ଏକ ସମାଜ—ଏ ପ୍ରକାର ସ୍ୱାର୍ଥକେନ୍ଦ୍ରିକ ଓ ଉଗ୍ର ସଙ୍କୀର୍ଣ୍ଣତାର ପରିପୋଷକ ମାନବର ଅଭ୍ୟୁଦୟ ଘଟିଛି ।

ବିଭକ୍ତୀକରଣ ଏକ ବ୍ୟାଧି । ଏଥିରେ ମୃତ୍ୟୁ ସୁନିଶ୍ଚିତ । ଏ ବିଷୟରେ ସୁବିସ୍ତୃତ ଆଲୋଚନା କରାଯାଇପାରେ । ଏହି ପ୍ରସଙ୍ଗରେ ଆମ ଐତିହ୍ୟପୂର୍ଣ୍ଣ ଅତୀତର ଗୌରବ ଗୁରୁକୁଳ ଶିକ୍ଷାର କିଞ୍ଚିତ ପର୍ଯ୍ୟାଲୋଚନା କରିବା । ସେଠାକାର ଧ୍ୟେୟ ହେଉଛି, ଜୀବନଯାପନ ମାଧ୍ୟମରେ ଜୀବନର ନିର୍ମାଣ । ଗୁରୁ ଓ ଶିଷ୍ୟ ମଧ୍ୟରେ ନୈକଟ୍ୟର ତୁଳନା ଅନ୍ୟତ୍ର ନାହିଁ କହିଲେ ଚଳେ । "ଉପାସନା" ଶବ୍ଦରୁ ସାମୀପ୍ୟର ସୂଚନା ମିଳେ । "ତେଜସ୍ୱିନାମବଧୀତମସ୍ତୁ"ରୁ ଗୁରୁ ଓ ଶିଷ୍ୟ—ଏହି ଉଭୟଙ୍କର ସାଧନା ଓ ସିଦ୍ଧିର ପ୍ରମାଣ ମିଳେ । ଏହି ସାଧନାରେ ସମାଜ ଏକ ସ୍ୱତଃପ୍ରବୃତ୍ତ ଓ ଅବିଭକ୍ତ ଅଙ୍ଗ ହୋଇଯାଏ । We have read and so we are paid. ଏହା ସ୍ୱପ୍ନରେ ମଧ୍ୟ କଳ୍ପନା କରାଯାଏ ନାହିଁ । ଆତ୍ମୋପଲବ୍ଧି ହିଁ ଉଭୟଙ୍କର ଲକ୍ଷ୍ୟ ହୋଇଯାଏ । ପରିପୂର୍ଣ୍ଣତାର ଧ୍ୟେୟକୁ ଉଭୟେ ନିଜ ନିଜ ଜୀବନରେ ରୂପାୟିତ କରନ୍ତି । ଫଳରେ ମର୍ତ୍ତ୍ୟକୁ ଓହ୍ଲାଇ ଆସେ ଶାନ୍ତି, ମୈତ୍ରୀ ଓ ପ୍ରୀତି । ବସୁଧୈବ କୁଟୁମ୍ବକମ୍ । ଏହା ହିଁ ସେହି ସାଧନାର ସିଦ୍ଧି । ବ୍ୟକ୍ତିଗତ ଉପାୟରେ ଏହା ବ୍ୟକ୍ତିର ଉତ୍କର୍ଷ ନୁହେଁ, ସମଷ୍ଟିର ସ୍ରୋତ ଓ ସହଯୋଗରେ ବ୍ୟଷ୍ଟିର ବଳିଷ୍ଠ ସାଧନା । ସମଷ୍ଟି ବିନା ବ୍ୟକ୍ତି ଯେପରି ଅକଳ୍ପନୀୟ ସେହିପରି ବ୍ୟକ୍ତିର ସ୍ୱାଭାବିକ ପରିଣତି ହେଉଛି ସମଷ୍ଟି ।

ଏହାକୁ ଧ୍ୟାନ କରି ବିଭକ୍ତୀକରଣର ବିଷମ ବ୍ୟାଧିରୁ ମୁକ୍ତ ହେବା ପାଇଁ ଉଦ୍ୟମ କରାଯାଇଛି । "ସା ବିଦ୍ୟା ଯା ବିମୁକ୍ତୟେ" ପ୍ରାଚୀନ କାଳର ଏହି

ସ୍ୱରୂପ ବର୍ଣ୍ଣନା ଶିକ୍ଷାକୁ ଯେଉଁ ଆସନରେ ଅଳଙ୍କୃତ କରିଥିଲା ଏହାର ପୁନରୁଦ୍ଧାର ପାଇଁ ପୁନଃ ପୁନଃ ପ୍ରୟାସ କରାଯାଇଅଛି । ସମାଜ କଲ୍ୟାଣକୁ ଶିକ୍ଷାରେ ଅଙ୍ଗୀଭୂତ କରିବା ହେଉଛି ଏକ ପ୍ରଧାନ ପ୍ରଚେଷ୍ଟା । ସମୟ ସମୟରେ ସମାଜର ସଞ୍ଚିତ ସାମଗ୍ରୀ ଓ ଦର୍ଶନୀୟ ସ୍ଥାନକୁ ପରିଭ୍ରମଣ ମାଧ୍ୟମରେ ଅଧ୍ୟୟନ କରି ବିସ୍ମୟ ଓ ଆନନ୍ଦ ପ୍ରକାଶ କରିବା ହେଉଛି ଏହାର ଉଦାହରଣ । ଦୁର୍ବିପାକଗ୍ରସ୍ତ ସମାଜର ସେବା କରିବା ଅନ୍ୟତମ ଦୃଷ୍ଟାନ୍ତ । ସମାଜସେବାବାହିନୀ ଗଠନ କରାଯାଇଅଛି । ସମ୍ମିଳିତ ଓ ସଙ୍ଗଠିତ ଉଦ୍ୟମ କରାଯାଇଥିଲେ ହେଁ ଶିକ୍ଷା ପଦ୍ଧତିର ଏହା ଅବିଚ୍ଛିନ୍ନ ଅଙ୍ଗ ହୋଇନାହିଁ ଓ ସମାଜ–ସେବାକୁ ଶିକ୍ଷାର ଉପଜୀବ୍ୟ କରାଯାଇ ପାରିନାହିଁ । ଶିକ୍ଷା ଜୀବନରେ ଏହା ଏକ ଅବାରିତ କ୍ରିୟାକଳାପରେ ପରିଣତ ହୋଇନାହିଁ । ଅବଶ୍ୟ ସମାଜତତ୍ତ୍ୱ ଏକ ପାଠ୍ୟ ବିଷୟ ରୂପେ ସ୍ୱୀକୃତି ଲାଭ କରିଛି ଏବଂ ଶିକ୍ଷାର ସମାଜତତ୍ତ୍ୱ ମଧ୍ୟ ଆଦର ଓ ପ୍ରସାର ପାଇଛି ।

•

ଏହାଛଡ଼ା, ଶିକ୍ଷାକୁ ସମାଜ ଅଭିମୁଖୀ ଓ ସମାଜ ଆଧାରିତ କରିବା ପାଇଁ ଗାନ୍ଧୀ ବିଚାରଧାରାର ନିର୍ଦ୍ଦିଷ୍ଟ ଦାନ ରହିଛି । "ଅତି ନଗଣ୍ୟ ହେଉପଛକେ, ଜୀବନର ଏପରି ବ୍ୟାପାର ନାହିଁ, ଯାହାକି ଶିକ୍ଷାର ଉପଜୀବ୍ୟ ହେବ ନାହିଁ ?" ସମଗ୍ର ଦୃଷ୍ଟିଭଙ୍ଗୀର ଏହା ବୈପ୍ଳବିକ ପରିବର୍ତ୍ତନ ଆଣିଦିଏ । ଠିକ୍ ସେହି କ୍ରମରେ କର୍ମକୁ ଶିକ୍ଷାର ବାହକ ରୂପେ ଗ୍ରହଣ କରିବା ଫଳରେ ଶିକ୍ଷା, ଜୀବନ, ସମାଜ ଓ ବ୍ୟକ୍ତିର ଏକ ବିଚିତ୍ର ବିକାଶ କଳ୍ପନା କରାଯାଏ । କାରଣରୁ ହିଁ ବିଦ୍ୟାଳୟକୁ ବିଦ୍ୟାବିଳୟର କ୍ଷେତ୍ର ନକରି ବିଦ୍ୟାର ଆଳୟ କରାଯିବ । ଏ ସମ୍ପର୍କରେ ବିନୋବାଙ୍କ ସୂତ୍ର ତାତ୍ପର୍ଯ୍ୟପୂର୍ଣ୍ଣ । ଗୁରୁ ଛାତ୍ର ପରାୟଣ ହେବେ, ଛାତ୍ର ଗୁରୁପରାୟଣ ହେବେ, ଗୁରୁ ଓ ଛାତ୍ର ବିଦ୍ୟାପରାୟଣ ହେବେ ଓ ଉକ୍ତ ବିଦ୍ୟା ସେବାପରାୟଣ ହେବ । ସମସ୍ତ ବିଖଣ୍ଡିତ ଓ ଦ୍ୱୈତ ଭାବନା ପରିବର୍ତ୍ତେ ଏହା ଏକ ଅଦ୍ୱୈତ ଭାବମୂର୍ତ୍ତି ସୃଷ୍ଟି କରେ । ଏହା ସହଯୋଗର ସୂତ୍ର ପ୍ରତିଷ୍ଠା କରେ । ସେବା ମାଧ୍ୟମରେ ଗୋପବନ୍ଧୁ ମାନବ ନିର୍ମାଣରେ ଲାଗି ପଡନ୍ତି । ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ସେହି ପରିପ୍ରେକ୍ଷୀରେ ଅଧିକ ସମୟୋପଯୋଗୀ ଓ ପ୍ରାସଙ୍ଗିକ । ଶିକ୍ଷା ହେବ ସେହି ସମାଜର ଉପାୟ ଓ ଉଦ୍ଦେଶ୍ୟ । ବିକାଶକୁ କ୍ଷିପ୍ରତର କରିବା ପାଇଁ ଶିକ୍ଷାକୁ ସାଧନ କରାଯିବ ଓ ଏହାହିଁ ବିକାଶର ଅନ୍ୟତମ ଧାରା ହୋଇ ରହିବ ।

ଏହି ଦୃଷ୍ଟିରେ ଲକ୍ଷ୍ୟ କରଗଲେ ସମାଜର କଲ୍ୟାଣ ଯେ ଶିକ୍ଷା ଦ୍ୱାର ସାଧିତ ହେବ ଏହି ଚିନ୍ତା ସେତେଦୂର ଉନ୍ନତ ଜଣାଯାଏ ନାହିଁ । ଗୋଟିଏ ଶ୍ରେଣୀ–ସମାବିଷ୍ଟ ସମାଜରେ କଲ୍ୟାଣ ଉଚ୍ଚତର ଶ୍ରେଣୀର ଦାନ ରୂପେ ପରିଗଣିତ ହୁଏ । ଅଭାବଗ୍ରସ୍ତଙ୍କ ପ୍ରତି ଧାଇଁ ଯାଇ କିଛି ଦେଇ ଆସିବାର ଅର୍ଥକୁ ବୁଝାଇବ । ଏହି ନିକୃଷ୍ଟ ଭାବନାକୁ ଦୂର କରିବା ପାଇଁ "ନରନାରାୟଣ" ଓ "ଜୀବକୁ ଶିବ" ଜ୍ଞାନ କରିବାର ବିଚାର ଆସିଛି । ସମାଜର ଋଣ ପରିଶୋଧ କରିବା ପାଇଁ ସମାଜ ସେବାର ଅବଲମ୍ବନ କରଯାଇଛି । ବହୁ ବିକାଶଶୀଳ ରାଷ୍ଟ୍ରରେ ବିକାଶର ଧାରକୁ ସାର୍ଥକ ଓ ସକ୍ରିୟ କରିବା ପାଇଁ ଏହି ଚିନ୍ତା ଗ୍ରହଣ କରଯାଇଛି । ୧୯୬୪ ମସିହାରେ ଟାଞ୍ଜାନିଆର ଅର୍ଥନୈତିକ ଓ ସାମାଜିକ ବିକାଶ ପାଇଁ ପଞ୍ଚବାର୍ଷିକ ଯୋଜନାର ଉପକ୍ରମରେ ରାଷ୍ଟ୍ରପତି ନିରେରେ ବ୍ୟକ୍ତ କରନ୍ତି, "ଆମ ନାଗରିକଙ୍କ ମଧ୍ୟରୁ ଅନେକଙ୍କ ଶିକ୍ଷାରେ ବହୁ ଅର୍ଥ ବ୍ୟୟ କରଯିବ, ଅଥଚ ଅନ୍ୟମାନେ କିଛି ପାଇବେ ନାହିଁ । ସୁତରାଂ ଯେଉଁମାନେ ଏହି ସୁବିଧା ପାଉଛନ୍ତି ଅନ୍ୟମାନଙ୍କ ତ୍ୟାଗର ଋଣ ପରିଶୋଧ ପାଇଁ ସେମାନଙ୍କର କର୍ତ୍ତବ୍ୟ ରହିଛି । ଏହାକୁ ତୁଳନା କରଯାଇ ପାରେ ଯେ ଗୋଟିଏ ବୁଭୁକ୍ଷୁ ଗାଁର ସମସ୍ତ ଖାଦ୍ୟ ସେମାନଙ୍କୁ ଦିଆଯାଇଛି, ଯଦ୍ୱାର ଦୂରବର୍ତ୍ତୀ ସ୍ଥାନରୁ ଖାଦ୍ୟ ବୋହି ଆଣିବା ପାଇଁ ସେମାନଙ୍କର ବଳ ହେବ । ସେ ସବୁ ଖାଦ୍ୟ ଖାଇସାରି ତା'ର ଭାଇମାନଙ୍କୁ ଯଦି ସାହାଯ୍ୟ ନ କରେ ତେବେ ସେ ବିଶ୍ୱାସଘାତକ । ସେହିପରି ଏହି ସାଧାରଣତନ୍ତ୍ରର ଲୋକମାନଙ୍କ ପଇସାରେ ଶିକ୍ଷା ପାଇ ଯୁବସମ୍ପ୍ରଦାୟ ମଧ୍ୟରୁ ଯଦି କେହି ହାମବଡ଼ା ଭାବ ପୋଷଣ କରନ୍ତି କିମ୍ବା ଏହି ଦେଶର ବିକାଶକୁ ସାହାଯ୍ୟ କରିବା ନିମନ୍ତେ ସେମାନଙ୍କ ଜ୍ଞାନର ପ୍ରୟୋଗ କରିବା ପାଇଁ ବିଫଳ ହୁଅନ୍ତି ତେବେ ସେମାନେ ଆମ ଦେଶରେ ବିଶ୍ୱାସଘାତକତା କରୁଛନ୍ତି ।" ବାସ୍ତବରେ ଶିକ୍ଷା ପାଇ ନିଜ ପ୍ରଭୁତ୍ୱକୁ ଜାହିର କରିବା ପାଇଁ ଶିକ୍ଷାକୁ ସାଧନ ରୂପେ ବ୍ୟବହାର କରିବାର ଦୃଷ୍ଟାନ୍ତ ବିଶେଷ ଭାବରେ ପରିଲକ୍ଷିତ ହୁଏ । ଯେପରି ରେଳଗାଡ଼ିର ଭିଡ଼ ଭିତରେ ନିଜ ପାଦକୁ ଥୟ କରିସାରି ଅନ୍ୟମାନଙ୍କ ପ୍ରବେଶାଧିକାରକୁ ଅବରୋଧ କରିବା ପାଇଁ ଆମର ଶତସିଂହର ବଳ ହୋଇଯାଏ ଓ ଆମ ଭିତରେ ଅଭୂତପୂର୍ବ ସଂଗଠନ ଆସିଯାଏ, ଏହା ଠିକ୍ ସେହିପରି । ସେଥିପାଇଁ ସୁବିଧାଭୋଗୀ ଗୋଷ୍ଠୀ ଯେ ଶିକ୍ଷାରୁ ସବୁ ସୁବିଧା ମାରିନେଉଛନ୍ତି ଓ ଅନ୍ୟମାନେ ଆବଦ୍ଧତା ଓ ଅପଚୟରେ ସଢ଼ି ଜଳକା ହୋଇଛନ୍ତି– ଏହା କାହାରିକୁ ଅବଦିତ ନୁହେଁ । ସମାଜ ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରିବା ଉଦ୍ଦେଶ୍ୟରେ କୋଠାରୀ କମିଶନ ସମାଜ ସେବାକୁ

ଶିକ୍ଷା–ଯୋଜନାର ଅଙ୍ଗୀଭୁତ କରିଛନ୍ତି । ତାହାହେଲେ ଶିକ୍ଷା ଓ ସମାଜର ବିକାଶ ସାଧିତ ହୋଇପାରିବ ।

ଅତଏବ ସମାଜ କଲ୍ୟାଣକୁ ଦାନର ବସ୍ତୁ ଭବରେ ଗ୍ରହଣ କରି ଶିକ୍ଷାର ଅଙ୍ଗୀଭୂତ କରିବାର ଯୁଗ ଗ୍ଲି ଗଲଣି । ଶିକ୍ଷା ଓ ବିକାଶର ଅର୍ଥରେ ପରିବର୍ତ୍ତନ ହୋଇଛି । ଶିକ୍ଷା ହିଁ ବିକାଶର ପ୍ରକ୍ରିୟା । ଶିକ୍ଷକ ଶିକ୍ଷା ଦେବେ ଓ ଶିଷ୍ୟ ଶିକ୍ଷକଙ୍କ ଦାନ ଗ୍ରହଣ କରିବେ– ଏହା ଏକ ଭ୍ରାନ୍ତ ଧାରଣା । ସେ ଢ଼ାଳିଦେବେ ଓ ଇଏ ପିଇଯିବେ– ଏହା ଭୂଲ । ଶିକ୍ଷା ଫଳରେ ଛାତ୍ରର ମର୍ଯ୍ୟାଦା ବଢ଼ିଛି ଓ ସେ ନିଜକୁ ନିଜେ ଆତ୍ମବଳରେ ଶିକ୍ଷା ଦେଇପାରିବ– ଏହି ସୀକୃତି କ୍ରମେ ବୃଦ୍ଧି ପାଉଛି । କେତେକ ଲୋକଙ୍କର ବା ଗୋଟିଏ ଗୋଟିଏ ଅଞ୍ଚଳର ବିକାଶ ଅନ୍ୟମାନେ କରିଦେବେ– ଏହି ଧାରଣା ମଧ୍ୟ ଭ୍ରାନ୍ତ ବୋଲି ପ୍ରମାଣିତ ହୋଇଛି । ଏଥିରେ ଦାତା ଓ ଗ୍ରହୀତାଙ୍କ ପ୍ରଶ୍ନ ନାହିଁ । ଉଭୟଙ୍କ ବିକାଶର ସମ୍ଭାବନାରେ ଏହି ପ୍ରକ୍ରିୟା ଶାଣିତ ହୁଏ । ଶିକ୍ଷା ବିକାଶର କେନ୍ଦ୍ରବିନ୍ଦୁ ହେଉଛି ମାନବ । ସେ ସମଗ୍ର ଓ ଅବିଭକ୍ତ । ଶରୀର, ମନ, ଆତ୍ମା, ଆବେଗ ଆଦିର ବିଭଗୀକରଣ ନକରି ସମଗ୍ର ବ୍ୟକ୍ତିର ସର୍ବାଙ୍ଗୀନ ଶିକ୍ଷା କଥା କୁହାଯାଏ । ସେହିପରି ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ଆଦି ଦିଗରେ ବିକାଶର ବିଭଗ କରିବା ସମୁଚିତ ନୁହେଁ । ଏସବୁ ପରସ୍ପର ଜଡ଼ିତ । ସେ ଦୃଷ୍ଟିରୁ ଅନେକେ ଗ୍ରାମ୍ୟ ଓ ସହରାଞ୍ଚଳର ବିକାଶକୁ ଆପତ୍ତି କରି ଛୋଟ ପିଲ କାନ୍ଦୁଥିବାବେଳେ ଗୋଟିଏ ଖେଳନା ପରେ ଆଉ ଗୋଟିଏ ଦେଇ ଭଣ୍ଡାଇ ଦେବା ସଙ୍ଗେ ଏହାକୁ ସମାନ କରନ୍ତି । ସମସ୍ତଙ୍କର ସର୍ବାଙ୍ଗୀନ ଓ ସମଗ୍ର ବିକାଶ ଆମର ଧ୍ୟେୟ ହେବା ଉଚିତ ।

ସୁତରାଂ ଶିକ୍ଷା ଓ ବିକାଶ ପରସ୍ପର ଅଙ୍ଗାଙ୍ଗୀ ଜଡ଼ିତ । ଶିକ୍ଷା ହେଉଛି ବିକାଶର ସାଧନ ଓ ସିଦ୍ଧି । ଏହା ବିକାଶର ଅଙ୍ଗ ଅଟେ । ସେହିପରି ଶିକ୍ଷା ହେଉଛି ଏକ ବିକାଶମୂଳକ ପ୍ରକ୍ରିୟା । ବିକାଶ ମାଧ୍ୟମରେ ଓ ବିକାଶ ପାଇଁ ଶିକ୍ଷା ଅଭିପ୍ରେତ । ତେଣୁ ଶିକ୍ଷା ଓ ଶିକ୍ଷକ, ବିକାଶ ସହିତ ଜଡ଼ିତ । ପାଠ୍ୟକ୍ରମର ବିନ୍ୟାସ ଏପରି କରାଯିବ ଯଦ୍ଦ୍ୱାର ଶିକ୍ଷାୟତନ ସମାଜର ଅଙ୍ଗ ହୋଇ ରହିବ । ଏହା ସମାଜ ସହିତ ଜଡ଼ିତ ହେବ । ଶ୍ରେଣୀର ବିଜ୍ଞାନ ଓ କୃଷିର ବିଜ୍ଞାନ ମଧ୍ୟରେ ବଡ଼ ସାନର ଭେଦ ନାହିଁ । ଶିକ୍ଷାର ସୂତ୍ରପାତ ହେଉଛି ସମାଜର ବିକାଶରୁ । ଶିକ୍ଷା ସମସ୍ତ ବିକାଶର ମୌଳିକ ସୋପାନ ।

ଏହି ଦୃଷ୍ଟିରୁ ବିଗ୍ୱର କଲେ ସମାଜର ବିକାଶରେ ଶିକ୍ଷକ କି ପ୍ରକାର ଭୂମିକା ଗ୍ରହଣ କରିବେ ଏହା ସହଜରେ ଅନୁମେୟ । ବିକାଶର କର୍ମୀ ହେଉଛନ୍ତି ଶିକ୍ଷକ, ତେଣୁ ସେ ଅନ୍ୟାନ୍ୟ ବିକାଶ କର୍ମୀଙ୍କ ଠାରୁ ବିଚ୍ଛିନ୍ନ ନୁହନ୍ତି । ଶିକ୍ଷା ମଧ୍ୟ ଅନ୍ୟାନ୍ୟ ବିକାଶମୂଳକ ଧାରା ସହିତ ଜଡ଼ିତ । ଅତଏବ ଏହି ସମୂହ ପରିପ୍ରେକ୍ଷୀରେ ଗୁରୁଙ୍କର ଦାୟିତ୍ୱ ମଧ୍ୟ ବୃଦ୍ଧି ପାଇଛି । କୃଷି, ସ୍ୱାସ୍ଥ୍ୟ ଆଦି ବିଭିନ୍ନ ବିକାଶର ଧାରା ସହିତ ନିଜକୁ ସମ୍ପୃକ୍ତ କରାଇ ସମଗ୍ର ସମାଜର ପ୍ରଗତି ସାଧନ କରିବାରେ ତାଙ୍କ କର୍ତ୍ତବ୍ୟ ସମୁଚିତ ହୁଏ ।



# ଶିକ୍ଷାଳୟରେ ଗ୍ରନ୍ଥାଳୟ

ପାଠଶାଳାଠାରୁ ଆରମ୍ଭ କରି ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସର୍ବତ୍ର ଗ୍ରନ୍ଥାଳୟର ଆବଶ୍ୟକତା ରହିଛି । ସମସ୍ତ ପ୍ରକାର ଶିକ୍ଷାୟତନର ଅପରିହାର୍ଯ୍ୟ ଅଙ୍ଗରୂପେ ଗ୍ରନ୍ଥାଳୟକୁ ସ୍ଥାନ ଦିଆଯାଇଛି । ପୂର୍ବକାଳର ଚାଟଶାଳୀରେ ମଧ୍ୟ ଅବଧାନଙ୍କ ପେଡ଼ି ଓ ବସ୍ତାନିରେ ଭଗବତ, ଗହାସ, ମନବୋଧ ଚଉତିଶା, ବର୍ଣ୍ଣବୋଧ, ଆର୍ତ୍ତତ୍ରାଣ ଜଣାଣ ଆଦି କେତେଖଣ୍ଡ ବହି ଥିବାର ଜଣାଯାଏ । ଅବଧାନଙ୍କ ଅଧ୍ୟୟନ ଓ ଅଧ୍ୟାପନାରେ ଏସବୁ ସାହାଯ୍ୟ କରେ । ମୁଦ୍ରଣ ଯନ୍ତ୍ରର ଆବିଷ୍କାର ପାଠସାମଗ୍ରୀ ପ୍ରସ୍ତୁତିରେ ବିପ୍ଳବ ସୃଷ୍ଟି କରିଛି । ଶିକ୍ଷାର ବିଭିନ୍ନ ବିଭବ ସୁସ୍ପଷ୍ଟ ଓ ପ୍ରମାଣୀକୃତ ହୋଇଅଛି । ଏଣୁ ଗୁରୁତର ମାତ୍ରାରେ ପାର୍ଥକ୍ୟ ଥିଲେ ହେଁ ଗ୍ରନ୍ଥାଳୟର ସ୍ଥାନ ଓ ବ୍ୟବହାର ଯେ ସୁନିଶ୍ଚିତ ଏଥିରେ ସନ୍ଦେହ ନାହିଁ ।

ଅନେକ ଅନୁଷ୍ଠାନର ଅଧିକାରୀ ସେମାନଙ୍କ ଗ୍ରନ୍ଥାଳୟର ମୂଲ୍ୟ ବୁଝନ୍ତି ନାହିଁ । ଏହା ଏକ ଅଳଙ୍କାର ରୂପେ ପରିଗଣିତ ହୋଇଥାଏ । ଦର୍ଶକ, ପରିଦର୍ଶକ ତଥା ଆଗନ୍ତୁକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଏହା ନିୟୋଜିତ ହୁଏ । ଚକଚକିଆ ଛବି ଓ କାଚଦିଆ ମୋଟା ଆଲମାରୀ ଭିତରେ ଜ୍ଞାନର ଭଣ୍ଡାର ବାନ୍ଧି ହୋଇଯାଇଥାଏ । ବହି ଚିରିଯିବ, ଉଇ ଚରିଯିବ ବା ଯେରିଯିବ, ଏହି ଭୟରେ କାହାକୁ ଛୁଇଁବାକୁ ଦିଆଯାଏ ନାହିଁ । ବିଦ୍ୟାଳୟର ବାର୍ଷିକ ବିବରଣୀରେ ଗ୍ରନ୍ଥର ସଂଖ୍ୟା ଉଲ୍ଲେଖ କରଯାଉଥାଏ । ତାଙ୍କ ସମୟ ଅତିକ୍ରାନ୍ତ ହେବାଯାଏଁ ଅନୁଷ୍ଠାନର ଅଧ୍ୟକ୍ଷ କେବଳ ସଂଖ୍ୟା ଗଣିବାରେ ଅତିବାହିତ କରିଦିଅନ୍ତି । ତେଣୁ ନିଯୁକ୍ତ ବା ସମପଦ ଗ୍ରନ୍ଥାଳୟୀ ଗୋଟିଏ ଗୋଟିଏ କୋଷାଧ୍ୟକ୍ଷରେ ପରିଣତ ହୁଅନ୍ତି ଓ ଜ୍ଞାନ ଅଚଳ ହୋଇଯାଏ । ଜ୍ଞାନର ଭଣ୍ଡାରରେ ସବୁବେଳେ ତାଲବନ୍ଦ ରହେ । ବ୍ୟାଙ୍କର ଲକରରେ ଅଳଙ୍କାର ପରି ଜ୍ଞାନସମ୍ପଦରେ ଜଉମୁଦ ପଡ଼ିଥାଏ । କାଗଜ କଲମ ହିସାବ କରିବାରେ ଜ୍ଞାନର ଚର୍ଚ୍ଚା ସୀମିତ ହୋଇଯାଏ ।

ବସ୍ତୁତଃ ଏହାହିଁ ଜୀବନର ଅମୂଲ୍ୟ ସମ୍ପଦ । ଜ୍ଞାନର ଗନ୍ତାଘର । ଜନଜୀବନରେ ଯେପରି ଶିକ୍ଷାୟତନର ସେହିପରି ଏହା ଜ୍ଞାନପିପାସାକୁ ସୃଷ୍ଟି ଓ ସମ୍ପ୍ରସାରିତ କରେ ।

ଅବୋଧ ଶିଶୁ ଛବିଲ ପୁସ୍ତକକୁ ଆଖି ତରଟି ଅନାଇ ରହେ । ମର୍ଜିଯାଏ ଓ ପିଇଯାଏ । ପସ୍ତକର ପୃଷ୍ଠାରେ ଯୁବକର ତେଜ, ବୀର୍ଯ୍ୟ ଓ ବଳ ପ୍ରତିଭାତ ହୁଏ । ପ୍ରୌଢ଼ର ଚତୁର ଜ୍ଞାନ ରସାଣିତ ହୁଏ । ଶ୍ରଦ୍ଧା ଓ ସଦିଚ୍ଛାର ସ୍ରୋତ ପ୍ରବାହିତ ହୁଏ । ଶିକ୍ଷା, ସଭ୍ୟତା, ସଂସ୍କୃତି ଓ ବିକାଶର ଧର୍ମ ଓ ଧାରା ଏଥିରେ ପ୍ରତି-ଫଳିତ ହୁଏ । ସମୃଦ୍ଧିର ସୁନିଶ୍ଚିତ ଓ ସ୍ୱଚ୍ଛ ପ୍ରତିଛବି କାଳକାଳ ପାଇଁ ରହିଯାଏ । ମାନବ ସମାଜର ଅନୁଭୂତି, ଅଭିଳାଷ, ଆବିଷ୍କାର ଓ ଆତ୍ମଚେତନା ସଞ୍ଚିତ ହୋଇ ରହିଥାଏ । ବଚନ, ବ୍ୟଥା ଓ ବ୍ୟଞ୍ଜନାରେ ଯାହା କିଛି ବିଶ୍ୱର ସର୍ବଶ୍ରେଷ୍ଠ, ସେସବୁ ପୁସ୍ତକର ପୃଷ୍ଠାରେ କେବଳ ସଞ୍ଚିତ ହୋଇ ରହେ ନାହିଁ, ତାହା ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ତରଙ୍ଗାୟିତ ହୁଏ । ବ୍ୟକ୍ତିର ଜ୍ଞାନ ପ୍ରସାରିତ ହୁଏ । ତା'ର ଭୌତିକ ସ୍ଥିତି ସୀମିତ ହେଲେହେଁ ଚିନ୍ତା ଓ ଚେତନା ସୀମାହୀନ ହୋଇଯାଏ । ବିଶାଳ ବିଶ୍ୱର ବକ୍ଷ ତା'ପାଇଁ ଅଜ୍ଞେୟ ହୋଇ ରହେ ନାହିଁ । ବରଂ ସମଗ୍ର ଧରା ଅଚିରେ ତା'ର ଚର ଭୂଇଁ ହୋଇଯାଏ ।

ବହିର ପୃଷ୍ଠାକୁ ଓଲଟାଇଲେ ଖଣ୍ଡ ପରେ ଖଣ୍ଡ କାଗଜ ଯୋଡ଼ା ହୋଇଥିବାର ଅନୁମାନ କରାଯାଏ । ମାତ୍ର ଏହା ତାହା ନୁହେଁ । ପୃଷ୍ଠାଗୁଡ଼ିକର ବିଭିନ୍ନ ଧାଡ଼ିରେ ରୂପ ପାଇଥାଏ ଗ୍ରନ୍ଥକାରଙ୍କ ଭାବାବେଶ ଓ ଆଦର୍ଶ । ଅକ୍ଷର, ଶବ୍ଦ, ପଦ, ବାକ୍ୟ, ଅନୁଚ୍ଛେଦ ଓ ଅଧ୍ୟାୟ ମଧ୍ୟରେ ଲେଖକଙ୍କର ବିମ୍ବର ଉଙ୍କି ମାରୁଥାଏ । ଆୟାସସାଧ୍ୟ ସାଧନା ଓ ଆଦର୍ଶର କୋଣାର୍କ ମନ୍ଦିର ହେଉଛି ପ୍ରତ୍ୟେକଟି ପୁସ୍ତକ । ସାଧନାସିଦ୍ଧ ପରମ୍ପରାର ପ୍ରତୀକ ହେଉଛି ପ୍ରତ୍ୟେକ ପୁସ୍ତକାଗାର । ଗ୍ରନ୍ଥାଳୟରେ ଗ୍ରନ୍ଥକାରଙ୍କ ଅରୂପ ସମ୍ପର୍କ ମିଳିଥାଏ । ସେଥିରେ ଅତିବାହିତ ସମୟ ଅତ୍ୟନ୍ତ ପ୍ରେରଣାଦାୟକ । ପ୍ରତ୍ୟେକ ମୁହୂର୍ତ୍ତ ଆଦର୍ଶର ଆହ୍ୱାନ । ଅଙ୍ଗାରକୁ ଶହେବାର ଧୋଇଲେ ସୁଦ୍ଧା ମଳିନତା ଦୂର ହୁଏ ନାହିଁ ବୋଲି କୁହାଯାଏ । କିନ୍ତୁ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କର ସମ୍ପ-ର୍କରେ ଅଙ୍ଗାର ପରି କଳଙ୍କିତ ଓ କୁତ୍ସିତ ଚରିତ୍ର ନିର୍ମଳ ହୋଇଯାଏ । ଆବିଳତା ଧୋଇ ହୋଇଯାଏ ଓ ବିମଳତାର ଓଲପ ଲାଗିଯାଏ । ସେଥିପାଇଁ ସଦ୍‌ଗୁରୁ ଓ ସଦ୍‌ଶାସ୍ତ୍ର ଜୀବନକୁ ନିର୍ମାଣ କରନ୍ତି । ପାପପଙ୍କର ପ୍ରାଣୀ ପଙ୍କଜ ହୋଇପାରେ । ଜୀବନଧାରା ସମ୍ପୂର୍ଣ୍ଣ ବଦଳିଯାଏ । ସେହି କାରଣରୁ ପଠିତ ପୁସ୍ତକରୁ ପାଠକର ଚରିତ୍ରର ପରିଚୟ ମିଳିଥାଏ । ଗ୍ରନ୍ଥ, କାବ୍ୟ ହେଉ ବା କବିତା ହେଉ; ଗଦ୍ୟ ହେଉ ବା ପଦ୍ୟ ହେଉ; ଆବୃତ୍ତି ତଥା ଆଲୋଚନା ଦ୍ୱାରା ଏହା ମହିମାନ୍ୱିତ ହୋଇପଡ଼େ, ଦିବ୍ୟରୂପ ଧାରଣ କରେ । ପାଠକର କଣ୍ଠସ୍ପର୍ଶରେ ସ୍ରଷ୍ଟାଙ୍କ ସୃଷ୍ଟି ପଲ୍ଲବିତ ହୁଏ ।

ଅତଏବ ଅବସର ବିନୋଦନଠାରୁ ଆରମ୍ଭ କରି ଚିରବିନୋଦନ ପର୍ଯ୍ୟନ୍ତ ମାନବ-ଜୀବନର ବିଭିନ୍ନ ବିଭବରେ ପୁସ୍ତକ ସହାୟକ ହୋଇଥାଏ । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଶିକ୍ଷାର ଲକ୍ଷ୍ୟ ସହିତ ପୁସ୍ତକପାଠର ଲକ୍ଷ୍ୟ ସମାନ । ତେଣୁ ପୁସ୍ତକାଳୟ ଯେ କେବଳ ଜ୍ଞାନାଳୟ ତାହା ନୁହେଁ, ଏହା ମଧ୍ୟ ଶିକ୍ଷାଳୟ । ଜ୍ଞାନକୁ ପ୍ରସାର କରି ଜୀବନକୁ ସୁରୁଚି ଓ ସୁନୀତି ଦ୍ୱାରା ପ୍ରାଣବନ୍ତ ଓ ସୁଶୋଭିତ କରିବା ଦ୍ୱାରା ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଜଣେ ଜଣେ ଶିକ୍ଷକ ଓ ଗୋଟିଏ ଗୋଟିଏ ଶିକ୍ଷାଳୟର କାର୍ଯ୍ୟ ସମ୍ପାଦନ କରିଥାଏ । ଉଈଖିଆ ବହି ଖଣ୍ଡିକ, ପୃଷ୍ଠାକୁ ଛୁଇଁବା ମାତ୍ରେ ଛଖଣ୍ଡ ହୋଇ ଯାଉଛି, ମାତ୍ର ଏହା ଦୁଷ୍ପ୍ରାପ୍ୟ—ଏପରି ଅବସ୍ଥାରେ ମଧ୍ୟ ଏହା ଜୀବନକୁ ମାର୍ଜିତ ଓ ଋଦ୍ଧିମନ୍ତ କରିଚାଲିଛି । ନିରକ୍ଷର ସାକ୍ଷର ହେଉଛନ୍ତି ଓ ସାକ୍ଷରତା ଜୀବନରେ ସାମାଜିକ ବିପ୍ଳବ ସୃଷ୍ଟି କରୁଛି । ଏସବୁ ପୁସ୍ତକ କରୁନାହିଁ କି ? ସେହି ଉଦ୍ଦେଶ୍ୟରେ ସାରା ବିଶ୍ୱରେ ପାଠାଗାର ଆନ୍ଦୋଳନର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । ସାକ୍ଷରତାର ପରବର୍ତ୍ତୀ ସହାୟକ ସୋପାନ ଭବରେ ସାହିତ୍ୟର ସୃଷ୍ଟି ଓ ଭ୍ରାମ୍ୟମାଣ ପୁସ୍ତକାଗାର ଏକ ସୁପରିକଳ୍ପିତ ପନ୍ଥା ହୋଇଛି ।

କେବଳ ଆଜି ନୁହେଁ, ଯୁଗ ଯୁଗରୁ ଶିକ୍ଷାକୁ ଆତ୍ମଶିକ୍ଷା ରୂପେ ଗ୍ରହଣ କରାଯାଇଛି । ସ୍ୱାଧ୍ୟାୟ ଏକ ସୋପାନ ରୂପେ ସ୍ୱୀକୃତ ହୋଇଅଛି । ଏସବୁ ପୁଣି କେବଳ ଶିକ୍ଷାଳୟରେ ସୀମିତ ନ ହୋଇ ଜୀବନଯାପନର ପ୍ରତ୍ୟେକଟି କ୍ଷେତ୍ରକୁ ପରିବ୍ୟାପ୍ତ ହୋଇଅଛି । ସେପରି ସ୍ଥଳରେ ଗ୍ରନ୍ଥ ଓ ଗ୍ରନ୍ଥାଳୟ ସର୍ବାଧୁନିକ ଶିକ୍ଷାସାଧନରୂପେ ବିବେଚିତ ହୋଇଅଛି । ତେଣୁ ଏହା ହିଁ ଶିକ୍ଷାର ମାଧ୍ୟମ । କିନ୍ତୁ ଆମ ଶିକ୍ଷା କ୍ରମେ ପୁସ୍ତକ-ପ୍ରଧାନ ଓ ପରୀକ୍ଷା କୈନ୍ଦ୍ରିକ ହେବା ଫଳରେ ଅନେକ ପାଠକ ପୁସ୍ତକ ପ୍ରତି ବିତୃଷ୍ଣା ପ୍ରକାଶ କରୁଛନ୍ତି । ବିଦ୍ୟାର୍ଥୀମାନେ ପୁସ୍ତକ-କୀଟ ହେବା ଦ୍ୱାରା ଜ୍ଞାନ, କୌଶଳ, ମନୋଭବ ଅର୍ଜନ କରି ଆଚରଣନିଷ୍ଠ ହେଉନାହାନ୍ତି ବୋଲି ସମାଲୋଚନା କରାଯାଉଛି । ଔଷଧ ଘରରେ ତାଟିଆ କାମୁଡ଼ିବା ପରି ଆମେ ପୁସ୍ତକର ସଦୁପଯୋଗ କରି ପାରୁନାହୁଁ ଓ ମୋତି ଫିଙ୍ଗି ଆମେ ଗୁଞ୍ଜାରେ ଆଦର କରୁଛୁ । ମୋତିମୂଲ୍ୟ ଆମେ ଜାଣି ପାରୁନାହୁଁ । ମାତ୍ର କେତେଖଣ୍ଡ ପାଠ୍ୟ ପୁସ୍ତକ ସର୍ବସ୍ୱ ହୋଇ ଆମ ଶିକ୍ଷାୟତନ ଶ୍ରୀହୀନ ଓ ଶୀର୍ଣ୍ଣ ହୋଇପଡ଼ିଛି । ବିଦ୍ୟାସାଗର ନାହିଁ । ବିଦ୍ୟାଳୟ ଆଜି ବିଦ୍ୟାର ଆଳୟ ନ ହୋଇ ସେଠି ବିଦ୍ୟାର ବିଳୟ ଘଟୁଛି ।

ସୁତରାଂ ଗ୍ରନ୍ଥାଳୟ ଶିକ୍ଷାଳୟର ପରିପୂରକ ହୋଇଅଛି । ଗୁରୁଙ୍କର ଗୋଟିଏ ଉକ୍ତି ବା ଉଦାହରଣ ଶିଷ୍ୟଙ୍କ ମନରେ କୋଟିକରେ ପ୍ରତିଫଳିତ ହୁଏ । ଏଥିରେ ସ୍ୱାଧ୍ୟାୟ, ମନନ ଓ ଚିନ୍ତନ ସାହାଯ୍ୟ କରେ । ପୁସ୍ତକ-ପାଠ ଦ୍ୱାରା ଗୋଟିଏ ଚେତନା ଗୁରୁଙ୍କର ସଙ୍କେତରେ ଶତଗୁଣିତ ହୁଏ । ଶ୍ରେଣୀ କକ୍ଷର ବାଚିକ ଆଲୋଚନା ପୁସ୍ତକ ପାଠର ସହାୟତାରେ ସମର୍ଥିତ ହୁଏ ଓ ସମୃଦ୍ଧ ହୁଏ । ଗୁରୁଙ୍କର ବାଣୀ ଯେଉଁ କ୍ଷଣି ଶେଷ ହୁଏ, ତତକ୍ଷଣାତ୍ ଏହା ପୁସ୍ତକର ପୃଷ୍ଠାରେ ଅଶେଷ ଭାବରେ ପ୍ରତିଧ୍ୱନିତ ହୁଏ । ପାଠ୍ୟକ୍ରମର ଅସ୍ପଷ୍ଟ ସୂଚନାଗୁଡ଼ିକୁ ପାଠ୍ୟପୁସ୍ତକ ରଚୟିତା ସ୍ପଷ୍ଟ କରିଥାନ୍ତି । ତେଣୁ ପାଠ୍ୟପୁସ୍ତକ ଓ ଅନ୍ୟାନ୍ୟ ପୁସ୍ତକ ଶିକ୍ଷାର ଲକ୍ଷ୍ୟ ତଥା ପାଠ୍ୟକ୍ରମକୁ ରୂପାୟିତ କରିବାରେ ଅତ୍ୟାବଶ୍ୟକ ପରିପୂରକ ସାଧନ । ବାହାରର ବାଚିକ ନିର୍ଦ୍ଦେଶ ଓ ଜୀବନର ବ୍ୟବହାର ମଧ୍ୟରେ ସଂଯୋଗ ସ୍ଥାପନ କରେ ପୁସ୍ତକ । ଶିକ୍ଷାକୁ ଜୀବନବ୍ୟାପୀ କରି ଆତ୍ମୋପଲବ୍ଧିର ଲକ୍ଷ୍ୟକୁ ସାଧନ କରିବା ପାଇଁ ସ୍ୱାଧ୍ୟାୟ, ସଦ୍‌ଗୁରୁ, ସତ୍‌ଶାସ୍ତ୍ର ଓ ସ୍ୱାନୁଭୂତି ଏକାନ୍ତ ଆବଶ୍ୟକ ।

ସେତିକି ନୁହେଁ, ପୁସ୍ତକ ହିଁ ସ୍ୱୟଂଗୁରୁ । ଏହା କେବଳ କାଳି, କଲମ, କାଗଜ ଓ କନାର କଥା ନୁହେଁ । ଏହାହିଁ ବ୍ୟକ୍ତି । ଗ୍ରନ୍ଥକର୍ତ୍ତାଙ୍କ ବ୍ୟକ୍ତିତ୍ୱ ଏହାର ପ୍ରତିଟି ପୃଷ୍ଠା ଓ ବାକ୍ୟରେ ପ୍ରତିଫଳିତ । ଦୃଷ୍ଟିର ଅତୀତ ଗ୍ରନ୍ଥକାର ଆମ ଆଗରେ ଦଣ୍ଡାୟମାନ ହୁଅନ୍ତି । ଆମେ ତାଙ୍କ ସହିତ କଥୋପକଥନ କରୁଁ । ଆମେ ହସୁ, ଆମେ କାନ୍ଦୁ । ଆମେ ଆଲୋଚନା ଓ ସମାଲୋଚନା କରୁଁ । ଆମ ଜ୍ଞାନର ଦିଗ୍‌ବଳୟ ସଂପ୍ରସାରିତ ହୁଏ । ଗୁରୁ, ଗ୍ରନ୍ଥକାର, ଜ୍ଞାନଦ୍ରଷ୍ଟା ଓ ସାଧକଙ୍କ ସ୍ପର୍ଶ ଆମେ ଅନୁଭବ କରୁଁ । ଶିକ୍ଷାଳୟ ଏକ ସଦନୁଷ୍ଠାନରେ ପରିଣତ ହୁଏ । ଜ୍ଞାନ ଓ କର୍ମର ସମନ୍ୱୟ ହୁଏ । ସମ୍ପର୍କ ରସାଣିତ ହୋଇଯାଏ । ଆତ୍ମଚେତନା ଆସିଯାଏ । ଏହା ହୁଏ ଆତ୍ମଶିକ୍ଷା । H.G Wells ମତ ଦିଅନ୍ତି ଯେ ଅନ୍ତତଃ ହଜାରେ ଖଣ୍ଡ ସହଜପ୍ରାପ୍ୟ ପୁସ୍ତକ ନଥିଲେ ଏହା ବିଦ୍ୟାଳୟ ପଦବାଚ୍ୟ ନୁହେଁ । ଔଷଧ ନଥିବା ଡ଼ାକ୍ତରଖାନା ଓ ଖାଦ୍ୟ ନଥିବା ରୋଷାଇ ଘର ପରି ଏ ପ୍ରକାର ବିଦ୍ୟାଳୟ ନିରର୍ଥକ ହୋଇପଡ଼େ ।

ଏହା ସତ୍ତ୍ୱେ, ବିଭିନ୍ନ ବିଦ୍ୟାଳୟର ବାସ୍ତବତା ପ୍ରତି ଦୃଷ୍ଟି ଦେଲେ ଉର୍ଦ୍ଧ୍ୱଲିଖିତ ଆଲୋଚନା ଏକ ଆସ୍ଫାଳନ ପରି ମନେହୁଏ । ଏହା ଏକ ବଚସା ଓ ବ୍ୟର୍ଥ ପ୍ରୟାସ ପରି ଜଣାଯାଏ । ଶିକ୍ଷାଳୟ ଯେ କୌଣସି ସ୍ତରର ହେଉ ପଛକେ ସେଠି ଏକାଧିକ

"ନାହିଁ", ଯେ କୌଣସି ଆଲୋଚକକୁ ବିସ୍ମୟ ସାଗରରେ ଭସାଇ ଦିଏ, ଯଥା, ଶିକ୍ଷାଳୟ ଅଛି, ଗ୍ରନ୍ଥାଳୟ ପାଇଁ ଗୃହ ନାହିଁ; ଗୃହ ଅଛି, ଗ୍ରନ୍ଥ ପାଇଁ ଆସବାବ ପତ୍ର ନାହିଁ; ଗ୍ରନ୍ଥ ଆଲମାରୀରେ ଅଛି, ସେ ସବୁର ବ୍ୟବହାର ନାହିଁ; ଇତ୍ୟାଦି । ପ୍ରାଥମିକ ଶିକ୍ଷା ସ୍ତରରେ ପାଠାଗାର ପ୍ରାୟ ନାହିଁ କହିଲେ ଚଳେ । ବରଂ ସେ ଯୁଗର ଅବଧାନ ଏହାର ଆବଶ୍ୟକତା ଅନୁଭବ କରୁଥିଲେ, ଏ ଯୁଗର ପ୍ରଗତିଶୀଳ ପ୍ରାଥମିକ ଶିକ୍ଷକ ପାଠ ପ୍ରଣାଳୀ ଓ ପ୍ରସ୍ତୁତିର ଝଡ଼ ମଧ୍ୟରେ ଏହାକୁ ଭୁଲି ଯାଇଥିବାର ଅନୁମାନ କରଯାଏ । ଆମ ଛୋଟ ଛୋଟ ପିଲେ ବଣ ବୁଦା ଓ ପଦାରେ ବସି ବହି ପଢ଼ନ୍ତେ, ଗଛମୂଳରେ ଛବି ଦେଖନ୍ତେ ଓ ପରିବେଶ ପ୍ରତି ପ୍ରତିକ୍ରିୟା ପ୍ରକାଶ କରନ୍ତେ । ଚିତ୍ର ଚରିତ୍ର ମଧ୍ୟରେ ଜୀବନ ରଚନା କରନ୍ତେ । ସୁସ୍ଥ, ସବଳ ଓ ସାବଲୀଳ ଜାତୀୟ ଜୀବନର ଭିତ୍ତି ପଡ଼ିପାରନ୍ତା । ଠିକ୍ ସେ ପ୍ରକାର ଦୟନୀୟ ଅବସ୍ଥାରେ ମାଇନର ସ୍କୁଲଗୁଡ଼ିକ ରହିଛି । ବିଡମ୍ବନା ଏହି ଯେ ନବଗଠିତ ମାଇନର ସ୍କୁଲରେ ଗ୍ରନ୍ଥାଳୟ ନାହିଁ କହିଲେ ଚଳେ, ଅଥଚ ଅନେକ ପୁରୁଣାସ୍କୁଲରେ ଗ୍ରନ୍ଥାଳୟ ଥିଲେ ହେଁ ସେଗୁଡ଼ିକ ପ୍ରାୟ ତାଲବନ୍ଦ । ଦୁଇ, ଚାରି ଓ ସାତଶ୍ରେଣୀଆ ମାଇନର ସ୍କୁଲଗୁଡ଼ିକରେ ଜ୍ଞାନାର୍ଜନର ପଦ୍ଧତି ଶିକ୍ଷା ଦିଆଯାଇ ନିଶ୍ଚିତ ଭାବରେ ସାକ୍ଷରତା ସୁଦୃଢ଼ ହୁଅନ୍ତା ଓ ଜ୍ଞାନର ପ୍ରସାର ବିସ୍ତାରିତ ହୁଅନ୍ତା । ହିଡ଼ ମୁଣ୍ଡରେ, ନଈ ହୁଡ଼ାରେ ଓ ପାହାଡ ଉପରେ ଜ୍ଞାନର ଦିହୁଡ଼ି ଜଳନ୍ତା । ସେ ପ୍ରକାର ନୈରାଶ୍ୟର ଚିତ୍ର ଅନେକ ସ୍ଥଳରେ ହାଇସ୍କୁଲରେ ଅଙ୍କା ଯାଇଛି । ସହସ୍ର ସହସ୍ର ସଂଖ୍ୟକ ପୁସ୍ତକ ଥିବା ପୁରୁଣା ପୁରୁଣା ମୁଷ୍ଟିମେୟ ହାଇସ୍କୁଲର ଭାରପ୍ରାପ୍ତ ଗ୍ରନ୍ଥାଳୟୀ ମାସକୁ ମାତ୍ର ଦଶଟି ଟଙ୍କା ଭତ୍ତା ଏବେବି ପାଆନ୍ତି । କହିବାକୁ ଲାଜ ଓ ଶୁଣିବାକୁ ଲାଜ ଯେ ଏହି ଭତ୍ତା ଆଜକୁ ଅର୍ଦ୍ଧଶତାବ୍ଦୀ ହେବ ଚାଲିଆସୁଛି । ଶିକ୍ଷାର ଏହି ଅର୍ଦ୍ଧଶତାବ୍ଦୀର ଇତିହାସରେ, ଏହାହିଁ ଗ୍ରନ୍ଥାଳୟର ସ୍ଥାନ, ବରଂ ଏହି ଭତ୍ତା ପ୍ରତ୍ୟାହାର କରିନେଲେ ସେ ବଂଶ ଭଳ କାମ କରନ୍ତେ । ଘେରମା, ଆଖି ମଳି ମଳି କାନ୍ଦିଲା ପରି ସେହି ଗ୍ରନ୍ଥାଳୟୀ ନିଜର ପରିଚୟ ନ ଦେଇ ସ୍ମରଣ କରୁଥାନ୍ତି, Life + Worry = Library ଏ ଜୀବନ ଜଞ୍ଜାଳ । ଏବକାର ଅନେକ ହାଇସ୍କୁଲରେ ଗ୍ରନ୍ଥାଳୟ ନାହିଁ ଓ ଯେଉଁ କେତେ **ଖଣ୍ଡ ଅଛି,** ସେ ସବୁର ଆଦର ଓ ଆବଶ୍ୟକତା ନାହିଁ । ପାଠ୍ୟକ୍ରମର ମର୍ଯ୍ୟାଦା ଓ ମହତ ଆଦର୍ଶ କ୍ଷୁଣ୍ଣ ହେଉଛି । ପ୍ରତିଭା ପୋଡ଼ି ପାଉଁଶ ହେଉଛି । ଶିକ୍ଷା ଦୋଗୁଣୀ ବୋଲି ଘରିଆଡେ ନାଗରା ବାଜୁଛି । ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଅଇଁଠା ଚଟା ଚାଲିଛି । ମୂଳ ଗ୍ରନ୍ଥକୁ ଛାଡ଼ି ଦେଇ ନୋଟ ବହିରୁ ଚାଟ ମିଳୁଛି । ଆଦି ସ୍ରଷ୍ଟା ଗାଧୋଇ

ଗଲେ ଓ ତାଙ୍କ ସ୍ଥାନରେ ପ୍ରଶ୍ନୋତ୍ତରର ରଚୟିତା ଚକା ପକାଇ ବସିଗଲେ । ଚିନ୍ତା ଓ ଚେତନାରେ କି ଅଧୋଗତି ! ଆମ ଦାବୀପତ୍ର ସବୁ ଏକବାରେ ନୀରବ । ଶିକ୍ଷାରେ ତ ପଇସା ଖର୍ଚ୍ଚ ହେଉଛି । ରିପୋର୍ଟ ଲେଖାଯାଉଛି । ଦାନାକନା ପାଇଁ ବ୍ୟବସ୍ଥା ହେଉଛି । ମନର ଭୋକ ମରୁନାହିଁ । ମାନସିକ ଦାରିଦ୍ର୍ୟ ମାରାତ୍ମକ । ଅଭିଧାନ, ଜ୍ଞାନକୋଷ, ଏନସାଇକ୍ଲୋପିଡ଼ିଆ, ବିଶ୍ୱକୋଷ ଆଦିର ନାମ ଶୁଣିବା ଓ ଘୋଷିପକାଇବା । କିନ୍ତୁ ଦେଖିବା ନାହିଁ ଓ କାମରେ ଲଗାଇବା ନାହିଁ । ଆମ ସଂସ୍କୃତିର ଗନ୍ତାଘର ତାଲା ପଡ଼ି ନିବୁଜ ହୋଇଛି । ମାଛିମଶା ବି ପଶିବାର ଜୋ ନାହିଁ । ବେଦ, ବେଦାନ୍ତ, ଗୀତା, ବାଇବେଲ, କୋରାନ, ଗ୍ରନ୍ଥସାହେବ ଆଦିର ନାମ ଶୁଣାଇ ଦିଆଯାଉଛି ଓ ଶୁଣିବା ମାତ୍ରେ ମୁଣ୍ଡିଆ ମାରିବାକୁ କୁହାଯାଇଛି, କାରଣ ଏସବୁ ଆମ ବିଶାଳ ଦେଶର ଭାବଗତ ଏକାତ୍ମତାର ଉତ୍ସ । କିନ୍ତୁ କାହିଁ, ଏସବୁ କେଉଁଠି ? ଆମେତ ଦେଖିନାହୁଁ, ଆମ ଗୁରୁ, ଗୁରୁଙ୍କ ଗୁରୁ ଏସବୁ ଦେଖିଛନ୍ତି କି ? ପଢିଛନ୍ତି କି ? ଜଣେ ଇଂରେଜ କବି କହନ୍ତି:

My never failing friends are they.
With whom I converse day by day.

ବହିର ବି ଅଭାବ ନାହିଁ । ଆଶାନୁରୂପ ନ ହେଉ ପଛକେ, ଆମ ପାଠକ ପାଇଁ କିଛି କିଛି ଅଛି । ଅଧିକ ଉତ୍ପାଦନ ପାଇଁ ଉଦ୍ୟମ ଚାଲିଛି । ଗ୍ରନ୍ଥର ଗହନ ବଣରେ ବାଉଳା ହେବାର ନୁହେଁ । ସେଥିପାଇଁ କୁହାଯାଏ,କେତେକ ବହିକୁ ଚାଖିବ,କେତେକକୁ ଗିଳିଦେବ ଓ କେତେକକୁ ଚୋବାଇବ ଏବଂ ଜୀର୍ଣ୍ଣ କରିବ । ପରହସ୍ତଗତ ଧନ ପରି ପୁସ୍ତକଗତ ଜ୍ଞାନ । ଆମର ଆଜି ଏହି ରୋଗ । ଗ୍ରନ୍ଥାଳୟର ଆନ୍ଦୋଳନ ଶିକ୍ଷାଳୟରେ ହେଉ--ଏଥିପାଇଁ ଅଣ୍ଟାଭିଡ଼ି ଲଢିବା । ଏଦିଗରେ ଆମ ଚିରଚଳିତ ଉଦାସୀନତା ଆମ ଚେର କାଟୁଛି । ବହି ପଢିବା ପାଇଁ ପିଲାଙ୍କୁ ପଢ଼ାଇବା । ସେମାନଙ୍କ ମନ ଲଗାଇଦେବା । ପାଠ୍ୟପୁସ୍ତକର ସହାୟକ ଓ ପରିପୂରକ ପୁସ୍ତକର ଚିଠା ନିର୍ଦ୍ଦିଷ୍ଟ କରି ପିଲାଙ୍କ ଦୃଷ୍ଟିକୁ ଆଣିବା । ଆମେ ବି ବହି ପଢିବା । ହାତରେ ବହି ଆମକୁ ଶିକ୍ଷାର୍ଥୀ ଓ ଶିକ୍ଷକ ଭାବରେ ପରିଚିତ କରାଇବ । ଆମେ ବିପୁଳ ଜ୍ଞାନର ଅଧିକାରୀ ହେବା । ବିଦ୍ୟା ହେଉଛି ଧନର ଧନ, ମହାଧନ ।

ଟଙ୍କା, ପଇସାର ଧନକୁ ସିନ୍ଦୁକରେ ସାଇତି ରଖାଯାଏ । ଧନ, ରତ୍ନ, ଆୟ, ଅଳଙ୍କାରକୁ ଲୁଚାଇ ଛପାଇ ରଖିବାକୁ ପଡ଼ିଥାଏ । ହିସାବକିତାବ ବରାବର କରାଯାଏ । କିନ୍ତୁ ବିଦ୍ୟାଧନ ଆମକୁ ରକ୍ଷାକରେ । ଘରେ, ବାହାରେ ଓ ଦେଶବିଦେଶରେ ଆମ ମର୍ଯ୍ୟାଦା ଏହାଦ୍ୱାରା ବଢ଼େ । ଗ୍ରନ୍ଥାଳୟ ହେଉଛି ଜ୍ଞାନର ଭଣ୍ଡାର । ଗ୍ରନ୍ଥଗଡ଼ିକୁ ସାଇତି ରଖିବା, ଉଇ, ମୂଷା, କୀଟ, ପୋକ ଦାଉରୁ ବଂଚାଇ ରଖିବା । ଚୂଟିଆ ମୂଷାକୁ ସମ୍ଭାଳିହେବ । ପୋକମରା ଔଷଧ ମିଳିଲାଣି । ମନୁଷ୍ୟ—ମୂଷା ପାଇଁ ଔଷଧ ନାହିଁ । ସେ ତା' ବଂଶବିସ୍ତାର କରି ଚାଲିଛି । ଏହା ଆମ ଜାତୀୟ ଧନ । ଏହା ବୁଝିଗଲେ ଓ ସଚେତନ ହେଲେ ଗ୍ରନ୍ଥାଳୟର ବିପତ୍ତି ହଟିଯିବ । ଗ୍ରନ୍ଥାଳୟ ସବୁ ଯୁଗର ସମସ୍ତଙ୍କ ଗର୍ବ, ଗୌରବ ଓ ଜ୍ଞାନର ଉତ୍ସ ।

•

—୪୦୪—

# ମାନବିକ ସମ୍ବଳର ବିକାଶ

•

ଦେଶର ସମ୍ବଳ ଦୁଇ ଭାଗରେ ବିଭକ୍ତ, ମାନବିକ ଓ ପ୍ରାକୃତିକ । ଏହାକୁ ଧନବଳ ବୋଲି କୁହାଯାଇ ପାରେ । ଜନବଳ ବସ୍ତୁତଃ ମନବଳ, ଚରିତ୍ରବଳ ଆଦିରେ ପ୍ରତିଫଳିତ ହୁଏ । ପ୍ରାକୃତିକ ପୁଞ୍ଜିର ବିନିଯୋଗ ଦ୍ବାରା ଦ୍ରବ୍ୟସମ୍ଭାର ଓ ଧନବଳର ସୃଷ୍ଟି ହୁଏ । ବିକାଶର ଯୋଜନା ପ୍ରଣୟନ କାଳରେ ସାଧାରଣତଃ ପ୍ରାକୃତିକ ସମ୍ବଳ ପ୍ରତି ଅଧିକ ଦୃଷ୍ଟି ଦିଆଯାଇଥାଏ । ବିଶ୍ୱାସ କରାଯାଏ ଯେ ଧନବଳର ବୃଦ୍ଧି ଘଟିଲେ ଏହା ଜନବଳର ଅଭିବୃଦ୍ଧି ପାଇଁ ସହାୟକ ହେବ । ଅନ୍ନ, ବସ୍ତ୍ର, ବାସଗୃହ ଆଦି ଅତ୍ୟାବଶ୍ୟକ ସର୍ବନିମ୍ନ ଆବଶ୍ୟକତା ଯଦି ପୂରଣ ହୋଇ ନ ପାରେ ତେବେ . ଜନଜୀବନର କୌଶଳ, ମନୋଭାବ, ନିଷ୍ଠା ଆଦି ସଦ୍‌ଗୁଣର ବିକାଶ ପାଇଁ ବ୍ୟୟବରାଦ କାହିଁକି କରାଯିବ ? ପକ୍ଷାନ୍ତରରେ ମଧ୍ୟ ବିଶ୍ୱାସ କରାଯାଏ ଯେ ଜନଜୀବନ ଉନ୍ନତ, ମାର୍ଜିତ ଓ ପଟୁ ହେଲେ ସମୃଦ୍ଧି ସାଧନ ତଦ୍ଦ୍ୱାରା ସମ୍ଭବ ହେବ । ପ୍ରାକୃତିକ ସମ୍ପଦର ସଦୁପଯୋଗ ଓ ବିନିଯୋଗ ଅନ୍ୟଥା ସମ୍ଭବ ହୋଇପାରେ କି ? ପ୍ରକୃତପକ୍ଷେ ଏଠାରେ ଗୋଟିକୁ ବାଦ୍ ଦେଇ ଅନ୍ୟଟିର ବିଚାର କରାଯାଇ ନପାରେ । ଉଭୟ ପରିପୂରକ । ଉଭୟର ସମନ୍ୱିତ ଅଭିବୃଦ୍ଧି ହିଁ ବିକାଶ ଚିନ୍ତାରେ କୁହୁକ ଓ କଷଟି ପଥର ଅଟେ ।

ଶିକ୍ଷା, ସ୍ୱାସ୍ଥ୍ୟ ଆଦି ସମାଜସେବା ଦ୍ୱାରା ମାନବିକ ବିକାଶର ଅଭିବୃଦ୍ଧି ମୁଖ୍ୟତଃ ସାଧିତ ହୋଇଥାଏ । ଅର୍ଥନୈତିକ ବିକାଶ ଦ୍ୱାରା ଆର୍ଥିକ ପ୍ରଗତିର ବେଗ ବୃଦ୍ଧି ପ୍ରାପ୍ତ ହୁଏ । ତଦ୍ଦ୍ୱାରା ଅଧିକ ସମ୍ବଳ ମିଳିବା ଦ୍ୱାରା ସମାଜସେବାମୂଳକ ଯୋଜନାଗୁଡ଼ିକର ସଫଳ ରୂପାୟନ ସମ୍ଭବ ହୁଏ । ଏହି ଦୃଷ୍ଟିରୁ ପ୍ରଖ୍ୟାତ ଅର୍ଥଶାସ୍ତ୍ରୀ Arthur Lewis ବିକାଶ ଯୋଜନା ଉପରେ ଗୁରୁତ୍ୱ ଆରୋପ କରନ୍ତି । ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ଦିଗ ଗୁଡ଼ିକ ବିକାଶର ଅନ୍ତର୍ଭୁକ୍ତ ହୁଏ । ସମ୍ବଳର ସ୍ୱଳ୍ପତା, ସମ୍ବଳ ସଦୁପଯୋଗର ବିଭିନ୍ନ ପନ୍ଥା, ବହୁବିଧ ଆଭିମୁଖ୍ୟ– ଏସବୁ ହେତୁରୁ ଯୋଜନା ସହିତ ଅର୍ଥନୀତିର ସମ୍ପର୍କ ବୃଦ୍ଧି ପାଇଅଛି । ସାମାଜିକ ଓ ଅର୍ଥନୈତିକ ବିକାଶ ପାଇଁ ଯୋଜନାର ଅବିଭାଜ୍ୟ ଅଙ୍ଗ ରୂପେ ଶିକ୍ଷାଯୋଜନା ସ୍ୱୀକୃତି ଲାଭ କରିଅଛି ।

ଏହା ଫଳରେ ଶିକ୍ଷାର ଅର୍ଥନୀତି ରୂପେ ଅଧ୍ୟୟନର ଏକ ନୂତନ ଦିଗ କ୍ରମେ ନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କରିଅଛି । ଆର୍ଥନୀତିକ ବିଶ୍ଳେଷଣର ପଦ୍ଧତି ଅଧିକରୁ ଅଧିକ ପ୍ରୟୋଗ କରାଯାଉଛି । ବିଭିନ୍ନ ପଦ୍ଧତିକୁ ଅବଲମ୍ବନ କରି ଜାତୀୟ ଆୟ ବୃଦ୍ଧିରେ ଶିକ୍ଷାର ଦାନର ପରିମାଣାତ୍ମକ ନିର୍ଣ୍ଣୟ କରାଯାଉଅଛି, ସମଗ୍ର ଶିକ୍ଷାପଦ୍ଧତି ତଥା ଏହାର ବିଭିନ୍ନ ଅଂଶ ଓ ସ୍ତରର Cost-Benefit ବିଶ୍ଳେଷଣ କରାଯାଇଅଛି । ଲୋକବଳର ଆବଶ୍ୟକତାକୁ ନିରୂପଣ କରିବା ପାଇଁ ସ୍ୱଳ୍ପମିଆଦୀ ଓ ଦୀର୍ଘମିଆଦୀ ପ୍ରକଳ୍ପ ହାତକୁ ନିଆଯାଉଅଛି । ଉଚ୍ଚକୋଟୀର ମାନବିକ ସମ୍ବଳର ବିକାଶ ତଥା ସଦୁପଯୋଗ ପାଇଁ ପୁରସ୍କାର ଓ ପ୍ରେରଣା ପଦ୍ଧତିର ଅନୁଧ୍ୟାନ କରାଯାଉଛି । ବିଭିନ୍ନ ସ୍ତରରେ ଶିକ୍ଷାନୀତି ଓ ଯୋଜନାକୁ କାର୍ଯ୍ୟକାରୀ କରିବା ବ୍ୟବସ୍ଥା ଓ ସମ୍ବଳର ସଂଗଠନ ବିଷୟରେ ଚିନ୍ତା କରାଯାଉଛି । ଏହି ପ୍ରସଙ୍ଗରେ ଶିକ୍ଷାଖର୍ଚ୍ଚ ପରିମାଣକୁ ବିଶ୍ଳେଷଣ କରି ନିମ୍ନ କେତୋଟି ପ୍ରଶ୍ନର ଯଥାର୍ଥ ଉତ୍ତର ପାଇବାକୁ ଚେଷ୍ଟା କରାଯାଇପାରେ – (୧) ଆର୍ଥିକ ଅଭିବୃଦ୍ଧି କୌଣସି ଲକ୍ଷ୍ୟକୁ ହାସଲ କରିବା ପାଇଁ ଅନ୍ୟ ବିଭାଗ ତୁଳନାରେ ଶିକ୍ଷାପାଇଁ କେତେ ବ୍ୟୟ ବରାଦ କରାଯିବ ? (୨) ଶିକ୍ଷା ପାଇଁ ମିଳୁଥିବା ସମ୍ବଳକୁ ଏହାର ବିଭିନ୍ନ ଅଂଶ ଓ ବିଭାଗ ମଧ୍ୟରେ କିପରି ବଣ୍ଟାଯାଇ ପାରିବ ? (୩) ଶିକ୍ଷାର ଖର୍ଚ୍ଚକୁ ତୁଲାଇବା ପାଇଁ କେଉଁ କେଉଁ ସୂତ୍ରରୁ ସମ୍ବଳ ସଂଗ୍ରହ କରାଯାଇ ପାରିବ ? (୪) ଶିକ୍ଷା–ଖର୍ଚ୍ଚର ଫଳ ଏହାର ବିଭିନ୍ନ ସ୍ତର ଉପରେ କିପରି ପଡ଼ିଛି ? ଇତ୍ୟାଦି ।

ଏକଥା ସତ୍ୟ ଯେ ଅର୍ଥନୀତିକ ବିକାଶ ପାଇଁ ପୁଞ୍ଜିଲଗାଣ ବା ପୁଞ୍ଜି ସୃଷ୍ଟି ଏକ ମୁଖ୍ୟ ବିଚାର ଅଟେ । ଯେ କୌଣସି ସମାଜରେ ଲୋକମାନଙ୍କୁ ସ୍ଥିର କରିବାକୁ ପଡ଼େ, ବର୍ତ୍ତମାନର ଉପଭୋଗ ପାଇଁ କେତେ ବ୍ୟୟ କରାଯିବ ଓ କେତେ ପୁଞ୍ଜି–ଲଗାଣ କରାଯିବ, ଫଳରେ ଭବିଷ୍ୟତରେ ଉପଭୋଗ ପାଇଁ ସୁବିଧା ମିଳିବ । ଶିକ୍ଷା ବହୁକାଳରୁ ଏକ ସେବା କାର୍ଯ୍ୟକ୍ରମ ବା ଉପଭୋଗର ବସ୍ତୁ ଭାବରେ ଗ୍ରହଣ କରାଯାଇଛି । ଶିକ୍ଷାନୁଷ୍ଠାନ ଆଦି ସୃଷ୍ଟି କରାଯାଇଛି । ଲୋକମାନେ ଏହାକୁ ଆବଶ୍ୟକ କରିଛନ୍ତି । ଲୋକମାନଙ୍କ ମନ ଉନ୍ନତ ହୋଇଛି । ବ୍ୟକ୍ତିତ୍ୱର ବିକାଶ ସାଧିତ ହୋଇଛି । ସାମାଜିକ ଚରିତ୍ର ଗଠନ କରାଯାଇଛି । ଲୁଣ, ଲୁଗା ପରି ଶିକ୍ଷା ଏକ ଉପଭୋଗର ବସ୍ତୁ । ଏ ସବୁ ସରିଯାଏ । କିନ୍ତୁ ଶିକ୍ଷା ସରେ ନାହିଁ । ସୁତରାଂ ଶିକ୍ଷା ଏକ ସ୍ଥାୟୀବସ୍ତୁ ଭାବରେ ପରିଗଣିତ ହୁଏ । ଏହାଛଡା ଶିକ୍ଷା ମଧ୍ୟ ଏକ ପୁଞ୍ଜି ଲଗାଣ । ଏହାଦ୍ୱାରା ମାନବିକ ସମ୍ବଳର ସୃଷ୍ଟି ହୁଏ ।

ଶିକ୍ଷା ପାଇବା ପରେ କୌଶଳ, ମନୋଭାବ, ପ୍ରେରଣା ଆଦି ଆସେ । ଧନ ଉତ୍ପାଦନ କରିବାର ଦକ୍ଷତା ମନୁଷ୍ୟ ଅର୍ଜନ କରେ । ଟଙ୍କା କଉଡ଼ି ପାଇବାର କ୍ଷମତା ହୁଏ । କଳକାରଖାନାରୁ ଉତ୍ପାଦନ କରିବା ପାଇଁ ଯେତେ ସମୟ ଲାଗେ, ଶିକ୍ଷା ପାଇଁ ମନୁଷ୍ୟ ରୋଜଗାରକ୍ଷମ ହେବାକୁ ଅଧିକ ସମୟ ନିଏ । ଶିକ୍ଷା ହେଉଛି ଏକ ଦୀର୍ଘ ମିଆଦୀ ପୁଞ୍ଜି ଲଗାଣ ।

ଏହି ବିଷୟରେ ସ୍ଥୂଳ ଧାରଣା ଦେବା ପାଇଁ କେତୋଟି ପ୍ରବନ୍ଧ ଓଡ଼ିଆରେ ଲେଖାଯାଇଛି । ତନ୍ମଧ୍ୟରେ ଶିକ୍ଷାର ଅର୍ଥନୀତି (ଝଙ୍କାର, ଷଷ୍ଠଖଣ୍ଡ, ୧୯ଶ ବର୍ଷ, ସେପ୍ଟେମ୍ବର, ୧୯୬୭), ଅର୍ଥନୀତି ବିକାଶରେ ଶିକ୍ଷାର ଭୂମିକା (ଝଙ୍କାର, ନବମଖଣ୍ଡ, ୧୯ଶ ବର୍ଷ, ଜାନୁଆରୀ, ୧୯୬୮), ମାନବିକ ବିକାଶ ପାଇଁ ଯୋଜନା (କଳିଙ୍ଗ, ତା ୧୫।୮।୧୯୬୨) ଆଦି ଦ୍ରଷ୍ଟବ୍ୟ । ପ୍ରଥମୋକ୍ତ ପ୍ରବନ୍ଧ ଦୁଇଟି ଶିକ୍ଷାର ଧାରା (ମୟୂର ପବ୍ଲିକେସନ୍ସ,ଭୁବନେଶ୍ୱର,୧୯୮୦) ପୁସ୍ତକରେ ପ୍ରକାଶ କରାଯାଇଛି । ଇଂଲଣ୍ଡ,ଆମେରିକା, ରୁଷ ପ୍ରଭୃତି ପାଶ୍ଚାତ୍ୟ ଦେଶର ଅର୍ଥନୀତି ବିଶାରଦମାନେ ଏ ବିଷୟରେ ଗବେଷଣା ବହୁଭାବରେ କରୁଛନ୍ତି । ଭାରତୀୟ ଅର୍ଥନୀତି ଶାସ୍ତ୍ରଜ୍ଞ ପଣ୍ଡିତମାନେ ଭାରତରେ ଏହି ବିଚାରର ଧାରା ଅବ୍ୟାହତ ରଖିଛନ୍ତି । ଶିକ୍ଷାର "ଉପଭୋଗଫଳ" ଓ "ପୁଞ୍ଜିଲଗାଣ" ଏହି ଉଭୟ ଦିଗ ଅଧିକରୁ ଅଧିକ ସ୍ୱୀକୃତି ଲାଭ କରୁଛି ଓ ଏହି ଉଭୟ ଦିଗ ଯେ ପରସ୍ପର ପରିପୂରକ ଏହା ମଧ୍ୟ ସେମାନଙ୍କ ଚିନ୍ତାରେ ମୁଖ୍ୟସ୍ଥାନ ପାଇଅଛି ।

Education As Investment ( edited by Baljit Singh, Meenakshi Prakashan, Calcutta, 1967, ) ଶୀର୍ଷକ ପୁସ୍ତକରେ ଭାରତର ବିଶିଷ୍ଟ ଅର୍ଥନୀତିଜ୍ଞ Dr. V. K. R. V. Rao ଭାରତୀୟ ଶିକ୍ଷାପଦ୍ଧତିର ଓ ସେ ସମ୍ପର୍କରେ ଅର୍ଥଲଗାଣର ଏକ ସୁବିସ୍ତୃତ ସମାଲୋଚନା କରିଛନ୍ତି । ରୋଜଗାର ଦୃଷ୍ଟିରୁ ଶିକ୍ଷିତ ଓ ଅଶିକ୍ଷିତ ଲୋକଙ୍କ ମଧ୍ୟରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହେଉ ନଥିବାରୁ ସେ ଶିକ୍ଷା ପଦ୍ଧତିର ସଂସ୍କାର ପାଇଁ ଦାବୀ କରିଛନ୍ତି । ଶିକ୍ଷାର ବିଷୟବସ୍ତୁ ଓ ପରିଚାଳନାରେ ଏପରି ପରିବର୍ତ୍ତନ କରାଯିବ ଯଦ୍ୱାରା ଏଥିରେ ନିଜ କାମ କଲାଭଳି ଦୃଷ୍ଟିକୋଣ Own-kind of work bias) ରହିବ । ଆତ୍ମନିଯୁକ୍ତି ଓ ଅଭିକ୍ରମ ସୃଷ୍ଟି ପାଇଁ ପରିବେଶ ଦିଆଯିବ । କର୍ମଭିତ୍ତିକ ଶିକ୍ଷା ପାଇଁ ବ୍ୟବସ୍ଥା କରାଯିବ । ସାହସିକତା, ବିପଦର ସମ୍ମୁଖୀନ ହେବା ଶକ୍ତି, କଳା, କଳ୍ପନା ଆଦି ସ୍ୱାବଲମ୍ବୀ ହେବାର ମନୋଭାବ ପ୍ରତି ଦୃଷ୍ଟି ଦିଆଯିବ । ପ୍ରଣାଳୀ ଦୃଷ୍ଟିରୁ ଡ଼ଃ ରାଓ ମଧ୍ୟ ଆଲୋଚନା କରିଛନ୍ତି ଯେ

ଯେଉଁ ଶିକ୍ଷାର୍ଥୀ କେବଳ ଶୁଣୁଛନ୍ତି ଓ ଯେ ପ୍ରଶ୍ନ କରି ଦାୟିତ୍ୱ ବହନ କରୁଛନ୍ତି– ଏହି ଉଭୟ ଶିକ୍ଷାର୍ଥୀଙ୍କ ମଧ୍ୟରେ ଘୋର ପାର୍ଥକ୍ୟ ରହିଛି । ସକ୍ରିୟ ସହଯୋଗ ଓ ଗ୍ରହଣ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଅଛି । ସକ୍ରିୟ ସହଯୋଗ ଓ ପ୍ରାଶ୍ନିକତା–ଏହି ଉଭୟ ଗୁଣ ଉତ୍ପାଦନଶୀଳତାର ସହାୟକ । ଏହି ଦୁଇ ଦୃଷ୍ଟିରୁ ଶିକ୍ଷାର ପୁନର୍ଗଠନ ପାଇଁ ସେ ଯୁକ୍ତି କରିଛନ୍ତି । ଆର୍ଥନୀତିକ ବିକାଶ ଦୃଷ୍ଟିରୁ ଶିକ୍ଷାରେ ପୁଞ୍ଜିଲଗାଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ସେ ଅଧିକ ଅର୍ଥଲଗାଣ ପାଇଁ ଦୃଢ଼ ମତ ବ୍ୟକ୍ତ କରିଛନ୍ତି । ତାଙ୍କ ଦୃଷ୍ଟିରେ ଶସ୍ତା ଶିକ୍ଷା ଓ ନିସ୍ଫଳ ଶିକ୍ଷା, ଅ-ଶିକ୍ଷା ଅପେକ୍ଷା ଅଧିକ ଖରାପ– ଯେତେଶୀଘ୍ର ଆମେ ଏହାକୁ ହୃଦୟଙ୍ଗମ କରିବା, ଶିକ୍ଷା ଯେ ମାନବିକ ସମ୍ବଳ ବିକାଶର ପ୍ରକ୍ରିୟା ଏହା ସେତେଶୀଘ୍ର ଉପଲବ୍ଧି କରିପାରିବା । ଏହି ପରିପ୍ରେକ୍ଷୀରେ Education and Economic Development(V.K R.V.Raoଙ୍କ ସର୍ଦ୍ଦାର ପାନିକାର ସ୍ମାରକୀ ବକ୍ତୃତା, ୧୯୬୪, R.C.E, Mysore, NCERT ଦ୍ରଷ୍ଟବ୍ୟ ।

•

ବସ୍ତୁତଃ ସମାଜର ସମୂହ ରୂପାନ୍ତରୀକରଣ ସହିତ ଅର୍ଥନୈତିକ ଅଭିବୃଦ୍ଧି ଅବିଚ୍ଛିନ୍ନ ଭାବରେ ସମ୍ପୃକ୍ତ ଓ ସେ ଦୃଷ୍ଟିରୁ ଶିକ୍ଷାର ନୀତି ଓ ଯୋଜନା, ବିକାଶ–ଯୋଜନା ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହେବା ଉଚିତ । ଏହାକୁ ଆଖି ଆଗରେ ରଖି ଆମ ସ୍ଥିତି, ଅର୍ଥାତ୍ ଶିକ୍ଷାପାଇଁ ବ୍ୟୟବରାଦ ଆଦିର ସ୍ଥୂଳ ଆଭାସ ଦେବା ।

ଟେବ୍‌ଲ ( ୧ )

## ଜାତୀୟ ସ୍ତରରେ ଶିକ୍ଷାଖର୍ଚ୍ଚ

| | 1973-74 | 1974-75 | 1975 76 | 1976-77 |
|---|---|---|---|---|
| 1. Budgeted Expenditure (Rupees in thousand) | 13,10 13, | 15,70,56, 40 (19.9) | 15,83,61, 43 (0.8) | 18,21,24 94 (15) |
| 2. Per Capita Budgeted expenditure (Rupees) | 23.0 | 27.0 | 26.7 | 30.1 |
| 3. Percentage of Budgeted expenditure to the total national budget. | 22.7 | 26.3 | 22.9 | 22.7 |

ଟେବୁଲ (୨)

## ଓଡ଼ିଶାରେ ଶିକ୍ଷା ଖର୍ଚ୍ଚ

| | | 1973-74 | 1974-75 | 1975-76 | 1976-77 | 1977-78 |
|---|---|---|---|---|---|---|
| 1. | Expenditure on general education (Rupees in thousand) | 237492 | 457359(35.5) | 574890(25.7) | 616502 (7.2) | 714629 (15) |
| 2. | Per capita Expenditure (Rupees) | 14.3 | 18.9 | 23.3 | 24.4 | 27.7 |
| 3. | Percentage of expenditure to the total State budget. | 9.8 | 12.0 | 12.4 | 10.9 | 10.5 |
| 4 | Percentage of expenditure on salaries for Primary Education to the total expenditure on Primary Education. | 99.8 | 98.1 | 99.5 | 99.6 | 99.8 |
| 5. | Percentage of expenditure on salaries for Secondary Education to the total expenditure on Secondary Education. | 91.1 | 91.1 | 92.1 | 89.5 | 91.3 |
| 6. | Percentage of Expenditure on salaries for Higher Education (general) to the total expenditure on Higher Education. | 68.0 | 87.3 | 89.6 | 86.0 | 90.2 |

(Figures within brackets against item (1) in tables (1) & (2) represent percentage of increase over the preceding year)

ଉଲ୍ଲିଖିତ ଟେବୁଲ୍‌ଦ୍ୱୟରେ ଶିକ୍ଷାର ମୋଟ ଖର୍ଚ୍ଚ ତୁଳନୀୟ ନୁହେଁ, କାରଣ ରାଜ୍ୟର ଶିକ୍ଷା-ଖର୍ଚ୍ଚ କେତେକାଂଶରେ ଜାତୀୟ ସ୍ତରରେ ପ୍ରତିଫଳିତ ହୋଇଅଛି । କିନ୍ତୁ ଉଭୟ ସ୍ଥଳରେ ବର୍ଷକୁ ବର୍ଷ ଖର୍ଚ୍ଚ ପରିମାଣର ବୃଦ୍ଧିର ହାର ପ୍ରତି ଧ୍ୟାନ ଦିଆଯାଇପାରେ । ଶତକଡ଼ା ହାର ଆମ ରାଜ୍ୟରେ ଅଧିକ । ଉଭୟ ସ୍ତରରେ ଏଥିରେ କୌଣସି ନିୟମିତ ଧାରା ଦେଖିବାକୁ ମିଳେ ନାହିଁ । ଏକ ସୁସ୍ଥ ପରିବେଶରେ ଏହି ଧାରା କ୍ରମେ ବୃଦ୍ଧି ପାଇବା ଉଚିତ । ବ୍ରାକେଟ ମଧ୍ୟସ୍ଥ ପରିସଂଖ୍ୟାନରୁ ସେପରି ଧାରା ପରିଲକ୍ଷିତ ହେଉନାହିଁ । ଲୋକମାନଙ୍କ ଚାହିଦା କ୍ରମେ ବୃଦ୍ଧି ପାଉଛି । ଅଧିକ ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାୟତନର ଆବଶ୍ୟକତା ବଢ଼ିବା ସ୍ୱାଭାବିକ । ପାଠ୍ୟକ୍ରମ, ପ୍ରଣାଳୀ, ମୂଲ୍ୟାୟନ, ପ୍ରଶାସନ ଆଦି ବିଭାଗରେ ପରିବର୍ତ୍ତନ କରିବା ଉଚିତ । ଫଳରେ ପୂର୍ବବର୍ତ୍ତୀ ବର୍ଷର ବ୍ୟୟବରାଦ ତୁଳନାରେ ଶିକ୍ଷା ଖର୍ଚ୍ଚ ନିଶ୍ଚିତ ଭାବରେ ବୃଦ୍ଧି ପାଇବା ଉଚିତ । କେବଳ ସେତିକି ନୁହେଁ, ବ୍ରାକେଟ୍ ମଧ୍ୟସ୍ଥ ବୃଦ୍ଧିର ଶତକଡ଼ାହାର ମଧ୍ୟ ବଢ଼ିବା ଦରକାର । ଶିକ୍ଷା ଯେ ଏକ ଯୋଜନାବଦ୍ଧ ବିକାଶର ପ୍ରକ୍ରିୟା—ଏହାର ସ୍ପଷ୍ଟ ସୂଚନା ମିଳନ୍ତା ।

ଦ୍ୱିତୀୟ ଧାଡ଼ିରେ ମୁଣ୍ଡପିଛା ଶିକ୍ଷାଖର୍ଚ୍ଚର ହିସାବ ଦିଆଯାଇଛି । ଏହା ଜାତୀୟସ୍ତର ସହିତ ଅନୁରୂପ ହେବା ଉଚିତ । ପ୍ରତ୍ୟେକ ବର୍ଷର ମୁଣ୍ଡପିଛା ବ୍ୟୟ ତତ୍ତୁଲ୍ୟ ବର୍ଷର ଜାତୀୟ ବ୍ୟୟଠାରୁ କମ୍ । ଚାରିବର୍ଷ ମଧ୍ୟରେ ହାରାହାରି ମୁଣ୍ଡପିଛା ଖର୍ଚ୍ଚ ବର୍ଷକୁ ଜାତୀୟ ସ୍ତରରେ ୨୬.୭ ଟଙ୍କା ହେବା ସ୍ଥଳେ ଆମ ରାଜ୍ୟରେ ପାଞ୍ଚବର୍ଷ ମଧ୍ୟରେ ଏହା ଟ ୨୧.୬ଙ୍କା ଅଟେ । ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରିବାରେ ଆମେ ସମର୍ଥ ହୋଇପାରି ନାହୁଁ । ଏହାକୁ ଏକ ସାମାଜିକ ସେବା ଭାବରେ ବିଚାର କରି ଯାହା ମିଳିଛି ସେତିକିରେ ସନ୍ତୁଷ୍ଟ ହୋଇରହୁଛୁଁ । କିନ୍ତୁ ଶିକ୍ଷା ମଧ୍ୟ ମାନବିକ ପୁଞ୍ଜି ସୃଷ୍ଟିରେ ଏକ ଗୁରୁତ୍ୱପୂର୍ଣ୍ଣ ଲଗାଣ, ଏହା କରିପାରି ନାହୁଁ ଓ ତଦନୁସାରେ ଯୋଜନା ପ୍ରସ୍ତୁତ କରାଯାଉନାହିଁ ।

ତୃତୀୟ ଧାଡ଼ିର ହିସାବର ଗତିରୁ ତାହାହିଁ ପ୍ରମାଣିତ ହୁଏ । ଜାତୀୟ ଓ ରାଜ୍ୟ ବଜେଟର ଶିକ୍ଷାଖର୍ଚ୍ଚ ଯେ ଶତକଡ଼ା କେତେ ଏହି ହିସାବରେ ଦିଆଯାଇଛି । ଏଥିରେ ମଧ୍ୟ, ଆମେ ଜାତୀୟମାନ ରକ୍ଷା କରିପାରି ନାହୁଁ । ଆମ ରାଜ୍ୟରେ ପ୍ରତ୍ୟେକ ବର୍ଷର ଶତକଡ଼ା ହିସାବ ତତ୍ତୁଲ୍ୟ ବର୍ଷର ହିସାବର ଅଧାରୁ କମ୍ । ଅର୍ଥାତ୍ ଜାତୀୟ ସ୍ତରରେ

ଯେଉଁ ପ୍ରାଧାନ୍ୟ ଦିଆ ଯାଇଛି ତାହା ରାଜ୍ୟରେ ଅଧାରୁ କମିଛି । ଅବଶ୍ୟ ଏହି ସ୍ଥଳରେ ଅନ୍ୟାନ୍ୟ ବିଭାଗର ଶତକଡା ଖର୍ଚ୍ଚ ସହିତ ଶିକ୍ଷାର ଖର୍ଚ୍ଚକୁ ତୁଳନା କରାଯାଇ ପାରେ । ଯାହାହେଉ, ଅନ୍ୟାନ୍ୟ ରାଜ୍ୟ ସହିତ ତୁଳନା କରିବା ପାଇଁ ନିମ୍ନସୂଚିତ ଟେବ୍‌ଲ (୩) ଦ୍ରଷ୍ଟବ୍ୟ ।

ଟେବ୍‌ଲ (୩)

**ମୁଣ୍ଡପିଛା ଖର୍ଚ୍ଚ ଓ ସମସ୍ତ ବଜେଟର ଶତକଡା ଭାଗର ଆନ୍ତଃରାଜ୍ୟ ତୁଳନା**

| | Percapita in Rupees | | Percentage of Expenditure | | |
|---|---|---|---|---|---|
| | 1973-74 | 1976-77 | 1965-66 | 1973-74 | 1976-77 |
| ୧ । ଅନ୍ଧ୍ରପ୍ରଦେଶ | 18.3 | 28.9 | 21.8 | 20.1 | 22.3 |
| ୨ । ଆସାମ | 24.2 | 26.4 | 14 6 | 24.5 | 24.0 |
| ୩ । ବିହାର | 15.6 | 17.7 | 21.9 | 24.3 | 25.7 |
| ୪ । ଗୁଜରାଟ | 22.6 | 37.8 | 19.7 | 20.8 | 25.9 |
| ୫ । ହରିଆନା | 23.8 | 32.2 | — | 18.0 | 17.6 |
| ୬ । ହିମାଚଳପ୍ରଦେଶ | 47.7 | 66 3 | — | 22.9 | 2[illegible].3 |
| ୭ । ଜାମ୍ମୁ ଓ କାଶ୍ମୀର | 28.4 | 40.9 | 13.3 | 22.5 | 12.9 |
| ୮ । କେରଳ | 40.7 | 60.8 | 33.9 | 37.0 | 37.1 |
| ୯ । ମଧ୍ୟପ୍ରଦେଶ | 20.4 | 21.7 | 29.5 | 27.9 | 20.6 |
| ୧୦ । ମହାରାଷ୍ଟ୍ର | 24.6 | 36.7 | 18.4 | 18.6 | 19.5 |
| ୧୧ । ମଣିପୁର | 52.4 | 57.2 | — | 24.4 | 17.2 |
| ୧୨ । ମେଘାଳୟ | 37.2 | 47.7 | — | 16.0 | 15.2 |
| ୧୩ । କର୍ଣ୍ଣାଟକ | 24.4 | 34.3 | 21.9 | 18.7 | 22.1 |
| ୧୪ । ନାଗାଲାଣ୍ଡ | 77.5 | 100.3 | — | 12.7 | 1[illegible].5 |
| ୧୫ । ଓଡ଼ିଶା | 14.3 | 24.4 | 16.4 | 9.8 | 10.9 |
| ୧୬ । ପଞ୍ଜାବ | 37 8 | 45.3 | 17.2 | 26.3 | 23.7 |
| ୧୭ । ରାଜସ୍ଥାନ | 22.3 | 28.9 | 22.1 | 20.0 | 22.7 |
| ୧୮ । ତାମିଲନାଡୁ | 26.8 | 27.9 | 25.0 | 24.6 | 21.4 |
| ୧୯ । ତ୍ରିପୁରା | 48.1 | 54.9 | — | 22.7 | 22.3 |
| ୨୦ । ଉତ୍ତର ପ୍ରଦେଶ | 18.1 | 22.4 | 17.7 | 24.4 | 23.8 |
| ୨୧ । ପଶ୍ଚିମବଙ୍ଗ | 20.1 | 25.7 | 19.1 | 23.7 | 22.3 |

ରାଜ୍ୟର ସମଗ୍ର ବଜେଟ୍ ପରିମାଣର ଶତକଡ଼ା ଭାବରେ ଶିକ୍ଷାଖର୍ଚ୍ଚକୁ ସର୍ବନିମ୍ନ ଦୃଷ୍ଟିରେ ଦେଖାଗଲେ ଓଡ଼ିଶା ୧୯୬୫-୬୭ରେ ତୃତୀୟ ସ୍ଥାନ ପାଇଛି । ସେହି ସର୍ବନିମ୍ନ ଦୃଷ୍ଟିରେ ଜାମ୍ମୁକାଶ୍ମୀର ସେ ବର୍ଷ ପ୍ରଥମ ଓ ଆସାମ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । କିନ୍ତୁ ୧୯୭୩-୭୪ ଓ ୧୯୭୬-୭୭ରେ ଆମ ଶତକଡା ହାର ୧୯୬୫-୬୬ ତୁଳନାରେ କମିଗଲେ ସୁଦ୍ଧା ଆମେ ସବା ତଳୁ ପ୍ରଥମ ହେବାର ଗୌରବ ବଜାୟ ରଖିଛୁ । ଆମେ କେଉଁ ବର୍ଷ ଉପରକୁ ଉଠିବାର ସ୍ୱପ୍ନ ଦେଖିବୁ ? ଆମ ଅନଗ୍ରସରତା କ୍ରମେ ତଳକୁ ତଳ ଖସୁ ନାହିଁ କି ? ଆମଶିକ୍ଷା ଯୋଜନା ପ୍ରଣୟନକାରୀ ଏହାକୁ ବିଚାର କରିବେ କି ?

ଏ ସମ୍ପର୍କରେ ଶିକ୍ଷାକମିଶନଙ୍କ ୧୯୬୪—୬୬ ବିଚାର ପ୍ରଣିଧାନ ଯୋଗ୍ୟ :—

(କ) The States should make an intensive effort to raise their tax revenues.

(ଖ) The Central grants to States should be increased.

(ଗ) The States should accord a higher priority to education in their programmes.

ଏହା କରାନଗଲେ ଶିକ୍ଷାର ଗୁଣାତ୍ମକ ଓ ସଂଖ୍ୟାତ୍ମକ ବିକାଶ ସୁଦୂରପରାହତ ହେବ । ଆହୁରି ମଧ୍ୟ ଆମ ଆର୍ଥିକ ଦୁର୍ଗତି ଘୁଞ୍ଚିବ ନାହିଁ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ ମୁଣ୍ଡପିଛା ଶିକ୍ଷାବ୍ୟୟ ୧୯୭୩-୭୪ ରେ ଟ ୧୪.୩ଙ୍କା ଥିବା ସ୍ଥଳେ ୧୯୭୬-୭୭ରେ ଟ ୨୪.୪ଙ୍କା ହୋଇଛି । ଅନ୍ୟ କୋଡ଼ିଏଟି ରାଜ୍ୟର ସ୍ଥାନ ଆମ ଉପରେ । କିନ୍ତୁ ଆମେ ୧୯୭୬-୭୭ରେ ବିହାର, ମଧ୍ୟପ୍ରଦେଶ ଓ ଉତ୍ତରପ୍ରଦେଶକୁ ଟପି ଯାଇଛୁଁ । ଆମ ସ୍ଥାନ ଆହୁରି ଉପରକୁ ଯିବ—ଏହାହିଁ ଆମ ଯୋଜନାବିତ୍‌ମାନଙ୍କ ପାଇଁ ଆହ୍ୱାନ ।

ବର୍ତ୍ତମାନ ଟେବୁଲ (୨)ର ଶେଷ ତିନୋଟି ଧାଡ଼ିର ବିଚାର କରିବା । ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚତର ଶିକ୍ଷା—ଏହି ସ୍ତର ଅନୁସାରେ ପାଞ୍ଚ ବର୍ଷର ପରିସଂଖ୍ୟାନ ପୃଥକ୍ ଦିଆଯାଇଛି । ପ୍ରତ୍ୟେକ ସ୍ତରପାଇଁ ଖର୍ଚ୍ଚର ଶତକଡ଼ା କେତେ ଭାଗ ଦରମା ଆକାରରେ ବ୍ୟୟ କରାଯାଏ ତାହାର ସୂଚନା ଉକ୍ତ ପରିସଂଖ୍ୟାନରୁ ମିଳେ । ପ୍ରାଥମିକ ଶିକ୍ଷାସ୍ତରରେ

ପ୍ରାୟ ସମସ୍ତ ଖର୍ଚ୍ଚ କେବଳ ଶିକ୍ଷକଙ୍କ ଦରମାଦିରେ ବ୍ୟୟ କରାଯାଏ । ଏହି ସ୍ଥିତି ୧୯୭୩-୭୪ରେ ଯାହାଥିଲା ୧୯୭୭-୭୮ ରେ ଅବିକଳ ତାହାହିଁ ରହିଛି । ମଧ୍ୟବର୍ତ୍ତୀ ତିନି ବର୍ଷରେ ସାମାନ୍ୟ ତାରତମ୍ୟ ଦେଖାଯାଏ । ମାଧ୍ୟମିକ ଶିକ୍ଷାସ୍ତରରେ ଏହି ଅବସ୍ଥାର ସାମାନ୍ୟ ଉନ୍ନତି ହୋଇଛି । ସମସ୍ତ ଖର୍ଚ୍ଚର ଶତକଡ଼ା ୯୦-୯୨ ଭାଗ ଦରମାରେ ବ୍ୟୟ କରାଯାଉଛି । ଉଚ୍ଚତର ଶିକ୍ଷାସ୍ତରରେ ମାତ୍ର ଗୋଟିଏ ବର୍ଷ ଅର୍ଥାତ୍ ୧୯୭୩-୭୪ରେ ଶତକଡ଼ା ୬୮ ଭାଗ ଓ ପରବର୍ତ୍ତୀ ଚାରିବର୍ଷରେ ଏହା ଶତକଡ଼ା ୮୬,୮୭ ଓ ୯୦ ଭାଗକୁ ଯାଇଛି । ବର୍ଷକୁ ବର୍ଷ ଧରି ବିଚାର କଲେ ପ୍ରତ୍ୟେକ ସ୍ତରରେ ଆମର ମୋଟ ଖର୍ଚ୍ଚ ବୃଦ୍ଧି ପାଇଛି । କିନ୍ତୁ ଫଳ ହୋଇଛି, କେବଳ ଦରମା ଦେବା । ଦରମାର ସଂଶୋଧନ କରାଯାଇଛି । ଭତ୍ତା ଦିଆଯାଇଛି । ଦରଦାମ ବଢ଼ିଛି । ତେଣୁ ଏହା କେବଳ ପୋଷଣ ଅର୍ଥନୀତି । ସ୍ଥିତାବସ୍ଥାର ଅର୍ଥନୀତି । ଆମ ପ୍ରଶାସନର ମନୋଭାବର ଏହାହିଁ ପରିଚୟ । ଏହା ବିକାଶଭିତ୍ତିକ ନୁହେଁ । ତେଣୁ ଆମ ଅର୍ଥନୀତି ବିକାଶର ପକ୍ଷପାତୀ ନୁହେଁ । ଶିକ୍ଷକମାନଙ୍କୁ ନିଯୁକ୍ତି ଦିଆଗଲା । ସେମାନେ ବସିବେ କେଉଁଠି ? ପିଲାମାନଙ୍କ ପାଇଁ ଶ୍ରେଣୀଘର କାହିଁ ? ଉପକରଣ କିଏ ଦେବ ? ଶିକ୍ଷକମାନଙ୍କୁ ମାର୍ଗଦର୍ଶନ ଦେବ କିଏ ? ପାଠ୍ୟ ପୁସ୍ତକକୁ ବାସ୍ତବ ଓ ପ୍ରାସଙ୍ଗିକ କରିବା କିପରି ? ପାଠ୍ୟକ୍ରମର ସଂଶୋଧନ ହେବ କିପରି ? ମୂଲ୍ୟାୟନକୁ କାର୍ଯ୍ୟକାରୀ କିପରି କରାଯିବ ? ଶିକ୍ଷକ ସହାୟକ ପୁସ୍ତକ କାହିଁ ? ଏପରି ବିଭିନ୍ନ କାରଣରୁ ଗୋଦର କୋଡ଼େ ଯେତେ ମାଡ଼େ ସେତେ । ସମାଜରେ ଶିକ୍ଷା ପାଇବା ବୟସର ପିଲାଙ୍କ ସଂଖ୍ୟା ବଢ଼ିବା ସାଙ୍ଗକୁ ଆବଦ୍ଧତା ଓ ଅପଚୟର ହାର ବଢ଼ିଛି । ପଞ୍ଚମ ଶ୍ରେଣୀ ବେଳକୁ ପ୍ରଥମ ଶ୍ରେଣୀରେ ନାମ ଲେଖାଇଥିବା ଶହେ ପିଲାଙ୍କ ମଧ୍ୟରୁ ମୋଟେ ୨୨ ଜଣ ଅଟକି ଗଲେ । ବାକୀ ୭୮ ଜଣ ମଝିରେ ମଝିରେ ଖସିଗଲେ । ଏମାନଙ୍କୁ ଆମ ସ୍ଥିତାବସ୍ଥା ସୁହାଇଲା ନାହିଁ । ଅବସ୍ଥା ଅନୁରୂପ ବ୍ୟବସ୍ଥା ଆମେ କରିପାରିଲୁ ନାହିଁ । ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ସମ୍ବିଧାନର ପବିତ୍ର ନିର୍ଦ୍ଦେଶ ପଦ୍ମ ଘୁଞ୍ଚିଲା ପରି ଘୁଞ୍ଚି ଘୁଞ୍ଚି ଯାଉଛି ।

ଅର୍ଥନୀତି ଓ ଶିକ୍ଷାର ବିକାଶ ଦୃଷ୍ଟିରୁ ଏକ ଅବାସ୍ତବ ବଜେଟ ପ୍ରସ୍ତୁତ କରି ଶିକ୍ଷାକୁ ପଙ୍ଗୁ କରି ଦିଆଯାଇଛି । ଅସାମର୍ଥ୍ୟ ଓ ଅସହାୟତା ଆମର ଯୁକ୍ତି ହୋଇଅଛି । ମାଇନର ବୃତ୍ତି ପରୀକ୍ଷା ପାଇଁ ପ୍ରତ୍ୟେକ ମିଡ଼ିଲସ୍କୁଲ ଯେତେ ଜଣ ପ୍ରାର୍ଥୀ ପଠାଇବା କଥା ସେମାନେ ତାହା କରିପାରୁ ନାହାନ୍ତି । ହାଇସ୍କୁଲ ପରୀକ୍ଷା ପାଇଁ ପ୍ରାର୍ଥୀ ସଂଖ୍ୟା ବୃଦ୍ଧିପାଇ ସୁଦ୍ଧା ଶତକଡା ପାସହାର ଅଧିକାଂଶତଃ ୫୦କୁ ଟପୁ ନାହିଁ । ଇଣ୍ଟରମିଡ଼ିଏଟ୍, ଓ ବି. ଏ.

ପରୀକ୍ଷାରେ ତାହାହିଁ ହେଉଛି । ସ୍ନାତକୋତ୍ତର ପରୀକ୍ଷାରେ ଶତକଡ଼ା ପାଶସଂଖ୍ୟା ବେଶ୍ ଭଲ ହେଲେ ସୁଦ୍ଧା ପାଠ୍ୟକ୍ରମ ମାନ୍ଧାତିଆ ହୋଇଥିବାରୁ ଆବଶ୍ୟକ ଲୋକବଳ ଆମ ପ୍ରାକୃତିକ ସମ୍ବଳର ବିନିଯୋଗ ପାଇଁ ଆମେ ପାଇପାରୁନାହୁଁ । ଏପରି କାର୍ଯ୍ୟକ୍ରମ ହେବାରେ ଅପାରଗମାନଙ୍କୁ ଉତ୍ପାଦନ କରି ଶିକ୍ଷାରୁ ଲାଭ (Returns) ଆମେ ପାଇ ପାରୁନାହୁଁ । ଟେନିଜନ,ସ୍କୁମିଲିନ,ଭାଇଜ୍,ଶୁଲଜ ପ୍ରଭୃତି ଅର୍ଥନୀତି ବିଶାରଦ ସକଳ ସେମାନଙ୍କ ଅଧ୍ୟୟନରୁ ପ୍ରମାଣ କରୁଅଛନ୍ତି ଯେ ଜାତୀୟ ଆୟର ବୃଦ୍ଧି ଦିଗରେ ଶିକ୍ଷାର ନିର୍ଦ୍ଦିଷ୍ଟ ଦାନ ରହିଛି । କିନ୍ତୁ ଆମ ଶିକ୍ଷିତ ପିଲାମାନେ ବେକାର ହୋଇ ବସୁଛନ୍ତି । ଶିକ୍ଷା ଯେ ଅର୍ଥକରୀ ଏହି ଆର୍ଷବାଣୀ ମିଥ୍ୟା ପ୍ରମାଣିତ ହେଉଛି । ଶିକ୍ଷାପ୍ରତି ଲୋକଙ୍କର ଆସ୍ଥା ଓ ଆଗ୍ରହ କମିଯାଉଛି । ଶିକ୍ଷାଯୋଜନା ପ୍ରଣୟନରେ ଏଥିପ୍ରତି ନିର୍ଦ୍ଦିଷ୍ଟ ଧ୍ୟାନ ରହିବା ଉଚିତ । ଯଥାର୍ଥରେ Coombs ମତ ଦିଅନ୍ତି, Irrelevant education was one of the heavy prices paid for the strategy of linear expansion and for impressively mounting enrolment statistics.

ଟେବୁଲ (୨)ରୁ (୪), (୫) ଓ (୬) ଧାଡ଼ିର ହାରାହାରି ଶତକଡ଼ା ହିସାବ ନିର୍ଣ୍ଣୟ କରି ଏହାର ପର୍ଯ୍ୟାଲୋଚନା କରାଯାଇପାରେ । ଅବଶ୍ୟ ଏଥିରୁ ମୋଟାମୋଟି ଭାବରେ ସୂଚନା ମିଳିବ । କିନ୍ତୁ ଏହା ପ୍ରକୃତ ନୁହେଁ । ପ୍ରକୃତ ଖର୍ଚ୍ଚରୁ ଶତକଡା ହିସାବ କରାଯାଇପାରେ ।

ଟେବୁଲ (୪)

| | 1973-74 | 74-75 | 75-76 | 76-77 | 77-78 |
|---|---|---|---|---|---|
| Percentage of expenditure on salaries to the total expenditure on education. | 86.3 | 92.2 | 93.7 | 91.9 | 93.8 |

ଏହି ଆଲୋଚ୍ୟ ପାଞ୍ଚ ବର୍ଷରେ ହାରାହାରି ପ୍ରତିବର୍ଷ ଶିକ୍ଷାଖର୍ଚ୍ଚର ପ୍ରାୟ ୯୧.୬ ଭାଗ କେବଳ ବେତନ ଦେବାରେ ଆମ କାମ ମୁଖ୍ୟତଃ ସୀମିତ ହୋଇଅଛି । ତେଣୁ ଶିକ୍ଷକ, ଶିକ୍ଷାପ୍ରଶାସକ ଆଦି ଯେଉଁ ବ୍ୟକ୍ତିବିଶେଷ ଏଥିରେ ସମ୍ପୃକ୍ତ ଅଛନ୍ତି ସେମାନଙ୍କ ନେତୃତ୍ୱ, କୌଶଳ, ଅଭିକ୍ରମ ଆଦି ସଦ୍‌ଗୁଣର ସଦୁପଯୋଗ କରାଯାଇ ପାରୁନାହିଁ ।

ପୁନଶ୍ଚ ଟେବୁଲ (୨)ର ହିସାବକୁ ବର୍ଷ ଅନୁସାରେ ପ୍ରାଥମିକ ଶିକ୍ଷାସ୍ତରରୁ ଉଚ୍ଚତର ଶିକ୍ଷାସ୍ତର ପର୍ଯ୍ୟନ୍ତ ଅନୁଧ୍ୟାନ କଲେ ବେତନାଦି ବାବଦ୍‌ରେ ଶତକଡା ଖର୍ଚ୍ଚ କମି କମି ଯାଉଛି । କିନ୍ତୁ ଏହା ମଧ୍ୟ ଅର୍ଥହୀନ, କାରଣ ଉଚ୍ଚତର ଓ ମାଧ୍ୟମିକ ଶିକ୍ଷାସ୍ତରରେ ଶ୍ରେଣୀଗୃହ, ପୁସ୍ତକ, ଉପକରଣ, ଲବୋରେଟରି, ବାସଗୃହ, • ପୁସ୍ତକାଗାର ଆଦିର ଖର୍ଚ୍ଚ ଅଟକଳ ଏତେ ବେଶୀ ଯେ ବେତନ ଦେବାପରେ ଯାହା ବଳିବ ତାହା ସମୁଦ୍ରକୁ ଶଙ୍ଖେ ପାଣି ପରି । ଆମ ବଜେଟରେ ଏଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ରହିବା ଉଚିତ ।

ଏହି ପ୍ରସଙ୍ଗରେ Financing of Higher Education in India (Sterling, 1975) ଶୀର୍ଷକ ପୁସ୍ତକରେ Azad ବହୁଦିଗରୁ ବିଶ୍ଳେଷଣ କରିଛନ୍ତି । Per student per capita expenditureର ବିଶ୍ଳେଷଣ କରଯାଇଛି । ବିଭିନ୍ନ ରାଜ୍ୟ ମଧ୍ୟରେ ତୁଳନା କରଯାଇଛି । ବିଶ୍ୱବିଦ୍ୟାଳୟ ଶିକ୍ଷାର Consumption expenditure ଓ Investment expenditure ଦିଗରୁ ଆଲୋଚନା କରଯାଇ ଗୋଟିଏ ସୁସ୍ଥ ବିକାଶ ହେଉଥିବାର ସିଦ୍ଧାନ୍ତରେ ସେ ପହଞ୍ଚି ପାରି ନାହାନ୍ତି ।

ଅନେକ ସମୟରେ ଦେଖାଯାଏ ଯେ ଶିକ୍ଷାର ବିଭିନ୍ନ ସ୍ତର ମଧ୍ୟରେ ଶିକ୍ଷାଖର୍ଚ୍ଚର ଅଧିକ ଭାଗ ଉଠାଇନେବା ପାଇଁ ପ୍ରତିଦ୍ୱନ୍ଦିତା ଚାଲେ । ଅବଶ୍ୟ ଏହି ପ୍ରତିଦ୍ୱନ୍ଦିତା ବୌଦ୍ଧିକ ବିଗ୍ଭର ଉପରେ ପ୍ରତିଷ୍ଠିତ ହେଲେ କିୟଦଂଶ ସୁଫଳ ମିଳିପାରନ୍ତା । ତଥାପି ଏହା ବାଞ୍ଛନୀୟ ନୁହେଁ । ସେ ପ୍ରସଙ୍ଗରେ What is educational planning? (UNESCO, 1970) ଶୀର୍ଷକ ପୁସ୍ତିକାରେ P.H Coombs ପାଞ୍ଚୋଟି ସୂତ୍ରର ଅବତାରଣା କରିଛନ୍ତି । (I) Educational planning should take a longer range view. (II) Educational Planning should be comprehensive. It should embrace the whole educational system in a single vision to ensure the harmonious evolution of its various parts. (III) Educational Planning should be integrated with the plans of broader economic and social development, (IV) Educational Planning should be an integral part of educational management and (V) Educational planning

must be concerned with the qualitative aspects of educational development and not merely with quantitative expansion.

•

ଆମର ଅଧିକାଂଶ ସମ୍ବଳ କେବଳ ଶିକ୍ଷାରେ କାହିଁକି, ପ୍ରାୟ ଅଧିକାଂଶ ଯୋଜନାରେ ଅଧିକରୁ ଅଧିକ ଉଗ ବେତନରେ ବ୍ୟୟ କରଯାଉଛି । ଏହାର ଅନ୍ୟତମ କାରଣ ହୋଇପାରେ, Costs rising faster than revenue. ରାଜନୈତିକ ଚାପ ଫଳରେ ଶିକ୍ଷା ବଜେଟକୁ ବଢ଼ାଇ ଦିଆଯାଉଛି । ଏହା ବାସ୍ତବ ହେଉନାହିଁ । ସେପରି ସ୍ଥଳରେ ଯାହା ଲକ୍ଷ୍ୟ ଧାର୍ଯ୍ୟ କରଯାଇଛି, ତାକୁ କମାଇଦେବାର ଉଦ୍ୟମ ହେଉଛି । କିନ୍ତୁ ରାଜନୈତିକ କାରଣରୁ ଏହା ସମ୍ଭବ ହେଉନାହିଁ । ଦ୍ୱିତୀୟ ପନ୍ଥା ହେଉଛି, ଖର୍ଚ୍ଚ କମାଇ ଦେଇ ଶିକ୍ଷାଗତ ଦକ୍ଷତା ପ୍ରତି ଦୃଷ୍ଟି ଦିଆଯିବାର ପ୍ରସ୍ତାବ କରଯାଉଛି । ଏହା କଥାରେ ସୁନ୍ଦର ଦିଶିଲେ ହେଁ କାର୍ଯ୍ୟତଃ କରଯାଇପାରୁନାହିଁ । ତୃତୀୟ ପନ୍ଥା ହେଉଛି, ଯାହା ସମ୍ବଳ ମିଳିଛି ତାକୁ ସମାନଭାବରେ କିନ୍ତୁ ଫଳତଃ ଅଳ୍ପ ଅଳ୍ପ କରି ସବୁ ପ୍ରକଳ୍ପରେ ବାଣ୍ଟି ଦିଆଯାଉଛି । ସମ୍ଭବତଃ ଏହି ପ୍ରକାର କାରଣରୁ ଆମର ଶିକ୍ଷା ବଜେଟ ଅଧିକରୁ ଅଧିକ ସ୍ଥିତାବସ୍ଥା ସମ୍ବଳିତ ହୋଇଯାଉଛି । ଶିକ୍ଷାକୁ ରୂପାନ୍ତରିତ କରି ଏହା ଯେପରି ଦେଶର ଆର୍ଥିକ ବିକାଶ ପାଇଁ ସହାୟକ ହୋଇ ପାରିବ ସେଦିଗରୁ କୌଣସି ଆର୍ଥିକ ବ୍ୟବସ୍ଥା ନାହିଁ ।

ଆମ ରାଜ୍ୟରେ ବିଭିନ୍ନ ସମସ୍ୟା ରହିଛି । ପ୍ରୌଢ଼ଶିକ୍ଷା ତନ୍ମଧ୍ୟରୁ ଅନ୍ୟତମ । ନାରୀମାନଙ୍କ ମଧ୍ୟରେ ସାକ୍ଷରତାର ଶତକଡ଼ା ହାର ବଲାଙ୍ଗୀର ଜିଲ୍ଲାରେ ୭.୫, କଳାହାଣ୍ଡୀ ଜିଲ୍ଲାରେ ୪.୬, କୋରାପୁଟ ଜିଲ୍ଲାରେ ୪.୯, ଫୁଲବାଣୀ ଜିଲ୍ଲାରେ ୬.୭ । ଏହିସବୁ ଜିଲ୍ଲାରେ ପୁରୁଷମାନଙ୍କ ମଧ୍ୟରେ ସାକ୍ଷରତାର ଶତକଡା ହାର ସାମାନ୍ୟ ଅଧିକ ହେଲେହେଁ ଏହା ମଧ୍ୟ ଅତି କମ୍ । ୧୯୬୧ ଜନଗଣନା ତୁଳନାରେ ୧୯୭୧ ଜନଗଣନାର ହିସାବକୁ ଧରି ଏହି ଦଶନ୍ଧିରେ ସାକ୍ଷରତା ବୃଦ୍ଧିର ଶତକଡ଼ା ହାର ଫୁଲବାଣୀ ଜିଲ୍ଲାରେ ସବୁଠାରୁ କମ୍, ଅର୍ଥାତ୍ ୧୧.୯ ହୋଇଛି ।

ବିଭିନ୍ନ ରାଜ୍ୟ ତୁଳନାରେ ଆମ ରାଜ୍ୟ ସାକ୍ଷରତାର ଶତକଡା ହାର ଦୃଷ୍ଟିରୁ ୧୪ଟି ରାଜ୍ୟର ତଳେ ପଡ଼ିଛି । ଏହି ହିସାବ କେବଳ ପୁରୁଷମାନଙ୍କ ସଂଖ୍ୟାକୁ ଧରି

ବିଗ୍ଭର କରଗଲେ ଆମେ ଦଶଟି ରାଜ୍ୟର ପଛରେ ପଡ଼ିଛୁଁ ଓ ନାରୀମାନଙ୍କ ସଂଖ୍ୟାକୁ ଧରି ବିଗ୍ଭର କରଗଲେ ଆମେ ୧୫ଟି ରାଜ୍ୟର ପଛରେ ଅଛୁଁ । ନିମ୍ନୋକ୍ତ ଟେବୁଲରୁ ଏହା ସୁସ୍ପଷ୍ଟ ହୁଏ ।

ଟେବୁଲ–(୫)

## ୧୯୭୧ ଜନଗଣନା ଅନୁଯାରେ ଶତକଡ଼ା ସାକ୍ଷରତା

| | ପୁରୁଷ | ମହିଳା | ମୋଟ |
|---|---|---|---|
| ୧ । ଆନ୍ଧ୍ରପ୍ରଦେଶ | ୩୩.୨ | ୧୫.୮ | ୨୪.୬ |
| ୨ । ଆସାମ | ୩୬.୭ | ୧୮.୬ | ୨୮.୬ |
| ୩ । ବିହାର | ୩୦.୬ | ୮.୭ | ୧୯.୯ |
| ୪ । ଗୁଜୁରାଟ | ୪୬.୧ | ୨୪.୭ | ୩୫.୮ |
| ୫ । ହରିଆନା | ୩୭.୩ | ୧୪.୯ | ୨୬.୯ |
| ୬ । ହିମାଚଳପ୍ରଦେଶ | ୪୩.୨ | ୨୦.୨ | ୩୧.୯ |
| ୭ । ଜାମୁକାଶ୍ମୀର | ୨୬.୭ | ୯.୩ | ୧୮.୬ |
| ୮ । କେରଳ | ୬୬.୬ | ୫୪.୩ | ୬୦.୪ |
| ୯ । ମଧ୍ୟପ୍ରଦେଶ | ୩୨.୭ | ୧୦.୯ | ୨୨.୧ |
| ୧୦ । ମହାରଷ୍ଟ୍ର | ୫୧.୦ | ୨୬.୪ | ୩୯.୨ |
| ୧୧ । ମଣିପୁର | ୪୬.୦ | ୧୯.୫ | ୩୨.୯ |
| ୧୨ । ମେଘାଳୟ | ୩୪.୧ | ୨୪.୬ | ୨୯.୫ |
| ୧୩ । କର୍ଣ୍ଣାଟକ | ୪୧.୬ | ୨୦.୯ | ୩୧.୫ |
| ୧୪ । ନାଗାଲଣ୍ଡ | ୩୫.୦ | ୧୮.୬ | ୨୭.୪ |
| ୧୫ । ଓଡ଼ିଶା | ୩୮.୩ | ୧୩.୯ | ୨୬.୨ |
| ୧୬ । ପଞ୍ଜାବ | ୪୦.୪ | ୨୫.୯ | ୩୩.୭ |
| ୧୭ । ରାଜସ୍ଥାନ | ୨୮.୭ | ୮.୫ | ୧୯.୧ |
| ୧୮ । ତାମିଲନାଡୁ | ୫୧.୮ | ୨୬.୯ | ୩୯.୫ |
| ୧୯ । ତ୍ରିପୁରା | ୪୦.୨ | ୨୧.୨ | ୩୦.୯ |
| ୨୦ । ଉତ୍ତରପ୍ରଦେଶ | ୩୧.୫ | ୧୦.୫ | ୨୧.୭ |
| ୨୧ । ପଶ୍ଚିମବଙ୍ଗ | ୪୨.୮ | ୨୨.୪ | ୩୩.୨ |

୧୯୮୧ ମସୀହା ଜନଗଣନାରୁ ଜଣାପଡ଼େ ଯେ ଜାତୀୟ ସ୍ତରରେ ସାକ୍ଷରତାର ଶତକଡା ହାର ୩୬.୨୩ ହୋଇଥିବା ସ୍ଥଳେ ଓଡ଼ିଶାରେ ଏହା ୩୪.୨୩ ରହିଛି । ଓଡ଼ିଶା ସମେତ୍ ୧୦ଗୋଟି ରାଜ୍ୟ ଓ ୨ଟି କେନ୍ଦ୍ରଶାସିତ ଅଞ୍ଚଳରେ ସାକ୍ଷରତା ହାର ଜାତୀୟ ହାରଠାରୁ କମ୍ ।

ଆମ ସମ୍ବଳକୁ ଗ୍ରହି ଓ ଆମ ସମସ୍ୟା ଦର୍ଷ୍ଟିରୁ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ହାତକୁ ନେବା ଉଚିତ । ଜାତୀୟ ଆୟର ଅଭିବୃଦ୍ଧିରେ ସାକ୍ଷରତାର ନିର୍ଦ୍ଦିଷ୍ଟ ଦାନ ବିଷୟରେ ଅର୍ଥନୀତିଜ୍ଞ ପଣ୍ଡିତମାନେ ଦୃଢ଼ମତ ପ୍ରତିପାଦନ କରନ୍ତି । ଶିକ୍ଷାକୁ ସାର୍ବଜନୀନ କରି ନ ପାରିବା ଫଳରେ ନିରକ୍ଷରତା ମଧ୍ୟ ବୃଦ୍ଧି ପାଉଛି । ୬ରୁ ୧୧ବର୍ଷ ବୟସର ଶତକଡ଼ା ୮୦.୫, ୧୧ରୁ ୧୪ ବର୍ଷ ବୟସର ଶତକଡ଼ା ୨୩.୮ ଓ ୧୪ରୁ ୧୭ ବର୍ଷ ବୟସର ଶତକଡ଼ା ୧୩.୪ ପିଲା ପଢୁଛନ୍ତି । ସମ୍ବିଧାନର ନିର୍ଦ୍ଦେଶ ଅନୁସାରେ ଶିକ୍ଷା କେବେ ସାର୍ବଜନୀନ ହୋଇ ପାରିବ—ଏହା ନିଶ୍ଚିତ ହୋଇପାରୁନାହିଁ । ଏଥି ସହିତ ଆବଦ୍ଧତା ଓ ଅପଚୟର ହାର ଦିନକୁ ଦିନ ବଢି ଆମ ଅର୍ଥ, ପରିଶ୍ରମ ଓ ପ୍ରଚେଷ୍ଟା ପଣ୍ଡ କରିଦେଉଛି । ଏହାର ଗୁରୁତ୍ୱ ଉପଲବ୍ଧି କରି ରାଜ୍ୟବ୍ୟାପୀ ଉଦ୍ୟମ ହୋଇପାରୁ ନାହିଁ କହିଲେ ଚଳେ । ହାଇସ୍କୁଲ ସ୍ତରରେ ଶତକଡା ପାଶ୍‌ସଂଖ୍ୟା ମଧ୍ୟ କମ ।

ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଆମେ କେତେ ଦୂର ଅଗ୍ରଗତି କରିଛୁଁ ଏହା ନିମ୍ନୋକ୍ତ ଟେବ୍‌ଲରୁ ଦେଖାଯିବ ।

ଟେବ୍‌ଲ—(୬)

## ପ୍ରତି ହଜାର ଲୋକସଂଖ୍ୟାରେ ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଛାତ୍ରସଂଖ୍ୟା

| | | | |
|---|---|---|---|
| ୧ । ଆନ୍ଧ୍ରପ୍ରଦେଶ | ୪.୧ | ୧୦ । କର୍ଣ୍ଣାଟକ | ୬.୫ |
| ୨ । ଆସାମ | ୩.୫ | ୧୧ । ଓଡ଼ିଶା | ୨.୫ |
| ୩ । ବିହାର | ୪.୧ | ୧୨ । ପଞ୍ଜାବ ଓ ହରିଆନା | ୮.୭ |
| ୪ । ଗୁଜ୍ରାଟ | ୬.୧ | ୧୩ । ରାଜସ୍ଥାନ | ୩.୩ |
| ୫ । ହିମାଚଳପ୍ରଦେଶ | ୪.୩ | ୧୪ । ତାମିଲନାଡୁ | ୫.୨ |
| ୬ । ଜାମ୍ମୁକାଶ୍ମୀର | ୫.୮ | ୧୫ । ଉତ୍ତରପ୍ରଦେଶ | ୩.୧ |
| ୭ । କେରଳ | ୮.୫ | ୧୬ । ପଶ୍ଚିମବଙ୍ଗ | ୭.୩ |
| ୮ । ମଧ୍ୟପ୍ରଦେଶ | ୩.୫ | ୧୭ । ଦିଲ୍ଲୀ | ୧୬.୫ |
| ୯ । ମହାରାଷ୍ଟ୍ର | ୭.୫ | | |

ଏଥିରେ ସର୍ବନିମ୍ନ ସ୍ଥାନ ଆମେ ଅଧିକାର କରିଛୁଁ । ତେଣୁ ମାନବ ଶକ୍ତି (manpower) ର ଆବଶ୍ୟକତା ଆମେ କିପରି ପୂରଣ କରିବୁଁ ? ପକ୍ଷାନ୍ତରରେ ଆମେ ଲୋକବଳର ଅଭାବରେ ଆମ ପ୍ରାକୃତିକ ସମ୍ବଳର ସଦୁପଯୋଗ କିପରି କରିବୁଁ ?

ଅତଏବ ଶିକ୍ଷାପଦ୍ଧତିର ବିଭିନ୍ନ ସ୍ତର ପ୍ରତି ସମୁଚିତ ଧ୍ୟାନଦେଇ ସମନ୍ୱିତ ବିକାଶର ଆଭିମୁଖ୍ୟ ଆମେ ଥୟକରି ପାରୁନାହିଁ । କେବଳ ଯାହା ମିଳୁଛି, ତାହା ଗଣୁଉଛୁଁ । ଏହି ନୀତିରେ ଗଣିତର ତ୍ରୈରାଶିକ ଧାରା ପ୍ରୟୋଗ କରି ସନ୍ତୁଷ୍ଟ ରହୁଛୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପରି ନ ଯଯୌ ନ ତସ୍ଥୌ ଅବସ୍ଥାରେ ପଡ଼ି ଆଞ୍ଚଳିକ ବୈଷମ୍ୟ ଦୂର କରିପାରୁନାହିଁ ।

ଦ୍ରବ୍ୟ, ଅର୍ଥ ଓ ମାନବ—ଏହି ତିନି ପ୍ରକାର ସମ୍ବଳ ଯେତେ ମିଳୁଛି ତା'ର ସଦୁପଯୋଗ କରଯିବା ଉଚିତ । ଏହା ଆମ ଯୋଜନାରେ ପ୍ରତିଫଳିତ ହେବା ଉଚିତ । ବିଦ୍ୟାଳୟ ସଙ୍ଗମ ଯୋଜନା କାର୍ଯ୍ୟକାରୀ କରଗଲେ ଏହା ଅନେକାଂଶରେ ହୋଇପାରନ୍ତା । ସ୍ୱାସ୍ଥ୍ୟ, କୃଷି, ସମବାୟ, ଶିଳ୍ପ, ମତ୍ସ୍ୟ, ଜଙ୍ଗଲ ଆଦି ବିଭାଗ ସହିତ ସହଯୋଗୀ ବିଭାଗ ଭାବରେ ଶିକ୍ଷା ଉଲ୍ଲିଖିତ ସମ୍ବଳର ସଦୁପଯୋଗ କରିପାରନ୍ତା । ଏହାହିଁ ବିକାଶ ଯୋଜନା । କୋଠାରୀ କମିଶନ ମଧ୍ୟ ଯେଉଁ ସମ୍ବଳ ଅଛି, ଏହା ଯେତେ କମ୍ ହେଉ ପଛକେ ଏହାର ସର୍ବାଧିକ ସଦୁପଯୋଗ ପାଇଁ ପରାମର୍ଶ ଦେଇଛନ୍ତି । କିନ୍ତୁ ଏଥିପାଇଁ ଯୋଜନା କାହିଁ ?

ସମ୍ବଳର ବୃଦ୍ଧିପାଇଁ J.P. Naik ଙ୍କ ପରାମର୍ଶ ସ୍ମରଣୀୟ । Educational Planning in India (Bombay, 1965) ନାମକ ପୁସ୍ତକରେ ସେ ଗୁରିଗୋଟି ପରାମର୍ଶ ଦେଇଛନ୍ତି । ବିଦ୍ୟାଳୟ ଉନ୍ନତି ଯୋଜନା ତନ୍ମଧ୍ୟରୁ ଅନ୍ୟତମ । ସେ ମାନ୍ଦ୍ରାଜ ରାଜ୍ୟର ଦୃଷ୍ଟାନ୍ତ ଦେଇଛନ୍ତି । ଭଞ୍ଜନଗର ଶିକ୍ଷାଜିଲ୍ଲାରେ ମଧ୍ୟ ଆମ ରାଜ୍ୟରେ କାର୍ଯ୍ୟ କରାଯାଇଛି । ଏହା ବଲାଙ୍ଗୀର ଜିଲ୍ଲାକୁ ଓ ଅନ୍ୟ ଅଞ୍ଚଳକୁ ସମ୍ପ୍ରସାରିତ ହୋଇଥିଲା । ଏ ସମ୍ବନ୍ଧୀୟ ସବିଶେଷ ବିବରଣୀ ପାଇଁ The Bhanjanagar Experiment in School Improvement (S.I.E. 28.11.67) ଓ The Milky Way (S.I.E 30.3.68) ଦ୍ରଷ୍ଟବ୍ୟ । କୋଠାରୀ କମିଶନ ମଧ୍ୟ ଅନୁରୂପ ମନ୍ତବ୍ୟ

ଦେଇଛନ୍ତି । ଏ ଦିଗରେ ଚିନ୍ତା ଆମର ରହିବା ଉଚିତ । ସଫଳ ପ୍ରଚେଷ୍ଟାଗୁଡ଼ିକ ଆମ ଯୋଜନାର ଅଙ୍ଗୀଭୂତ ହେବା ଉଚିତ । ନିଷ୍ଫଳତାକୁ ପରିହାରକରି ସଫଳତାରେ ଗର୍ବିମନ୍ତ ହେବାର ଆଭାସ ମିଳୁନାହିଁ । ଉଚ୍ଚତର ଶିକ୍ଷାରେ Endowment ଇତ୍ୟାଦି ଗ୍ରହଣର ସୂଚନା ନାହିଁ । ମାଧ୍ୟମିକ ଓ କଲେଜ ଶିକ୍ଷାସ୍ତରରେ ଲୋକ ସାହାଯ୍ୟର ଉତ୍ସ କ୍ରମେ ଶୁଷ୍କ ହୋଇ ଯାଉଛି । ଫଳରେ ଶିକ୍ଷା ଓ ସମାଜ ମଧ୍ୟରେ ପ୍ରାଚୀର ପଡ଼ି ଶିକ୍ଷାକୁ ବିକୃତ କରିଦେଉଛି । ସମାଜ–ବିମୁଖ ଶିକ୍ଷିତ ସମ୍ପ୍ରଦାୟ ଆର୍ଥିକ କ୍ଷୟର ଧାରକ ହେଉଛନ୍ତି । ତେବେ ଶିକ୍ଷା କିପରି ମାନବିକ ପୁଞ୍ଜି ସୃଷ୍ଟିରେ ସାହାଯ୍ୟ କରିବ ?

୧୯୮୦ ମସୀହାଠାରୁ ଆମ ରାଜ୍ୟରେ ବେସରକାରୀ ଉଦ୍ୟମରେ ସାଧାରଣ ଶିକ୍ଷାୟତନର ପ୍ରତିଷ୍ଠା ବଢ଼ିବାରେ ଲାଗିଛି । ସେସବୁ ଅଧିକାଂଶତଃ କଲେଜ ଶିକ୍ଷାରେ ସୀମିତ । ଶିକ୍ଷକଶିକ୍ଷା, ଆଇନଶିକ୍ଷା, ଇଞ୍ଜିନିଅରିଂ ଶିକ୍ଷା ଆଦି କେତେକ ବୃତ୍ତିଭିତ୍ତିକ ଶିକ୍ଷାୟତନ ମଧ୍ୟ ଗଢ଼ିଉଠୁଛି । ଏସବୁ ଉଦ୍ୟମ ସରକାରୀ ପ୍ରଚେଷ୍ଟାର ସହାୟକ । କିନ୍ତୁ ସେ ଦୃଷ୍ଟିରୁ ବିଚାର କରାଯାଉନାହିଁ ଓ ସେସବୁର ଗୁଣାତ୍ମକ ବିକାଶ କରାଯାଉନାହିଁ । ସେଥିରେ ତ୍ୟାଗ, ନିଷ୍ଠା ଓ ଅଧ୍ୟବସାୟର ଅଭାବ ପରିଲକ୍ଷିତ ହେଉଥିବାରୁ ଏହା ଏକ ବ୍ୟବସାୟିକ ପ୍ରଚେଷ୍ଟା ବୋଲି ଅନେକ ସ୍ଥଳରେ ଅଭିଯୋଗ କରାଯାଏ ।

ଆଗାମୀ ବର୍ଷର ଶିକ୍ଷା ଖର୍ଚ୍ଚକୁ ମୁଣ୍ଡପିଛା ଖର୍ଚ୍ଚ, ସମଗ୍ର ବଜେଟର ଶତକଡ଼ା ଅଂଶ କିମ୍ବା G.N.P. ର ଶତକଡ଼ା ଅଂଶ ଭାବରେ ପ୍ରକାଶ କରାଯାଇପାରେ । ଅତୀତରେ ଏହା G.N.P. ର ଶତକଡ଼ା କେତେ ଭାଗ ଏହା ନିର୍ଣ୍ଣୟ କରିବା ଉଚିତ । ସେ ସମ୍ପର୍କରେ ଜଣାଯାଏ ଯେ ଏହାର ଜାତୀୟ ଆୟର ଶତକଡା ୭ଭାଗ ରୁଷ ଦେଶରେ, ୬.୫ ଇଉ:ଏସ:ଏ:ରେ ଓ ୫.୭ ଜାପାନରେ ଥିବା ସ୍ଥଳେ ଭାରତରେ ଏହା ମୋଟେ ୩ ଭାଗ । ଆହୁରି ମଧ୍ୟ ଭବିଷ୍ୟତ ବଜେଟ ପାଇଁ ଅଟକଳ କରାଗଲେ ୧୯୮୦-୮୧ ବେଳକୁ ଜାତୀୟ ଆୟର ଶତକଡ଼ା ୭ଭାଗ ଶିକ୍ଷାଖର୍ଚ୍ଚପାଇଁ ବ୍ୟୟ କରାଯିବା ଉଚିତ । ଏହାହେଲେ ମୁଣ୍ଡପିଛା ବ୍ୟୟ ହାରହାରୀ ୫୦ ଟଙ୍କାକୁ ଆସିଯିବ । ଜନସଂଖ୍ୟାର ବୃଦ୍ଧି, ବିଭିନ୍ନ ବିଭାଗ ମଧ୍ୟରେ ସମ୍ବଳପାଇଁ ପ୍ରତିଦ୍ୱନ୍ଦ୍ୱିତା ଇତ୍ୟାଦି ଦୃଷ୍ଟିରୁ ଏହା ମଧ୍ୟ କେତେଦୂର ଠିକ୍ ତାହା ବିଚାର କରିବା ଉଚିତ ।

ଶିକ୍ଷାର ଅର୍ଥନୀତିରୁ ଆମକୁ ସମସ୍ତ ସମସ୍ୟାର ସମାଧାନ ମିଳିପାରିବ ନାହିଁ । କିନ୍ତୁ ବିଶ୍ଳେଷଣ, ମଡେଲ ପ୍ରସ୍ତୁତି, ପ୍ରୟୋଗ ଆଦି ପନ୍ଥା ଅବଲମ୍ବନ କରି ଗୋଟିଏ ଯୁକ୍ତିଯୁକ୍ତ କାର୍ଯ୍ୟକ୍ରମ ଓ ଶିକ୍ଷାଯୋଜନା ଆମେ ପ୍ରସ୍ତୁତ କରିପାରିବା ।

•

ପରିଶେଷରେ ରୁଷ ଦେଶର ପ୍ରଖ୍ୟାତ ଅର୍ଥନୀତି ବିଶାରଦ Strumilin ୧୯୨୫ ମସିହାରେ ୪୮ ପୃଷ୍ଠାବ୍ୟାପୀ ଯେଉଁ ପ୍ରବନ୍ଧ ଲେଖିଥିଲେ ତା'ର ଶେଷ ଅନୁଚ୍ଛେଦଟି ସ୍ମରଣୀୟ । ସେ ଜାତୀୟ ଶିକ୍ଷାର ଅର୍ଥନୈତିକ ଗୁରୁତ୍ୱ The Economic Significance of National Education in The Economics of Education, edited by E.A G. Robinson & J.E. Vaizey, (Macmillan, 1966) ଶୀର୍ଷକ ପ୍ରବନ୍ଧରେ ନିଜ ଦେଶର ଶିକ୍ଷା ଓ ଅର୍ଥନୈତିକ ବିକାଶମୂଳକ ଯୋଜନାର ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରିଥିଲେ ।

•

"With the planned methods of reconstructing the national economy on a new, socialist basis, it is essential to take account not only of powerful material factors in this revolution such as electrification, but also of less tangible effects such as national education, without which it would scarcely have been possible to carry out successfully the plan for electrification."



# ଶିକ୍ଷା ଏକ ସାଧନ, ସାମାଜିକ ପରିବର୍ତ୍ତନର

•

ଶିକ୍ଷା ସହିତ ସମାଜ ଅଙ୍ଗାଙ୍ଗୀ ଜଡ଼ିତ । ଉଭୟ ସମଧର୍ମୀ । ଶିକ୍ଷାର ଭୂମିକା ଗ୍ରହଣ କରିବା ସଙ୍ଗେ ସଙ୍ଗେ ସମାଜ ଶିକ୍ଷାକୁ ଏକ ସାଧନ ଭାବରେ ଗ୍ରହଣ କରିଥାଏ । ନିଜର ସୁରକ୍ଷା ଓ ଅଭିବୃଦ୍ଧି ପାଇଁ ସମାଜ ନିରବଚ୍ଛିନ୍ନଭାବରେ ଗତି କରୁଥାଏ । ଏହାର ପରୀକ୍ଷିତ ଓ ପ୍ରତିଷ୍ଠିତ ମୂଲ୍ୟବୋଧ ଗୁଡ଼ିକୁ ଅତୁଟ ରଖିବାକୁ ହେବ । ଏଥିପାଇଁ ବ୍ୟକ୍ତି-ବିଶେଷଙ୍କର ସାମାଜିକୀକରଣ ଆବଶ୍ୟକ । ବାଲ୍ୟାବସ୍ଥାରୁ ବୃଦ୍ଧାବସ୍ଥାଯାଏ ଶିକ୍ଷା ଚାଲୁଥିବ । ଶିକ୍ଷାର ଏହାହିଁ ହେଉଛି ଏକ ପ୍ରଧାନ କାର୍ଯ୍ୟ । ସେହି କାରଣରୁ ମୁଖ୍ୟତଃ ସମାଜର ସୃଷ୍ଟି କାଳରୁ ସମତାଳରେ ଶିକ୍ଷା ଓ ଶିକ୍ଷାୟତନର ପ୍ରତିଷ୍ଠା କରଯାଇଛି । କେବଳ ସେତିକି ନୁହେଁ, ସମାଜର ନିରବଚ୍ଛିନ୍ନ ଗତିରେ ଏହାକୁ ନୂତନ ରୂପରେଖ ଦେବାର ଆବଶ୍ୟକତା ଅନୁଭୂତ ହୁଏ । ଅଚଳ ଚଳଣିକୁ ଛାଡ଼ିଦିଆଯିବ । ପୁରାତନ ମୂଲ୍ୟବୋଧର ନବୀକରଣ କରାଯିବ । ନୂତନ ମୂଲ୍ୟବୋଧର ସୃଷ୍ଟି କରାଯିବ । ସେସବୁକୁ ଆତ୍ମସ୍ଥ କରି ନିଆଯିବ । ଏହାହିଁ ସାମାଜିକ ପୁନର୍ଗଠନ । ବର୍ତ୍ତମାନ ସମୟରେ ଏହା ମଧ୍ୟ ଶିକ୍ଷାର ଅନ୍ୟତମ ପ୍ରଧାନ କାର୍ଯ୍ୟ । କୌଣସି ଗୋଟିକୁ ବାଦଦେଇ ଅନ୍ୟକୁ କରାଗଲେ ସମାଜ ଅଚଳ ହୋଇ ପଡ଼ିବ । ଉଭୟ କାର୍ଯ୍ୟକୁ ସମାନୁପାତରେ ସମସାମୟିକ ଧାରା ସହିତ ସମତାଳ ରକ୍ଷା କରିପାରିଲେ ସମାଜ ସୁସଂଗଠିତ ହୋଇ ପାରିବ । ଏକ ମୁଖ୍ୟ ସାଧନ ଭାବରେ ଶିକ୍ଷାକୁ ଏକକାଳୀନ ଉଭୟ କର୍ତ୍ତବ୍ୟ ସମ୍ପାଦନ ପାଇଁ ଭୂମିକା ଗ୍ରହଣ କରିବାକୁ ପଡ଼ିବ । ସେହି ପରିପ୍ରେକ୍ଷୀରେ ଶିକ୍ଷା ସେବାଭିତ୍ତିକ ଓ ଏକ ମାନବିକ ଅଧିକାର ହେବା ସଙ୍ଗେ ସଙ୍ଗେ ମାନବିକ ସମ୍ବଳ ସୃଷ୍ଟିରେ ପୁଞ୍ଜିଲଗାଣ ହୋଇପାରିବ ।

•

ଶିକ୍ଷାନୁସନ୍ଧାନୀଗଣ ଯେଉଁ ସିଦ୍ଧାନ୍ତ ପୋଷଣ କରିଛନ୍ତି ତାହା ଏଠାରେ ସ୍ମରଣୀୟ । ଏହି ସିଦ୍ଧାନ୍ତ ସମାଜତତ୍ତ୍ୱାନୁକୂଳ ଅଟେ । ତାହା ହେଉଛି ଯେ କୌଣସି ଏକ ସମାଜର ସ୍ଥିତି ଏହାର ଶିକ୍ଷା ପଦ୍ଧତିକୁ ପ୍ରଭାବିତ କରିଥାଏ ଓ ପଶ୍ଚାତ୍ତରରେ କୌଣସି ଏକ ଦେଶର ଶିକ୍ଷାପଦ୍ଧତି ସେ ଦେଶର ସାମାଜିକ ସ୍ଥିତିକୁ ପ୍ରଭାବିତ କରେ । ବସ୍ତୁତଃ ସମାଜ ଓ ଶିକ୍ଷାୟତନ ପରସ୍ପର ମଧ୍ୟରେ ଘାତ-ପ୍ରତିଘାତ ପ୍ରଭାବ ପକାଇଥାନ୍ତି ।

ଉନ୍ନତ ସମାଜ ଫଳରେ ପ୍ରଗତିଶୀଳ ଶିକ୍ଷାବ୍ୟବସ୍ଥା ସମ୍ଭବ ହୁଏ ଓ ଶିକ୍ଷାବ୍ୟବସ୍ଥା ପ୍ରଗତିଶୀଳ ହେବା ଫଳରେ ସମାଜକୁ ଅଧିକ ଉନ୍ନତ କରିବାରେ ସହାୟକ ହୁଏ । ଏହିପରି ଅଭିବୃଦ୍ଧିର ବୃତ୍ତ ଉଭୟ ମଧ୍ୟରେ କାର୍ଯ୍ୟକରେ । ପରସ୍ପରର ସହାୟକ ହୋଇ ସମୃଦ୍ଧି ପଥରେ ଆଗେଇ ଚାଲେ । ଏଠାରେ ଏହି ଉଭୟ ମଧ୍ୟରେ ସମ୍ପର୍କକୁ କାର୍ଯ୍ୟକାରୀ କରିବା ପାଇଁ ନୀତିନିର୍ଦ୍ଧାରଣ ଓ ପ୍ରଶାସନିକ ପଦକ୍ଷେପ ନେବାକୁ ପଡ଼ିବ । ସମାଜ ଓ ଶିକ୍ଷା କାଳ କାଳ ସମୀପରେ ରହିପାରନ୍ତି । କିନ୍ତୁ ଉଭୟ ମଧ୍ୟରେ ପ୍ରଭାବବିସ୍ତାରକାରୀ କାର୍ଯ୍ୟ ହୋଇ ନପାରେ । ଆମ ଗାଉଁଲି ଭାଷାରେ ଏହା "ଦେଢ଼ଶୁର-ଭାଇବୋହୂ" ସମ୍ପର୍କହିଁ ହେବ । ଏପରି ସ୍ଥିତିରେ ସମାଜ ଓ ଶିକ୍ଷା ପରସ୍ପରକୁ ପ୍ରଭାବିତ କରିବା ପାଇଁ ଅଧିକ ସମୟ ଲାଗିବ । ପ୍ରଭାବର ଫଳ ସହଜରେ ଆମ ଦୃଷ୍ଟିକୁ ଆସି ନପାରେ ।

ଏଥିରୁ ଏହା ସ୍ପଷ୍ଟ ହୁଏ ଯେ ଶିକ୍ଷା ସାମାଜିକ ପରିବର୍ତ୍ତନର ଏକ ସାଧନ । ବିଶେଷକରି ସାମାଜିକ ପରିବର୍ତ୍ତନ ଏକ ଜଟିଳ ପ୍ରକ୍ରିୟା । ଏହା ମଧ୍ୟ ସମୟ-ସାପେକ୍ଷ । ବର୍ତ୍ତମାନର ପରସ୍ପର ସଂପୃକ୍ତ ଜଗତରେ ପରିବର୍ତ୍ତନ, ଏପରିକି କ୍ଷିପ୍ରତର ପରିବର୍ତ୍ତନର ଆଶା ବୃଦ୍ଧିପାଇଛି । ସେତିକିନୁହେଁ, ପରିବର୍ତ୍ତନ ସହାୟକ ଜ୍ଞାନ ଓ କୌଶଳ ମନୁଷ୍ୟର ହାତ ପାହାନ୍ତାରେ ଅଧିକରୁ ଅଧିକ ମିଳି ପାରୁଛି । ତେଣୁ ମନୁଷ୍ୟ ଆଜି ସେ ସବୁର ବ୍ୟବହାର କରିବାପାଇଁ ବ୍ୟାକୁଳ । ସ୍ୱାସ୍ଥ୍ୟସେବା, ଉତ୍ପାଦନ, ଯାନ-ବାହନ ଆଦି ବିଭିନ୍ନ ସାଧନ ମଧ୍ୟରେ ଶିକ୍ଷା ଅତି ବ୍ୟାପକ ଓ ବିଭିନ୍ନ ମାଧ୍ୟମଦ୍ୱାରା ଏହା ସର୍ବାଧିକସଂଖ୍ୟକ ଲୋକଙ୍କ ସମୀପରେ ପହଞ୍ଚିପାରୁଛି । ଏହା ମଧ୍ୟ ଏକ ମାନବିକ ପ୍ରକ୍ରିୟା । ତେଣୁ ଶିକ୍ଷାହିଁ ସାମାଜିକ ପରିବର୍ତ୍ତନର ଏକ ମୁଖ୍ୟ ସାଧନ । ଏହି ସ୍ୱୀକାରୋକ୍ତି 'କୋଠାରୀକମିଶନ' ପ୍ରଭୃତି ବହୁ ବିଶେଷଜ୍ଞ ସଂଗଠନଙ୍କ ଠାରୁ ମିଳିଛି ।

ଏହା ଏକ ଆଧୁନିକ ବିଚାରଧାରା ହୋଇଥିଲେହେଁ ସାମାଜିକ ପରିବର୍ତ୍ତନର ଆୟୁଧରୂପେ ଶିକ୍ଷାକୁ ବ୍ୟବହାର କରିବାର ଚିନ୍ତା କେବଳ ଆଜିକାର ନୁହେଁ । ଏକଛତ୍ରବାଦୀ ରାଜନୀତି ଦର୍ଶନରେ ଏହାର ସ୍ପଷ୍ଟ ପ୍ରମାଣ ମିଳେ । ଶିକ୍ଷା ସେଠି ହାତବାରିଣି । ହୁକୁମ୍‌ନାମା ଜାରି କରିବାର ଅହଁକାରୀ ଓ ଉନ୍ମତ୍ତ ରାଷ୍ଟ୍ରଦୂତ । ଗଣତନ୍ତ୍ରକୁ ସୁହାଇଲା ଭଳି ଶିକ୍ଷାର ଗଣତାନ୍ତ୍ରିକ ଦର୍ଶନ, ପ୍ରଣାଳୀ, ପ୍ରଶାସନ ଆଦି ସ୍ଥିର କରାଯାଇଛି । ବହୁ ଦାର୍ଶନିକ, ଚିନ୍ତାନାୟକ ଓ ସମାଜ ସଂସ୍କାରକ ଅନୁରୂପ ଶିକ୍ଷାପ୍ରଣାଳୀ

ଶିକ୍ଷାପ୍ରଣାଳୀ ଉଦ୍ଭାବନ କରିଛନ୍ତି । ଆଜି ନୁହେଁ, ବହୁପୂର୍ବେ ଗ୍ରୀସ ପ୍ରଭୃତି ପାଶ୍ଚାତ୍ୟ ଦେଶରେ ଶିକ୍ଷାକୁ ଏକ ସାଧନ ଭାବରେ ବ୍ୟବହାର କରାଯାଇଛି । ଭାରତରେ ଆଧ୍ୟାତ୍ମିକ ଚିନ୍ତାନାୟକ ଗାନ୍ଧୀ, ରବୀନ୍ଦ୍ରନାଥ, ଅରବିନ୍ଦ, ବିବେକାନନ୍ଦ, କୃଷ୍ଣମୂର୍ତ୍ତି, ମାଳବ୍ୟ, ଜାକୀର ହୁସେନ, ଗୋପବନ୍ଧୁ ପ୍ରମୁଖ ସ୍ୱ ସ୍ୱ ଦର୍ଶନର ସଫଳ ରୂପାୟନ ପାଇଁ ନିର୍ଦ୍ଦିଷ୍ଟ ଶିକ୍ଷା-ଯୋଜନା ପ୍ରଣୟନ କରିଛନ୍ତି ଓ ଏହାର ପ୍ରୟୋଗଶାଳା ରୂପେ ଏକ ଏକ କ୍ଷେତ୍ର ବାଛିନେଇଛନ୍ତି । ତତ୍କାଳୀନ ଶିକ୍ଷାବ୍ୟବସ୍ଥାରେ ସେମାନେ ନିଶ୍ଚିତଭାବରେ ଗଭୀର ଅସନ୍ତୋଷ ପ୍ରକାଶ କରିଛନ୍ତି । ଏହି ଅସନ୍ତୋଷରୁ ଜନ୍ମ ନେଇଛି ସେମାନଙ୍କ ସ୍ୱପ୍ନ ଓ ସେଥିରୁ ସୃଷ୍ଟି ହୋଇଛି ସମାଜ ଓ ଶିକ୍ଷାର ନିର୍ଦ୍ଦିଷ୍ଟ ପରିକଳ୍ପନା । ଜାତୀୟତାରେ ସେମାନେ କେବଳ ଉଦ୍ଭାସିତ ହୋଇ ନାହାନ୍ତି । ସ୍ୱାଧୀନ ଭାରତର ପରିବର୍ତ୍ତିତ ପରିସ୍ଥିତି ଅନୁଯାୟୀ ସମାଜ ଓ ଶିକ୍ଷାର ପୁନର୍ଗଠନ ପାଇଁ ଆନ୍ତରିକତା ଓ ନିଷ୍ଠା ପ୍ରକାଶ ପାଉଛି । ସେବା-କେନ୍ଦ୍ରିକ ଶିକ୍ଷାର ଯୋଜନା ସତ୍ୟବାଦୀରେ ପ୍ରୟୋଗ କରାଯାଇଛି । ତତ୍କାଳୀନ ପାରମ୍ପରିକ ସମାଜର ପରିବର୍ତ୍ତନ ଏହାର ମୁଖ୍ୟ ଆଭିମୁଖ୍ୟ ହୋଇଛି । ଗାନ୍ଧୀ ଶିକ୍ଷାନୀତିର ବ୍ୟାପକ ପ୍ରୟୋଗ ପାଇଁ ବିନୋବା "ଆଚାର୍ଯ୍ୟକୁଳ" ପ୍ରତିଷ୍ଠା କରିଛନ୍ତି । ତାଙ୍କ ସୂତ୍ର ହେଉଛି ଗୁରୁ ଶିଷ୍ୟପରାୟଣ ହେବେ, ଶିଷ୍ୟ ଗୁରୁପରାୟଣ ହେବେ, ଉଭୟ ବିଦ୍ୟାପରାୟଣ ହେବେ ଓ ପରିଶେଷରେ ସେ ବିଦ୍ୟା ସେବାପରାୟଣ ହେବ । ଏହାଦ୍ୱାରା ଶ୍ରେଣୀ—କୋଠରୀ ଓ ସମାଜ ପରସ୍ପର ସଂପୃକ୍ତ ହେବ ଓ ସାମାଜିକ ପରିବର୍ତ୍ତନରେ ଶିକ୍ଷା ସହାୟକ ହେବ । Wilfred Wellock ଗାନ୍ଧୀଜୀଙ୍କୁ ଜଣେ ସମାଜ-ବିପ୍ଳବୀ ଭାବରେ ଚିତ୍ରଣ କରି ତାଙ୍କ ପ୍ରବର୍ତ୍ତିତ ଶିକ୍ଷା ଯେ ନୀରବ ସାମାଜିକ ବିପ୍ଳବର ଆୟୁଧ; ଏହା ପ୍ରତିପାଦନ କରିଛନ୍ତି, ତାଙ୍କ ରଚନାର ବିଶ୍ଳେଷଣରୁ । ସତ୍ୟ, ଅହିଂସା ଓ ନ୍ୟାୟାନୁମୋଦିତ ସମାଜ ପ୍ରତିଷ୍ଠାରେ ଏହା ସହାୟକ । ଏହାହିଁ ତାଙ୍କ ସ୍ୱପ୍ନର ଶୋଷଣରହିତ ସହଯୋଗୀ ସମାଜ । ଭାରତୀୟ ଶିକ୍ଷାରେ ଏ ସବୁର ପ୍ରୟୋଗ ଫଳରେ ଗୋଟିଏ ସିଦ୍ଧାନ୍ତ ବାରମ୍ବାର ସୁସ୍ପଷ୍ଟ ହେଲପରି ଜଣାଯାଏ । ତାହା ହେଉଛି ଗୋଟିଏ ଅସମ ଓ ଅନ୍ୟାୟର ସମାଜରେ ଏକ ଗଣତାନ୍ତ୍ରିକ ଓ ସମଶିକ୍ଷା ବ୍ୟବସ୍ଥା ଆଶା କରିବା ବିଡ଼ମ୍ବନା । ସେଥିପାଇଁ ବୁନିୟାଦୀ ଶିକ୍ଷା ବ୍ୟବସ୍ଥାର ଦୁଇଟି ଲକ୍ଷ୍ୟ ଏକ ସଙ୍ଗରେ ସାଧନ କରିବାର ଆଶା ରଖାଯାଇଥିଲା, ତାହା ହେଉଛି (୧) ସମନ୍ୱିତ ବ୍ୟକ୍ତିତ୍ୱର ଗଠନ ଓ (୨) ସମନ୍ୱିତ ସମାଜର ଗଠନ । ପରବର୍ତ୍ତୀ କାଳରେ ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ ବିପ୍ଳବର ଅନ୍ୟତମ ସାଧନ ତଥା ସାଧ୍ୟ

ଭାବରେ ଶିକ୍ଷାକୁ ଗ୍ରହଣ କରାଯାଇଛି । କୋଠାରୀ କମିଶନ ମଧ୍ୟ ଶିକ୍ଷାକୁ ଏକ ବିପ୍ଳବିକ ପରିବର୍ତ୍ତନର ବଡ଼ ଅସ୍ତ୍ର ଭାବରେ ଗ୍ରହଣକରି ବିଭିନ୍ନ ସୁପାରିଶ କରିଛନ୍ତି ।

ପରୀକ୍ଷା ଓ ପ୍ରୟୋଗ ସତ୍ତ୍ୱେ ଆଶାନୁରୂପ ପରିବର୍ତ୍ତନ ଲକ୍ଷ୍ୟ ନ କରିବା ନୈରାଶ୍ୟ-ଜନକ ଅଟେ । ସମାଜର ପରିବର୍ତ୍ତନ ପାଇଁ ଆମେ ଆଶାୟୀ ହୋଇଥିଲେହେଁ ଓ ବିଭିନ୍ନ ପଦକ୍ଷେପ ନେଉଥିଲେହେଁ ଶିକ୍ଷାପଦ୍ଧତିର ସହଯୋଗ ନେଉ ନଥିବା ଏକ ନିଶ୍ଚିତ ବିଡ଼ମ୍ବନା । ଶିକ୍ଷକସମାଜକୁ ସେ ଦିଗରେ ସମଧିକ ଅନୁପ୍ରାଣିତ କରାଇ ନ ପାରିବା ଆମର ଅନ୍ୟତମ ବ୍ୟର୍ଥତା । ରାଜନୈତିକ ଦୃଷ୍ଟିରୁ ସବୁଶ୍ରେଣୀର ଶିକ୍ଷକ ଆଜି ସଚେତନ ଓ ସକ୍ରିୟ । କର୍ତ୍ତୃପକ୍ଷଙ୍କ ସହିତ ନିଜ ନିଜ ଦାବୀ ପୂରଣ ପାଇଁ ସେମାନେ ଧମକ, ଧାରଣା ଓ ଧର୍ମଘଟ କରିପାରୁଛନ୍ତି । ସେମାନେ ସଂଗଠିତ ଓ ଆଗକାଳପରି ସେମାନଙ୍କ ଜୀବନ ଯାତ୍ରା ସରଳ ଓ ସହଜ ନୁହେଁ । ସେମାନେ ନାନା ନିୟମକାନୁନରେ ଧରାବନ୍ଧା ହୋଇଛନ୍ତି । ପୂର୍ବକାଳରେ ଏହି ସକ୍ରିୟତାର ସ୍ୱୀକୃତି ନ ଥିଲା । କିନ୍ତୁ ସଂପ୍ରତି ଏହା ଧରାବନ୍ଧା ନିୟମରେ ପଡ଼ି ଯାଇଛି । ଭାରତରେ ଶିକ୍ଷାର ନୀତି ଓ ନିଷ୍ପତ୍ତି ମୁଖ୍ୟତଃ ରାଜନୈତିକ ନିଷ୍ପତ୍ତି ଓ ସେଥିରେ ଶିକ୍ଷକ ତଥା ବିଶେଷଜ୍ଞଙ୍କର ନିଷ୍ପତ୍ତି ବହୁଭାଗରେ ପ୍ରତିଫଳିତ ହୋଇ ନ ଥାଏ । ଏହି ପରିସ୍ଥିତିର ପର୍ଯ୍ୟାଲୋଚନା କରି J. P. Nayak ତାଙ୍କର ମରଣୋତ୍ତର ଏକ ପ୍ରକାଶନରେ Education Commission & Afterରେ କ୍ଷୋଭ ପ୍ରକାଶ କରନ୍ତି ଯେ କୌଣସି ରାଜନୈତିକ ଦଳ ବସ୍ତୁତଃ ଶିକ୍ଷାସମସ୍ୟା ପ୍ରତି ଗୁରୁତର ଭାବରେ ମନୋନିବେଶ କରି ନାହାନ୍ତି ଓ ତାଙ୍କ ନିଜର ସୁଚିନ୍ତିତ ତଥା ଦୀର୍ଘ ମିଆଦି ଶିକ୍ଷାନୀତି ପ୍ରଣୟନ କରି ନାହାନ୍ତି ।... ... ...ସାଧାରଣ ରାଜନୀତିଜ୍ଞଙ୍କର ମଧ୍ୟ ପର୍ଯ୍ୟାପ୍ତଭାବରେ ଶିକ୍ଷାସାକ୍ଷରତା "education literacy" ନାହିଁ, କାରଣ ରାଜନୀତିଜ୍ଞ ଓ ଶିକ୍ଷାବିତଙ୍କ ମଧ୍ୟରେ ମୁହାଁମୁହିଁ ମନଖୋଲା କଥୋପକଥନର ପରିସର ଅତି ସୀମିତ । ଏହି କାରଣରୁ ଏକାଧିକ ଶିକ୍ଷା କମିଶନଙ୍କର ବହୁମୂଲ୍ୟ ସୁପାରିଶ କାର୍ଯ୍ୟକାରୀ କରାଯାଇ ପାରିନାହିଁ । ଏପରି ସ୍ଥଳରେ ଆମେ ବର୍ତ୍ତମାନ ସାମାଜିକ ପରିବର୍ତ୍ତନର ଗତି ଓ ପ୍ରକୃତି ସମ୍ବନ୍ଧରେ ବିଚାର କରିବା ।

## ସାମାଜିକ ପରିବର୍ତ୍ତନର ଗତି ଓ ପ୍ରକୃତି

ଘାତପ୍ରତିଘାତରେ ପରସ୍ପର ସମ୍ପୃକ୍ତ ମନୁଷ୍ୟମାନଙ୍କ ଦ୍ୱାରା ସମାଜର ଗଠନ । ପରସ୍ପର ସମ୍ପର୍କାନ୍ୱିତ ମନୁଷ୍ୟମାନେ ଏକତ୍ର ହୋଇ ସମାଜ ଗଠନ କରନ୍ତି । ସ୍ନେହ,

ମମତା, ଆଦାନପ୍ରଦାନ ଆଦି ଏହି ସମ୍ପର୍କକୁ ସୁଦୃଢ଼ କରେ । ଏହି ସମ୍ପର୍କରୁ ସୃଷ୍ଟି ହୁଏ ଅନୁଷ୍ଠାନ, ମୂଲ୍ୟବୋଧ, ଭୂମିକା, କୌଶଳ ଓ ପଦବୀ । ଗ୍ରଳିଚଳନ, ଆଗ୍ରବିଗ୍ରର ପ୍ରବାହକୁ ସଂସ୍କୃତି ଆଖ୍ୟା ଦିଆଯାଏ । ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନ ମଧ୍ୟରେ ପାର୍ଥକ୍ୟ କରଗଲେ ହେଁ ଉଭୟ ପ୍ରକାର ପରିବର୍ତ୍ତନ ପରସ୍ପର ଜଡ଼ିତ । ଧାର୍ମିକ, ଆଦର୍ଶଗତ, ଅର୍ଥନୈତିକ, ଶିଳ୍ପ ଓ କାରିଗରି ବିଦ୍ୟା ସମ୍ପୃକ୍ତ ବହୁବିଧ ଉପାଦାନ ଦ୍ୱାରା ସାମାଜିକ ପରିବର୍ତ୍ତନର ସୂତ୍ରପାତ ହୁଏ । ଏଥିମଧ୍ୟରେ କେଉଁ ଉପାଦାନଟି ଅନ୍ୟ କାହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଏହା କହିବା ସମ୍ଭବ ନୁହେଁ । ଏସବୁ ଓ ଆହୁରି ଅନ୍ୟାନ୍ୟ ଉପାଦାନର ମିଳିତ ପ୍ରୟୋଗରେ ସାମାଜିକ ପରିବର୍ତ୍ତନ ସାଧିତ ହୁଏ ବୋଲି କହିହେବ । ସେଥିଯୋଗୁଁ ଜଣେ ପ୍ରଖ୍ୟାତ ସମାଜତତ୍ତ୍ୱବିତ୍ ଯଥାର୍ଥରେ ମତ ଦିଅନ୍ତି, "ପରିବର୍ତ୍ତନର ସମ୍ଭାବ୍ୟ ଉତ୍ସଗୁଡ଼ିକ ଏକାଧିକ" । କାରଣ ନୁହେଁ, ଉପାଦାନହିଁ ପରିବର୍ତ୍ତନର ଉତ୍ସ । ଏହା ଏକ ନୁହେଁ, ଏକାଧିକ ।

ପରିବର୍ତ୍ତନ ଅଳ୍ପ ହେଉ, ଅଧିକ ହେଉ, ସବୁ ସମାଜର ଲକ୍ଷଣ । ଉଲ୍ଲିଖିତ ବିଭିନ୍ନ ଉପାଦାନର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ଯୋଗୁଁ ପରିବର୍ତ୍ତନ ଘଟିଥାଏ । ଆମ ଆଦିବାସୀ ଓ ଗ୍ରାମାଞ୍ଚଳର ଦାରିଦ୍ର୍ୟ–ପ୍ରପୀଡ଼ିତ ସମାଜ ଏହି ପରିବର୍ତ୍ତନର ପରିସର ବହିର୍ଭୂତ ନୁହେଁ । କାଳକାଳର ଏକ ଶାଶ୍ୱତ ସ୍ଥିରତା ଏସବୁ ସମାଜର ଗତି ଓ ପ୍ରକୃତି ନୁହେଁ । ଅବଶ୍ୟ ପରିବର୍ତ୍ତନର ମାତ୍ରାରେ ପାର୍ଥକ୍ୟ ରହିଛି । ସାମାଜିକ ପରିବର୍ତ୍ତନକୁ ବୁଝିବା ପାଇଁ ଯେଉଁସବୁ ମନସ୍ତାତ୍ତ୍ୱିକ ଓ ସମାଜତାତ୍ତ୍ୱିକ ପ୍ରକ୍ରିୟାଗୁଡ଼ିକ ସେମାନଙ୍କର ଜଟିଳ ପରିପ୍ରକାଶ ମାଧ୍ୟମରେ କାର୍ଯ୍ୟ କରୁଛି ସେସବୁକୁ ବୁଝିବା ଏକାନ୍ତ ଆବଶ୍ୟକ । ଐତିହାସିକ ପ୍ରକ୍ରିୟାର ସମ୍ପୂର୍ଣ୍ଣ ଜ୍ଞାନ ମଧ୍ୟ ଆବଶ୍ୟକ । ଏସବୁ ଦୃଷ୍ଟିରୁ ଦେଖିବାକୁ ଗଲେ, ସାମାଜିକ ପରିବର୍ତ୍ତନ ସମ୍ପନ୍ନ ହୁଏ, ବ୍ୟକ୍ତି ବିଶେଷଙ୍କ ଜୀବନରେ କିମ୍ବା ଗୋଷ୍ଠୀରେ କିମ୍ବା ଏହି ଉଭୟଙ୍କ ମଧ୍ୟରେ । ପରିବର୍ତ୍ତନୀୟ ବ୍ୟକ୍ତିବିଶେଷ, ଗୋଷ୍ଠୀ ବା ସମାଜର ପୂର୍ବାଭାସ ବା ଫଳ ସ୍ୱରୂପ ସାମାଜିକ ପରିବର୍ତ୍ତନ ସଂଘଟିତ ହୁଏ ।

ଏହି ପରିପ୍ରେକ୍ଷୀରେ ସମାଜ ସଂକ୍ରାନ୍ତ ଅଧ୍ୟୟନରୁ ଜଣାପଡ଼େ ଯେ, ଆମ ଦେଶର ସାମାଜିକ ପରିବର୍ତ୍ତନର ଗତି ଓ ପ୍ରକୃତି ଅନିଶ୍ଚିତ । ପାରମ୍ପରିକତା ଓ ଆଧୁନିକତା ମଧ୍ୟରେ ଏହା ଦୋଦୁଲ୍ୟମାନ । ସୁବିଧାବାଦୀ ରାଜନୈତିକ କ୍ଷମତାଭିଳାଷୀ ବ୍ୟକ୍ତିଗଣ ପାରମ୍ପରିକତାର ମୋହରୁ ନିଜକୁ ମୁକ୍ତ କରି ପାରି ନାହାନ୍ତି । ଜାତିଆଣ ପ୍ରଥା, ଛୁଆଁ

ଅଛୁଁଆ ଭବ, ସଙ୍କୀର୍ଣ୍ଣତା ଆଦି ପରମ୍ପରାଗତ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଏଯାଏ ପୂରାପୂରି ଛାଡ଼ିନାହିଁ, ଅଥଚ ଆଲୋଚନା ଓ ସଭାସମିତିରେ ଏସବୁର ବିରୁଦ୍ଧାଚରଣ କରିବାରେ ଆମେ ବାବଦୁକ ହୋଇ ପଡୁଛୁଁ । ଏହା ଫଳରେ ଆମ ସମ୍ବିଧାନ ପ୍ରତିଶ୍ରୁତ ଧର୍ମ ନିରପେକ୍ଷତାର ସହାୟକ ସମାଜ ଗଠନରେ ବାଧା ଉପୁଜୁଛି । ଗ୍ରହ ନକ୍ଷତ୍ର ସମ୍ବନ୍ଧୀୟ ଆଧୁନିକ ବିଜ୍ଞାନ ଆମ ପାଠ୍ୟକ୍ରମ ଅନ୍ତର୍ଗତ ହୋଇଛି । କିନ୍ତୁ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣରେ ଆମେ ସ୍କୁଲ କଲେଜ ବନ୍ଦ କରିବାରେ ଲାଗିଛୁ । ଇନ୍ଦ୍ରଧନ, ଘଡ଼ଘଡ଼ି, ହଇଜା ଆଦି ସମ୍ବନ୍ଧରେ ଆମେ ନାହିଁ ନଥିବା ଅଦ୍ଭୁତ ଧାରଣା ପୋଷଣ କରୁଛୁଁ । କୁସଂସ୍କାର–ମୁକ୍ତ ସମାଜ ଗଠନରେ ଆମେ ଏକନିଷ୍ଠ ହୋଇ ପାରୁନାହିଁ । ବିଜ୍ଞାନ ଓ କାରିଗରି ବିଦ୍ୟାକୁ ଆମେ କେତେକାଂଶରେ ଗ୍ରହଣ କରି ଗଲୁଣି କିମ୍ବା ଗ୍ରହଣ କରିବାକୁ ଆମେ ପାଶ୍ଚାତପଦ ହେଉନାହୁଁ । କିନ୍ତୁ ବିଜ୍ଞାନର ବାର୍ତ୍ତା ଓ ଆତ୍ମା ଆମ ମଧ୍ୟରେ ପ୍ରବେଶ କରିପାରୁନାହିଁ । ଏପରିକି ଆମ ସ୍କୁଲ କଲେଜର ବରଣ୍ଡା ମାଡ଼ିନାହିଁ କହିଲେ ଚଳେ । ଆମ ଜୀବନର ମୂଲ୍ୟବୋଧ ପ୍ରତି ଆମ ପ୍ରଚେଷ୍ଟା ପୂରାପୂରି ପାରମ୍ପରିକ ରହିଛି । ସମସ୍ତ ସାମାଜିକ କ୍ରିୟା ଓ ପ୍ରତିକ୍ରିୟା ଏହି ଦୋଷରୁ ମୁକ୍ତ ନୁହେଁ । ବିଜ୍ଞାନର ବିଜୟ ବାର୍ତ୍ତା ପ୍ରଚାର କରୁଥିବା ଆମ କର୍ମୀ, ନେତା, ଶିକ୍ଷକ ଓ ନିୟାମକଗଣ ସେହି ଧରାବନ୍ଧା ଜାଲରେ ନିଜ ମନକୁ ଅବରୁଦ୍ଧ କରିଦେଇଛନ୍ତି । ନିର୍ବୈୟକ୍ତିକତା, ଉନ୍ମୁକ୍ତତା, ଅନୁସନ୍ଧାନ ଆଦି ବିଜ୍ଞାନ–ସହାୟକ ସଦ୍‌ଗୁଣ ଆମ ସଙ୍ଗଠନ, ସଂସ୍ଥା ଓ ସମାଜରେ ଆପାଙ୍‌କ୍ତେୟ ହୋଇ ପଡ଼ି ରହିଛି । ବହୁ କାଳରୁ ପରୀକ୍ଷିତ ଶାଶ୍ୱତ ମୂଲ୍ୟବୋଧ ଆମ ସଂସ୍କୃତିର ଗୌରବାବହ ସ୍ତମ୍ଭ ହୋଇ ରହିଛି । ଅହିଂସା, ସ୍ନେହ, କରୁଣା, ପ୍ରେମ, ମୈତ୍ରୀ, ସହନଶୀଳତା, ଉଦାରତା, ବିଶ୍ୱଭ୍ରାତୃତ୍ୱ ଆଦି ସେ ସବୁ ମୂଲ୍ୟବୋଧ ମଧ୍ୟରୁ କେତୋଟି ପରିବର୍ତ୍ତନର ସ୍ରୋତରେ ନୂତନ ସାମାଜିକ ଚେତନାର ଅଭ୍ୟୁଦୟ ପରିପ୍ରେକ୍ଷୀରେ କ୍ରମେ ଉଭେଇ ଯାଉଛି । ବିଶ୍ୱ ଦରବାରରେ ଯାହା ଆମର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଛି ଓ କରୁଥାନ୍ତା ସେସବୁ ଆମ ଅସ୍ଥିମଜ୍ଜାରୁ ଅପସରି ଯାଉଛି । ସତ୍ୟ ଯୁଗର କାହାଣୀ ପରି ସେସବୁ ଆଇମାଆଙ୍କ ଗପ ହୋଇଛି ଓ ଆଗାମୀ ଯୁଗର ବଂଶଧରଙ୍କ ପାଇଁ କପୋଳକଳ୍ପିତ ହୋଇ ରହୁଛି । ଆମେ ଅଶ୍ରୁବିମୋଚନ କରୁଛୁ, କିନ୍ତୁ ସେ ବାବଦରେ ଆମ ଚେତନା ଅତି କ୍ଷୀଣ ହୋଇ ଯାଉଛି । ସେଥି ଯୋଗୁଁ ଆମ ସମାଜ ବିଜ୍ଞାନୀ, ଶିକ୍ଷା ଗୁରୁ ଓ ଦାର୍ଶନିକ-ଗଣ ସାମାଜିକ ପରିବର୍ତ୍ତନର ଲକ୍ଷ୍ୟ ସମ୍ବନ୍ଧରେ ସ୍ପଷ୍ଟ ହୋଇପାରୁ ନାହାନ୍ତି । ମୁଖ୍ୟତଃ ଏକ ପାରମ୍ପରିକ ସମାଜ ବ୍ୟବସ୍ଥାର ମୂଳପତ୍ତନ ଉପରେ ଆଧୁନିକୀକରଣର ଛାତ ପକାଇ

ପାରିବୁ କି ନାହିଁ ଏହାହିଁ ଆମ ଆଗରେ ଜଟିଳ ପ୍ରଶ୍ନ । ଏଥିପାଇଁ ଆମକୁ ଭାରତୀୟ ସମାଜର ମୂଳ ପ୍ରକୃତି ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ ।

ଭାରତୀୟ ସମାଜ ଜାତିପ୍ରଥାନୁସାରେ ବର୍ଗୀକୃତ । ଏହା ସହିତ ଜଡ଼ିତ ହେଉଛି ବୈଷମ୍ୟ । ହୁମାୟୁନ କବିର Education in free India ଶୀର୍ଷକ ପୁସ୍ତକରେ ପ୍ରମାଣ କରନ୍ତି ଯେ ଯେଉଁ ସମାଜରେ ସ୍ତରୀକରଣ ( Stratification ) ଯେତେ ଉଚ୍ଚତର ସେଠି ତଳୁ ଉପରକୁ ବୈଷମ୍ୟ ସେତେ ବେଶୀ । ବର୍ଣ୍ଣବୈଷମ୍ୟ ଯୋଗୁଁ ତଳୁ ଉପରକୁ ପ୍ରବେଶ କରିବା ସେତେ କଠିନ । ଉଦାହରଣ ସ୍ୱରୂପ ଜଣେ ଶୂଦ୍ରଙ୍କ ପାଇଁ ଆତ୍ମୋନ୍ନତି ପଥରେ ଘୋର ଅନ୍ତରାୟ ରହିଛି । V. T. Patil and B. C. Patil, Problems in Indian Education ( 1982 ) ପୁସ୍ତକରେ ପାଶ୍ଚାତ୍ୟ ମୁକ୍ତ ସମାଜ ତୁଳନାରେ ଆମ ସମାଜକୁ ରୁଦ୍ଧ ସମାଜ ବୋଲି ବର୍ଣ୍ଣନା କରି କହନ୍ତି ଯେ, ଜନ୍ମ ଅନୁସାରେ ବ୍ୟକ୍ତିର ସାମାଜିକ ପଦବୀ ନିରୂପିତ ହୁଏ ।

ତେଣୁ ଗଣତନ୍ତ୍ର ଓ ସମାଜବାଦର ମୂଲ୍ୟବୋଧ ତଥା ବିଜ୍ଞାନର ଆତ୍ମା ଯାହାକି ସତ୍ୟାନୁସନ୍ଧାନ ପାଇଁ ଗୁରୁତ୍ୱ ଦିଏ, ଏସବୁ ଆମ ସମାଜ ପାଇଁ ଅନୁକୂଳ ନୁହେଁ । ଗଣତନ୍ତ୍ର କହିଲେ ସ୍ୱାଧୀନତା, ନ୍ୟାୟ, ଆଇନର ଶାସନ ଓ ଜାତି, ବର୍ଣ୍ଣ ତଥା ଗୋଷ୍ଠୀ ନିର୍ବିଶେଷରେ ସମତାକୁ ବୁଝାଏ । ଗଣତାନ୍ତ୍ରିକ ଜୀବନଧାରର ଏସବୁ ମୂଳମନ୍ତ୍ର ଓ ଆମ ସମାଜ ଏହାର ବିରୁଦ୍ଧାଚରଣ କରେ । ଧର୍ମର ପ୍ରାଧାନ୍ୟ ସାମାଜିକ ସମସ୍ୟାର ସମାଧାନରେ ଧର୍ମନିରପେକ୍ଷ ମନୋଭବ ପୋଷଣ କରିବାରେ ଅନ୍ତରାୟ ହୁଏ । ଉଲ୍ଲିଖିତ ଲେଖକ ଦ୍ୱୟ S. C. Dubey ଙ୍କ Formulating Goals of Change ଶୀର୍ଷକ ଲେଖାରୁ ଉଦ୍ଧାର କରି କହନ୍ତି ଯେ ଶାନ୍ତିପୂର୍ଣ୍ଣ ଉପାୟରେ ଗଣତାନ୍ତ୍ରିକ ସାମ୍ୟବାଦର ପ୍ରତିଷ୍ଠା ଆମର ଲକ୍ଷ୍ୟହୋଇଥିବାରୁ ଆମ ସାମାଜିକ ସଂଗଠନକୁ ଅଣସାମ୍ପ୍ରଦାୟିକ ରୂପ ନେବାକୁ ପଡ଼ିବ, ଯଦ୍ୱାରା ବ୍ୟକ୍ତିବିଶେଷ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଦୂରରେ ଫିଙ୍ଗି ଦେବେ ଓ ସାମାଜିକ ଦାୟିତ୍ୱ ଗ୍ରହଣ କରିବେ । ଏ ବାବଦରେ ସମର୍ପିତ ଉଦ୍ୟମ କରାନଗଲେ ଆମର ଅର୍ଥନୈତିକ ପ୍ରଗତି ଓ କାରିଗରି ପରିବର୍ତ୍ତନ ଅସମ୍ଭବ ହୋଇପଡ଼ିବ ।

ଆହୁରି ମଧ୍ୟ ଭାରତଭଳି ଦରିଦ୍ର ଦେଶରେ ଆମେ ଜାତିପ୍ରଥା, କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଜାବୁଡ଼ି ଧରିଥିବା ଯାଏଁ ଆମର ସାର୍ଥକ ସାମାଜିକ ପରିବର୍ତ୍ତନ ସୁଦୂରପରାହତ । ଅତୀତ ଓ ବର୍ତ୍ତମାନ ପରସ୍ପର ସହାୟକ ନ ହୋଇ ଆମକୁ ଦୁଇ ବିପରୀତ ଦିଗରେ ଟଣାଟଣି କରି ଆମ ଗଣ୍ଠିରଚାକୁ ନଷ୍ଟ କରିଦେବେ । *Patil* ଗ୍ରନ୍ଥକାର ଦ୍ୱୟଙ୍କ ମତରେ ଯଦି ଆମ ସମାଜବ୍ୟବସ୍ଥା, ରାଜନୈତିକ ଓ ଅର୍ଥନୈତିକ ଅନୁଷ୍ଠାନ ତଥା ଲୋକମାନଙ୍କ ସଂସ୍କୃତିରେ ସୁଦୂରପ୍ରସାରୀ ପରିବର୍ତ୍ତନ କରାଯାଏ ତେବେ ଯାଇ ବାସ୍ତବ ପରିବର୍ତ୍ତନ ସମ୍ଭବ ହେବ ।

## ସାମାଜିକ ପରିବର୍ତ୍ତନ ପାଇଁ ଶିକ୍ଷା

ଶିକ୍ଷା ଏକମାତ୍ର ସାଧନ ନୁହେଁ, ଯଦିଓ ଏହା ଏକ ପ୍ରଧାନ ସାଧନ । ସମାଜର ପରିବର୍ତ୍ତନ ପାଇଁ ଗାନ୍ଧୀଚିନ୍ତାଧାରାରେ ଅଷ୍ଟାଦଶ କାର୍ଯ୍ୟକ୍ରମକୁ ସ୍ଥାନ ଦିଆଯାଇଛି ଓ ତନ୍ମଧ୍ୟରେ ମୌଳିକ ଶିକ୍ଷା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ତେଣୁ ବର୍ତ୍ତମାନ ପରିସ୍ଥିତିରେ ଏହା କୁହାଯାଇପାରେ ଯେ (୧) ରାଜନୈତିକ ସ୍ଥିତି, (୨) ଅର୍ଥନୈତିକ ସ୍ଥିତି, (୩) ବୈଜ୍ଞାନିକ କିମ୍ବା କାରିଗରି ବିଦ୍ୟାର ବିକାଶ ଓ (୪) ଦାର୍ଶନିକ ଚିନ୍ତାଧାରାର ବିକାଶ ଦ୍ୱାରା ସାମାଜିକ ପରିବର୍ତ୍ତନ ସାଧିତ ହୁଏ । ଯେ କୌଣସି ମାଧ୍ୟମ ଦ୍ୱାରା ସାମାଜିକ ପରିବର୍ତ୍ତନ ହେଉ ପଛକେ ଶିକ୍ଷା ଏହାର ମୁଖ୍ୟ ବାହକ ହୁଏ । ସ୍ୱାସ୍ଥ୍ୟ, ଉତ୍ପାଦନ, ଉନ୍ନୟନ, ପରିବହନ ଆଦି ଅନ୍ୟ ସାଧନ ସହିତ ଶିକ୍ଷାର ସମନ୍ୱୟ ରହିବା ଉଚିତ । ଏହି ପରିସ୍ଥିତିରେ କୋଠାରୀ କମିଶନଙ୍କ ସୁପାରିଶ ଉଲ୍ଲେଖନୀୟ । ହିଂସାର ବିପ୍ଲବ ବ୍ୟତିରେକେ ଯଦି ଏହି ବିପୁଳ ପରିବର୍ତ୍ତନ ସାଧନ କରିବାକୁ ଆମେ ଇଚ୍ଛାକରୁ, ତେବେ ଗୋଟିଏ ସାଧନ, ମାତ୍ର ଗୋଟିଏ ସାଧନ ଅଛି, ତାହାହେଉଛି ଶିକ୍ଷା । ଅନ୍ୟାନ୍ୟ ମାଧ୍ୟମ ସାହାଯ୍ୟ କରିପାରେ ଓ ସମୟ ସମୟରେ ଏ ସବୁର ପ୍ରଭାବ ପଡ଼ିଲା ପରି ଜଣାପଡ଼େ । କିନ୍ତୁ ଜାତୀୟ ଶିକ୍ଷା ପଦ୍ଧତି ହେଉଛି ଏକମାତ୍ର ସାଧନ, ଯାହାକି ସବୁ ଲୋକଙ୍କ ପାଖରେ ପହଞ୍ଚିପାରେ । ଯାହାହେଉ, ଏହା ଯାଦୁକରର ଏକ କାଉଁରୀ କାଠି ନୁହେଁ, ଯାହାର ସ୍ପର୍ଶରେ ସମସ୍ତ ବାଞ୍ଛା ପୂରଣ କରାଯାଇ ପାରିବ । ଏହା ଏକ କଠିନ ସାଧନ ଓ ଏହାର ସୁଫଳ ପ୍ରୟୋଗ ପାଇଁ ସଙ୍କଳ୍ପର ଶକ୍ତି, ଉତ୍ସର୍ଗୀକୃତ କାର୍ଯ୍ୟ ଓ ତ୍ୟାଗ ଆବଶ୍ୟକ । କିନ୍ତୁ ଏହା ଏକ ପରୀକ୍ଷିତ ଓ ନିଶ୍ଚିତ ସାଧନ । ବିକାଶ ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରୁଥିବା ବହୁ ଦେଶକୁ ଏହା ସାହାଯ୍ୟ କରିଛି । ଯଦି ନିଷ୍ଠା ଓ କୌଶଳ ସହକାରେ କାର୍ଯ୍ୟ କରାଯାଏ, ଏହା ଭାରତର ସହାୟକ ହେବ ।

ଶିକ୍ଷା କମିଶନ (୧୯୬୪–୬୬) ଏ ବିଷୟରେ ତାଙ୍କ ରିପୋର୍ଟରେ ସବିଶେଷ ଆଲୋଚନା କରିଛନ୍ତି । ସାମାଜିକ ପରିବର୍ତ୍ତନର ସାଧନ ହେବା ଦୃଷ୍ଟିରୁ ଶିକ୍ଷାର ଲକ୍ଷ୍ୟ, ପାଠ୍ୟ, ପ୍ରଣାଳୀ ଆଦି ବିଚାର କରଯାଇଛି । ଲୋକମାନଙ୍କ ଆଶା, ଆକାଂକ୍ଷା ଓ ଅଭିଳାଷ ସହିତ ଶିକ୍ଷାକୁ ଜଡ଼ିତ କରଯିବ । ସମୂହ ବିକାଶ ଓ ଶିକ୍ଷା ପରସ୍ପର ସଂପୃକ୍ତ ହେବେ । ବାସ୍ତବରେ ଗୋଟିଏ ଦା' ଦ୍ୱାରା ଗଛ କଟାଯାଇ ନ ପାରେ । ଗଛ କାଟିବାର ଅନୁରୂପ ସାଧନ ଗ୍ରହଣ କରଯିବା ଉଚିତ । ସେହିପରି ଶିକ୍ଷାର ବିଷୟ, ପ୍ରଣାଳୀ ଆଦି ସ୍ଥିର କରଯିବା ଉଚିତ । ଜାତୀୟ ସଂହତି, ଜାତୀୟ ଚରିତ୍ର, ଆଧ୍ୟାତ୍ମିକ ଓ ନୈତିକ ମୂଲ୍ୟବୋଧ ଆଦି ପ୍ରତି ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ବିଜ୍ଞାନ-ଶିକ୍ଷା, ଉତ୍ପାଦନମୂଳକ କାର୍ଯ୍ୟକ୍ରମ ଆଦି ଶିକ୍ଷାରେ ସ୍ଥାନ ପାଇବ । ଏପରିକି ଦେଶର ଆଧୁନିକୀକରଣ ପ୍ରକ୍ରିୟାରେ ସୁଦୃଢ଼ ଭିତ୍ତି ପ୍ରତିଷ୍ଠା କରଯିବ, ଆମର ପ୍ରାଚୀନ ମୂଲ୍ୟବୋଧ ଉପରେ । ଠିକ୍ ଏହି ଢ଼ଙ୍ଗରେ M.S Gore ତାଙ୍କ ପ୍ରଣୀତ Education and Modernisation in India (1982) ଶୀର୍ଷକ ପୁସ୍ତକରେ ଆଧୁନିକୀକରଣକୁ ଏକ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପ୍ରକ୍ରିୟା ବୋଲି ବିଚାର କରି ଏହାକୁ ସାଧନ କରିବାକୁ ହେଲେ କି ପ୍ରକାର ଶିକ୍ଷା ବ୍ୟବସ୍ଥା ହେବା ଉଚିତ ଏହାର ସବିଶେଷ ଆଲୋଚନା କରଯାଇଛି । ଆଲୋଚନାର ଉପସଂହାରରେ ଗୋରେଙ୍କ ମତରେ ଯେଉଁସବୁ ପରିସ୍ଥିତିରେ ଶିକ୍ଷା ସାଧନରୂପେ କାର୍ଯ୍ୟକରିପାରିବ ସେ ସବୁ ହେଉଛି; ପରିବର୍ତ୍ତନର ଆଭିମୁଖ୍ୟପ୍ରତି ନିଷ୍ଠା, ସଞ୍ଚାଳକମାନଙ୍କର ଉତ୍ସର୍ଗୀକୃତ ମତିଗତି, ପରିବର୍ତ୍ତନର ବାର୍ତ୍ତା ସମ୍ବନ୍ଧରେ ସ୍ପଷ୍ଟତା ଓ ଗୋଟିଏ ନିର୍ବ୍ୟୈକ୍ତିକ ପରିସ୍ଥିତି ଥିବ, ଯଦ୍ଦ୍ୱାରା ନୂତନ ମୂଲ୍ୟବୋଧ ଶିକ୍ଷାଗ୍ରହଣ କରିବାକୁ ଆସୁଥିବା ବହୁସଂଖ୍ୟକ ଛାତ୍ରଛାତ୍ରୀଙ୍କୁ ପ୍ରଭାବିତ କରିପାରିବ ।

ମୋଟ ଉପରେ ଦେଖିବାକୁ ଗଲେ ଭାରତୀୟ ସମାଜରେ ସ୍ଥାଣୁତା ଓ ରକ୍ଷଣଶୀଳତା ସର୍ବନିୟାମକ ହୋଇଥାଏ । ଏହି ସ୍ଥାନରେ ଗତିଶୀଳତା ଓ ପରିବର୍ତ୍ତନ-ସହାୟକ ମନୋଭାବ ସୃଷ୍ଟି କରିବାକୁ ହେବ । ଏଠାରେ ଅବଶ୍ୟ ସ୍ଥିରତା ଓ ପରିବର୍ତ୍ତନ ମଧ୍ୟରେ ସୁସ୍ଥ ସମନ୍ୱୟ ପ୍ରତିଷ୍ଠା କରିବାକୁ ପଡ଼ିବ । ପକ୍ଷାନ୍ତରରେ ବର୍ଣ୍ଣ ବୈଷମ୍ୟ ଉପରେ ଆଧାରିତ ଏକ ସମାଜରେ କୁସଂସ୍କାର, ଅନ୍ଧବିଶ୍ୱାସ ଓ ଭାଗ୍ୟବାଦ ରହିବା ସ୍ୱାଭାବିକ । ଏହା ସାମାଜିକ ପରିବର୍ତ୍ତନର ପରିପନ୍ଥୀ ଅଟେ । ଏହା ନୈରାଶ୍ୟ ସୃଷ୍ଟି କରେ । ଏହା ପରିବର୍ତ୍ତେ ମୁକ୍ତ ଓ ଆଧୁନିକ ସମାଜର ପ୍ରତିଷ୍ଠା ପାଇଁ ଅଗ୍ରଗାମୀ ଓ ପରୀକ୍ଷାମୂଳକ

ମନୋଭବର ସଞ୍ଚାର କରିବାକୁ ହେବ । ଦାରିଦ୍ର୍ୟ ପ୍ରପୀଡ଼ିତ ସମାଜ ପରିବର୍ତ୍ତେ ଉତ୍ପାଦନଭିତ୍ତିକ ସମାଜ ରଚନା ପାଇଁ ଉଦ୍ୟମ କରାଯିବ । ଶ୍ରେଣୀ ସଂଘର୍ଷ ସ୍ଥାନରେ ସହଯୋଗୀ ଓ ଶୋଷଣହୀନ ସମାଜ ହେବ । ସାମାଜିକ ନ୍ୟାୟ ଓ ସମତା ପ୍ରତିଷ୍ଠା କରାଯିବ । ଏଠାରେ ଆଧ୍ୟାତ୍ମିକତା ଓ ଜଡ଼ବାଦ ମଧ୍ୟରେ ବିରୋଧ ସୃଷ୍ଟି କରାଯାଏ । କିନ୍ତୁ ବିନୋବାଙ୍କ ଭାଷାରେ ବିଜ୍ଞାନ ଓ ଆତ୍ମଜ୍ଞାନ ମଧ୍ୟରେ ସମନ୍ୱୟ କରାଯାଇ ଆଧ୍ୟାତ୍ମିକତା ଆଧାରିତ ଆଧୁନିକ ସମାଜ ପ୍ରତିଷ୍ଠା କରାଯିବ । ଏସବୁ ହେବ ଆମ ସାମାଜିକ ପରିବର୍ତ୍ତନର ମୂଳ ବିଚାର । ଭାରତୀୟ ଶିକ୍ଷା ପଦ୍ଧତିର ବହୁ ଦୋଷ ଦୁର୍ବଳତା ମଧ୍ୟରେ ଶିକ୍ଷାର ଧ୍ୟେୟ ଭାବରେ ବଡ଼ କଥାଟି ହେଉଛି ଯେ, ଆମେ ଆମ ଶ୍ରେଣୀ କୋଠରୀରେ ବ୍ୟକ୍ତି ବିଶେଷଙ୍କୁ କେବଳ ଶିକ୍ଷାର୍ଥୀ ଭାବରେ ବିଚାର କରୁ । ସେମାନେ ଚିନ୍ତା କରି ପାରନ୍ତି, ସୃଷ୍ଟି କରି ପାରନ୍ତି ଓ ଉତ୍ପାଦନ କରିପାରନ୍ତି, ଏହି ବିଚାର କରୁ ନାହୁଁ । ଆଉ ଆମ ଦୃଷ୍ଟିରେ ଶିକ୍ଷାର୍ଥୀ, ବିଶେଷ କରି ସର୍ବଶ୍ରେଷ୍ଠ ଶିକ୍ଷାର୍ଥୀ ହେଉଛନ୍ତି ସେ, ଯେ ପୁସ୍ତକର ପୃଷ୍ଠାପରେ ପୃଷ୍ଠା ଗୋଳି ବାଟି ପିଇ ଦିଅନ୍ତି ଓ ସବୁ ସେ ଅତି ସହଜରେ ବାନ୍ତିକରି ପକାନ୍ତି । ଶିକ୍ଷାର ଛାପ କିଛି ରହେନାହିଁ । ଜୀବନ ଓ ସମାଜ ଉପରେ ପ୍ରଭାବ ପକାଇବା ଓ ଏହାର ଉପକାରିତା ଦୃଷ୍ଟିରୁ ଶିକ୍ଷାରେ ଓ ଶିକ୍ଷାର ବିଭିନ୍ନ ସ୍ତରରେ କାହା ଉପରେ ଅଗ୍ରାଧିକାର ଓ ପ୍ରାଧାନ୍ୟ ଦିଆଯିବ, ଏହା ସ୍ଥିର କରିବା ଉଚିତ ।

ପରିଶେଷରେ ଏହା ଲକ୍ଷ୍ୟ କରିବାର କଥା ଯେ, ସାମାଜିକ ପରିବର୍ତ୍ତନ ଦୃଷ୍ଟିରୁ ଶିକ୍ଷାର ଭୂମିକାକୁ ତିନି ପ୍ରକାରରେ ଉପସ୍ଥାପନ କରଯାଇପାରେ ! (୧) ଶିକ୍ଷା ହେଉଛି ସାମାଜିକ ପରିବର୍ତ୍ତନର ଫଳ, (୨) ଏହା ସାମାଜିକ ପରିବର୍ତ୍ତନର କାରଣ ଓ (୩) ଏହା ପରିବର୍ତ୍ତନର ଅବସ୍ଥା । ଏହି ତିନୋଟିକୁ ପୃଥକ୍ ଭାବରେ ନ ଭାବି ଏକକାଳୀନ ବିଚାର କରାଯିବା ଉଚିତ । ଏହା ସାମାଜିକ ପରିବର୍ତ୍ତନର ସାଧ୍ୟ, ସାଧନ ଓ ସାଧନା ସହାୟକ ।



# ହୃଦୟର ଶିକ୍ଷା

ଶିକ୍ଷା କିପରି ହୃଦୟକୁ ଛୁଇଁବ, ଏହା ହେଉଛି ଅସଲ ପ୍ରଶ୍ନ । କାନ୍ଥରେ କାଦୁଅ ଲେସିଲା ପରି ପାଠ ଅଲଗା ରହୁଛି ଓ ବକଲା ପରି ଉଖୁଡ଼ି ଯାଉଛି । ପିଲାଏ ଅନେକ କଥା ଶୁଣୁଛନ୍ତି ଓ ମନେ ରଖୁଛନ୍ତି । କିନ୍ତୁ ସେଥିରୁ ଖୁବ୍ କମ୍ କଥା ବୁଝୁଛନ୍ତି ଓ ତଦନୁସାରେ କାମ କରୁଛନ୍ତି । ପିଲାଙ୍କ ମନୋଭାବ କ୍ୱଚିତ୍ ସେପରି ହେଉଛି । ପାଠଦ୍ୱାରା ଜୀବନ ପ୍ରଭାବିତ ହେବା ଉଚିତ । ଶିକ୍ଷାକୁ ପିଲାଏ ଘେନିବା ଦରକାର ।

ଆଜିକାଲି ସ୍କୁଲରେ ଚାବିର ଚାହିଦା ବଢ଼ିଛି । ବହି ହଜିବ, ମଇଳା ହେବ ଓ ଛିଡ଼ିଯିବ । ତେଣୁ ପାଠାଗାରରେ କୋଳପ । ଜ୍ଞାନ ଘରେ ଚାବି । ବାଡ଼ି ବଗିଚାର ଫୁଲ ଓ ଫଳ ପିଲାଏ ନଷ୍ଟ କରିବେ । ଖାଇ ତ ଯିବେ, ଅନେକଟା ଦରଖିଆ ଫିଙ୍ଗାଯିବ । ସେଠି ବି ଚାବି ଓ ଜଗୁଆଳ । ରଚନା ଖାତା ମୋଡ଼ିଯିବ, ଛିଡ଼ିଯିବ ଓ ମସିଆ ହେବ । ପରିଦର୍ଶକଙ୍କୁ ସୁରକ୍ଷିତ ରଚନା ଖାତା ଦେଖାଯିବ । ସେଥିପାଇଁ ପିଲାଙ୍କ ଖାତା ସେମାନଙ୍କୁ ନ ଦେଇ ଶିକ୍ଷକଙ୍କ ଆଲମାରୀରେ ସଜଡ଼ା ହୋଇ ରହୁଛି । ଛବି, ଚିତ୍ର, ଚାର୍ଟ, ମାନଚିତ୍ର ଆଦି ଉପକରଣ ପିଲାଙ୍କ ହାତରେ ଅନେକ ସମୟରେ ପଡେ ନାହିଁ । ସାଇତା ହୋଇ ରହୁ, କୋଳପ ଲାଗୁ । କଳାପଟାର କାଳି ଶୁଖିଯିବ ଓ ଚକ ସରିଯିବ । ସେଥିପାଇଁ କଳାପଟା ପାଠ ଲେଖାଯିବ ନାହିଁ । କଳାପଟାରେ ପିଲେ ଲେଖିବେ କାହିଁ, ସେମାନଙ୍କ ହାତ ମସିଆ ହେବ । ଏହିପରି ଅନେକ କଥାରେ ଅବିଶ୍ୱାସ, ଅନ୍ଧବିଶ୍ୱାସ ଓ ସନ୍ଦେହ ଦେଖାଯାଏ । ଆକଟ ଓ ଅଟକ ରଖିବା ପାଇଁ କଟକଣା ହୁଏ । ଏହା ହୃଦୟର ଶିକ୍ଷା ନୁହେଁ । ଏହା ଆଇନ କାନୁନ୍‌ର ଶିକ୍ଷା । ଏହା ଜଉମୁଦର ଶିକ୍ଷା । ନିୟମ ଅନୁସାରେ ଭଲ, କିନ୍ତୁ ଶିକ୍ଷା ହେଲା କି ? ଚାକିରି ଦୃଷ୍ଟିରୁ ଠିକ୍, କିନ୍ତୁ କର୍ତ୍ତବ୍ୟ କରାଗଲା କି ?

ଏପରି ଅଛି, ପିଲାଏ ନିଜ ପାଠାଗାର ସମ୍ଭାଳୁଛନ୍ତି । ବହି ନେଉଛନ୍ତି ଓ ଅନ୍ୟମାନଙ୍କୁ ଦେଉଛନ୍ତି । ଠିକ୍ ସମୟରେ ବହି ଫେରି ଆସୁଛି ଓ ପାଠପଢ଼ା ହେଉଛି । ବହିରେ ମଲାଟ ଲାଗୁଛି । ନୂଆ ବହି ପୁରୁଣା ହେଉଛି, ସତ । କିନ୍ତୁ ପାଠ ନୂଆ ହେଉଛି । ବିବେକାନନ୍ଦଙ୍କ ଭାଷାରେ ଜ୍ଞାନାଲୋକରୁ ଢ଼ାଙ୍କୁଣି କାଢି ଦିଆଯାଉଛି । ବାଡ଼ିବଗିଚାର ଦାୟିତ୍ୱ ପିଲାଏ ମଧ୍ୟ ନେଉଛନ୍ତି । ସେମାନେ ରକ୍ଷକର ଦାୟିତ୍ୱ ତୁଲାଉ ଥିବାରୁ ଭକ୍ଷକର

ଦାବି ଲାଭ କରୁଛନ୍ତି । ଫୁଲର ଶୋଭା ଓ ଫଳର ସ୍ୱାଦ ମିଳିମିଶି ସମସ୍ତେ ଉପଭୋଗ କରୁଛନ୍ତି । ଏହିପରି ସାନ ସାନ ଅନେକ କଥା କହି ହେବ । ଏହା ହେଲା ହୃଦୟର ଶିକ୍ଷା । ଏ ପ୍ରକାର ବ୍ୟବସ୍ଥାରେ ମନ ମାନୁଛି ଓ ହୃଦୟ ବୁଝୁଛି । ଛବି ବହି ସମସ୍ତଙ୍କ ଆଦର । ଚିତ୍ର ସମସ୍ତଙ୍କ ପ୍ରିୟ । ଏ ସବୁର ବ୍ୟବହାରରେ ମିଳିତ ମସୁଧା ଦରକାର । ଏଥିରେ ବୁଝାମଣା ଲାଗେ । ମିଳିମିଶି କାମ କରାଯାଏ । ମୋ ପାଳି ଅବଶ୍ୟ ପଡ଼ିବ, ଏପରି ଭରସାରେ ନେଇ ପଳାଇ ଯିବାର ମନୋଭାବ ରହେ ନାହିଁ । 'ଚାବି' କୋଲପ ଲାଗେ ସତ; କିନ୍ତୁ ତାହା ଆମ ମନ, ହାତ ଓ ଆତ୍ମାକୁ ବାନ୍ଧେ ନାହିଁ । ଯେଉଁମାନଙ୍କର ଖୋଲିବାର, ଶିଖିବାର, ବ୍ୟବହାର କରିବାର ଓ ବୁଝିବାର ଅଧିକାର ଅଛି, ସେମାନେ ତାଲା ପକାନ୍ତି ଓ ଫିଟାନ୍ତି ।

ଆଉ ଗୋଟେ କଥା । ୧୦ ମାସ ପରେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀରେ ୧୦ ଜଣ ପିଲାଙ୍କର ୧୦ ଖଣ୍ଡି ବହିରେ ଏକ ପ୍ରକାର ପାଠ ହେବା ଏକ ବିଡମ୍ବନା । ଏସବୁ ସଂଖ୍ୟା କେବଳ ଉଦାହରଣ ଦୃଷ୍ଟିରୁ ନିଆଯାଇଛି । କିନ୍ତୁ ବିଭିନ୍ନ ପିଲାଙ୍କର ସମାନ ଯୋଗ୍ୟତା ଲାଭ କରିବା ପାଇଁ ଆମର ଯେଉଁ ଆଶା ରଖାଯାଏ, ତାହା ଶିକ୍ଷାକୁ ହୃଦୟସ୍ପର୍ଶୀ କରେ ନାହିଁ । ଶିକ୍ଷକ ଓ ଛାତ୍ର ସମସ୍ତେ ପାଠ୍ୟତାଲିକା, ପାଠ୍ୟନିର୍ଘଣ୍ଟ, ପାଠ୍ୟପୁସ୍ତକ ଓ ପାଠୋପକରଣର ଦାସ ହୋଇଯାଆନ୍ତି । ଏତିକି ସମୟରେ ଏତେ ପୃଷ୍ଠା ଘୋଷି ଦେବାର ବାସନା ଜାଗିଉଠେ । ଶିକ୍ଷା ଲକ୍ଷ୍ୟଛଡ଼ା ହୋଇଯାଏ । ପାଠାଗାର ଓ ସାଧନସାମଗ୍ରୀ ଅଦରକାରୀ ହୋଇପଡ଼େ । ସମସ୍ତେ ବିଭିନ୍ନ ହେଲେହେଁ ଏକା ଗତିରେ ପଢିବେ, ଏ ପ୍ରକାର ଭାବନା ଫଳରେ ଶିକ୍ଷା ପ୍ରାଣହୀନ ହୋଇଥାଏ । ଘର, ଦ୍ୱାର ଓ ଉପକରଣ ଏକ ମାମୁଲି କାରବାର ହୋଇଯାଏ ।

ଶିକ୍ଷାବିଜ୍ଞାନର ସିଦ୍ଧାନ୍ତ ହେଉଛି, ପ୍ରତ୍ୟେକ ପିଲା ଅନ୍ୟଠାରୁ ଅଲଗା । ତାହାହେଲେ ଗଣିତର ୫ମ ପ୍ରଶ୍ନ ବା ପଠନର ୫ମ ପାଠ ପାଞ୍ଚୋଟି ପିଲା ଏକ ସମୟରେ ଏକ ଢଙ୍ଗରେ କିପରି କରିବେ ବା ପଢିବେ ? ମା' ବୁଝନ୍ତି ଯେ ତାଙ୍କର ପାଞ୍ଚୋଟି ପିଲା ଏକ ପ୍ରକାରର ନୁହନ୍ତି । ପ୍ରତ୍ୟେକେ ଗୋଟିଏ ଗୋଟିଏ ପ୍ରକାରର । ତେଣୁ କାହାପାଇଁ କ'ଣ ସୁହାଇବ, ତାହା ସେ ଅଣ୍ଟାରେ ବା ଅଣ୍ଡିରେ ଓ ଠଣାରେ ବା ବଣାରେ ରଖିଥାନ୍ତି । ଠିକ୍ ସେଇଆ ହେଉଛି ଶିକ୍ଷାସିଦ୍ଧାନ୍ତ । ଫଳରେ ଶିକ୍ଷା କେବଳ ପୁସ୍ତକର ବା ଯନ୍ତ୍ରର

ହୋଇଯାଉଛି । ଏହା ଶିକ୍ଷକର ଓ ଶିକ୍ଷାର୍ଥୀର ହେଉ ନାହିଁ । ଏହା ଦେହରେ ଭେଦୁ ନାହିଁ । କେବଳ ଶୁଣିବା ଓ ଘୋଷିବାହିଁ ସାର ହେଉଛି । 'ଅଧୀତ' 'ବୋଧ', ହେଉ-ନାହିଁ, ଫଳରେ 'ଆଚରଣ' ଓ 'ପ୍ରଗ୍ଭରଣ' ମଧ୍ୟ ନାହିଁ ।

ତେଣୁ 'ହୃଦୟର ଶିକ୍ଷା' କଥାଟି ଏକ ଆବେଗିକ ଓ ଭାବପ୍ରବଣ ବିଷୟ ନୁହେଁ । ବିଜ୍ଞାନର ବିଗ୍ଭର ଏହାର ସମର୍ଥନ କରେ । ଆଗରୁ ଏକ ଧାରଣା ଥିଲା ଯେ ଶିଶୁଶିକ୍ଷା ବାଳଦିଆ କାମ । କେବଳ ଘୋଷି ଦେଲେ ଚଳିବ । ଦୂରରୁ ପିଲାଙ୍କ ସମସ୍ୱର ପାଟି ଯେତେ ଉଚ୍ଚରେ ଓ ଯେତେ ଦୂରକୁ ଶୁଣା ଯାଉଥିଲା, ସ୍କୁଲଟି ସେତେ କୁଶଳ ବୋଲି ଧରି ନିଆଯାଉଥିଲା । ବାରମ୍ବାର ଆବୃତ୍ତି କରି କଥାଟି ମନରେ ଲାଖିଯାଉ, ଏହା ଥିଲା ଚେଷ୍ଟା । ଗୁଡାଏ ଘୋଷି ମନରେ ଧରି ରଖିଲେ ଶିଶୁ ବିଗ୍ଭର କରିବ । ବିଗ୍ଭରର ସ୍ଥାନ ଶିଶୁ-ମନରେ ହୁଏ ନାହିଁ ବୋଲି ଧାରଣା ଥିଲା । କିନ୍ତୁ ଏହା କପୋଳକଳ୍ପିତ ଓ ଅସିଦ୍ଧ ବୋଲି ଆଧୁନିକ ଶିକ୍ଷାବିଜ୍ଞାନର ଘୋଷଣା । ନିଜ ପ୍ରତି ଯାହା ଗୁରୁତ୍ୱପୂର୍ଣ୍ଣ ତା'ର ବିଗ୍ଭର ସେ କରେ ଓ ନିଜ ଭାଷାରେ ସେ ପ୍ରକାଶ କରେ । "ମା ନ ଥିବାରୁ ତାକୁ ଖାଇବାକୁ ମିଳେ ନାହିଁ," ଏଥିରୁ କେଉଁ ଅବସ୍ଥାରୁ କି ଫଳ ହେଉଛି ଏ କଥା ସେ ଚିହ୍ନେ ଓ ବୁଝେ । ବୁଝାଇ ଦେଲେ ସେ ମାନେ ଓ ସେହିପରି କାମ କରେ । ନିଜର ଅନୁଭୂତି ଅନୁସାରେ ସେ ବିଗ୍ଭରଶୀଳ । ବିଗ୍ଭରର ଫରକ କେବଳ ପରିମାଣରେ । ଏହି ସିଦ୍ଧାନ୍ତଦ୍ୱାରା ଶିକ୍ଷାକୁ ହୃଦୟସ୍ପର୍ଶୀ କରିବାର ଆହ୍ୱାନ ମିଳେ । ଯନ୍ତ୍ର ପରିଗ୍ଭଳନା ଛାଡ଼ି ହୃଦୟଙ୍ଗମ କରାଇବାର ପଦ୍ଧତି ଗ୍ରହଣ କରିବା ଦରକାର । ଘୋଷି ପିଆଇ ଦେବାର ବାଟ ଛାଡ଼ି ହାତରେ ପରୀକ୍ଷା କରି ଦେଖିବାର ସୁଯୋଗ ଦେବା ଉଚିତ । ଏ ଦୃଷ୍ଟିରୁ ହୃଦୟର ଶିକ୍ଷାରେ ବିଜ୍ଞାନର ପ୍ରୟୋଗ ଶିକ୍ଷାର ପ୍ରଥମ ସୋପାନ ।

ଆଉ ଗୋଟିଏ ସେ ଯୁଗର ଧାରଣା ଆମ୍ଭମାନଙ୍କୁ ଗ୍ରାସ କରିଛି । ଫଳରେ ଶିକ୍ଷା ହୃଦୟର ନ ହୋଇ ଯନ୍ତ୍ରପରି ହେଉଛି । ସେହି ପୁରୁଣାକାଳିଆ ଧାରଣା ଏହି ଯେ ଶିଶୁ-ସ୍ୱଭାବ ମୁଖ୍ୟତଃ ସ୍ୱାର୍ଥଜଡ଼ିତ । ସେ ଆତ୍ମକୈନ୍ଦ୍ରିକ । ତା'ର ଅଣ୍ଟା ବଡ଼ । ପକେଟ ଭର୍ତ୍ତି । ପେଟ ଢୋଲ । ଲୋଭୀ ମାଙ୍କଡ଼ ଟିଣ ଡ଼ବାରୁ ଚ଼ଣା ମୁଠାଏ ଧରୁଥିଲା, ହାତ କାଢି ପାରିଲା ନାହିଁ । ପିଲାଙ୍କ ବିଷୟରେ ଆମର ସେହି ଧାରଣା । ମୁଠା, ପାଟି ଓ ପେଟରେ ଭର୍ତ୍ତି କରିବା ପିଲାର ସ୍ୱଭାବ । ସଂଗ୍ରହ କରିବା ଓ ପୁଳାଏ ମାରିନେବା ତା'ର 'ପ୍ରବୃତ୍ତି'

ବୋଲି ଚିରଚରିତ ଆମର ଧାରଣା ରହିଛି । ଶିକ୍ଷାଜଗତରୁ ଏହି ଜାତିଗତ, ବିଷାଦମୟ ଓ ନିଷ୍ପୟସୂଚକ ପ୍ରବୃତ୍ତିବାଦ ବିଦାୟ ନେଲାଣି । ୧୯୨୦ ସାଲରେ W. I. Thomas ତାଙ୍କର The Unadjusted Girl ନାମକ ବହିରେ ସମ୍ଭବତଃ ସର୍ବପ୍ରଥମେ ଦୃଷ୍ଟି ଆକର୍ଷଣ କରିଥିଲେ ଯେ ଏ ପ୍ରକାର ବାଳିକାମାନଙ୍କର 'ଆବଶ୍ୟକତା' (needs) ସମାଜରେ ପୂରଣ ନ ହୋଇ ପାରିବାରୁ ସେମାନେ ଅପରାଧପ୍ରବଣ (delinquent ) ହେଉଛନ୍ତି ବୋଲି ସୂଚାଇ ଥିଲେ । ନୂତନ ଅନୁଭୂତି, ନିରାପତ୍ତା ଓ ସ୍ୱୀକୃତି ସେମାନେ ଚାହୁଁଥିଲେ । ଏହା ପରିବର୍ତ୍ତେ ଏହି ବାଳିକାମାନେ ତାଙ୍କ ଘରୁ ତାଡ଼ନା, କ୍ଳାନ୍ତି, ଅବସାଦ ଓ ଆପଦ ପାଇଲେ, ଫଳରେ ସେମାନେ ଅପରାଧପ୍ରବଣ ହେଲେ । ସେ ଦିନରୁ ପିଲାଙ୍କର ଏହି ସାମାଜିକ ଓ ମୌଳିକ 'ଆବଶ୍ୟକତା' ବିଷୟରେ ଅନେକ ଗବେଷଣା ହେଲାଣି । ପିଲାଏ ମୂଳରୁ ସ୍ୱଭବତଃ ସାମାଜିକ । ସେମାନେ କେବଳ ନିଜ କଥା ଭାବନ୍ତି ନାହିଁ । ନଡ଼ିଆ ଫାଳେ, ମକାମଞ୍ଜି ଗଣ୍ଡେ, ମୁଠାଏ ଚିନାବାଦାମ୍ କାକୁଡ଼ିଟେ—ଇତ୍ୟାଦି ସେମାନେ ବାଣ୍ଟିକୁଣ୍ଟି ଖାଇ ଖୁସି ହୁଅନ୍ତି । ବେଳେ ବେଳେ ବି ନିଜେ ନ ଖାଇ ଅଝଟିଆ ଛୋଟ ଛୁଆକୁ ଦିଅନ୍ତି । ୧୯୩୫ ସାଲରେ I. D. Suttie ତାଙ୍କର The Origin of Love and Hate ନାମକ ବହିରେ ପ୍ରମାଣ କରିଛନ୍ତି ଯେ ପିଲାଦିନୁ ନେବାର ବାସନା ଯେତିକି ଉତ୍କଟ ଓ ମୌଳିକ, ଦେବାର ବାସନା ସେହିପରି । ମା'ର ହସ ଓ କୋମଳ କଥାରେ ଛୁଆ ହସେ ଓ କୋଡ ଛୁଆର ହସ, କୌତୁକ ଓ ଦରେଟି କଥାରେ ମା' ବିଭୋର ହୁଏ । ଛୁଆ, ମା' ଠାରୁ ସ୍ନେହ ନିଏ ଓ ମା'କୁ ହସ ଦିଏ । ଦେବା ଓ ନେବା କଥାଟି ପିଲାଦିନୁ ।

ଏଇ ଯୁଗର ଆବିଷ୍କାର । ଶିଶୁର ଆବିଷ୍କାର । ମଣ୍ଟେଶରୀଙ୍କ ସନ୍ଧାନର ସତ୍ୟ । ପିଆଜେଁ ( Piaget ) ଙ୍କ ପରୀକ୍ଷାର ଫଳ । ପରିବେଶ ପ୍ରତି ପ୍ରତିକ୍ରିୟାହିଁ ଶିଶୁଶିକ୍ଷାର ଭିତ୍ତି ।

ଶିଶୁସ୍ୱଭବର ଏହି ସାମାଜିକ ଆବଶ୍ୟକତା ଶିକ୍ଷାରେ ବିପ୍ଳବ ଆଣିଛି । ହୃଦୟର ଶିକ୍ଷା ଜଣଜଣକର ଶିକ୍ଷା । ଏହା ବିଜ୍ଞାନର ଶିକ୍ଷା ଓ ବିଜ୍ଞାନ-ସମ୍ମତ ଶିକ୍ଷା । ଏଥିରେ ଜୀବନ ଯାପନର ଦୃଷ୍ଟିକୋଣ ଅଛି । ଏହା ଆମ ସାମାଜିକ ଆବଶ୍ୟକତାର ପରିପୂରକ । ଏହା ମଧ୍ୟ ବ୍ୟକ୍ତି ସ୍ୱଭବର ଅନୁରୂପ ।



# ମନୋବିଜ୍ଞାନ ଓ ଶିକ୍ଷା

ମନୋବିଜ୍ଞାନ ଓ ଶିକ୍ଷା ଦିନେ ଦର୍ଶନଶାସ୍ତ୍ରର ଅଙ୍ଗ ହୋଇଥିଲେହେଁ ଆଜି ଉଭୟ ସ୍ୱ ସ୍ୱ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରି ପାରିଛନ୍ତି । ପ୍ରତ୍ୟେକର ପୃଥକ୍ ଅସ୍ତିତ୍ୱ କେବଳ ସ୍ୱୀକୃତ ହେଉନାହିଁ, ପ୍ରତ୍ୟେକ ଏକ ସମୃଦ୍ଧ ବିଜ୍ଞାନ ଭବରେ କ୍ରମବର୍ଦ୍ଧିଷ୍ଣୁ ଜ୍ଞାନଗଙ୍ଗ୍ୟରେ ପରିଣତ ହେଉଅଛି । ସେତିକି ନୁହେଁ, ପୁନଶ୍ଚ ମନୋବିଜ୍ଞାନଦ୍ୱାର ଶିକ୍ଷା ପ୍ରଭବିତ ଓ ପରିପକ୍ଷଟ ହୋଇ ଶିକ୍ଷା-ମନୋବିଜ୍ଞାନ ମଧ୍ୟ ଅନ୍ୟ ଏକ ସ୍ୱତନ୍ତ୍ର ବିଦ୍ୟାବିଭଗ ହୋଇଯାଇଅଛି । ଶିକ୍ଷକ—ଶିକ୍ଷାର ସମସ୍ତ ସ୍ତରରେ ଶିକ୍ଷା—ମନୋବିଜ୍ଞାନ ଅବଶ୍ୟ ପାଠ୍ୟ ବିଷୟ ରୂପେ ଗୃହୀତ ହୁଏ । ବିଦ୍ୟାର୍ଥୀଙ୍କୁ ଓ ତାହାଁର ଆଚରଣ ତଥା ବିକାଶକୁ ବୁଝିବା ପାଇଁ, ଶିକ୍ଷଣ ପ୍ରକ୍ରିୟାକୁ ନିର୍ଦ୍ଦେଶିତ କରିବା ଉଦ୍ଦେଶ୍ୟରେ, ମାର୍ଗଦର୍ଶନ ଓ ମୂଲ୍ୟାୟନରେ ସହାୟତା ଲାଗି ତଥା ମୋଟଉପରେ କହିବାକୁ ଗଲେ, ଶିକ୍ଷାକୁ ଏକ କର୍ମକୁଶଳ ଓ ବିଜ୍ଞାନ—ପ୍ରକ୍ରିୟା କରିବାପାଇଁ ଶିକ୍ଷାରେ ମନୋବିଜ୍ଞାନର ପ୍ରୟୋଗ ଏକ ବିପ୍ଳବର ସୂତ୍ରପାତ କରେ ।

ଶିକ୍ଷାତତ୍ତ୍ୱ (pedagogy) ଏକ କଳା ଥିଲା ଓ ଏହା ଶିକ୍ଷଣକଳା ନାମରେ ଅଭିହିତ । ଏହା ବର୍ତ୍ତମାନ ଶିକ୍ଷା—ବିଜ୍ଞାନରେ ପରିଣତ ହୋଇଅଛି । ସମାଜବିଜ୍ଞାନ, ନୃତତ୍ତ୍ୱ, ଭାଷାବିଜ୍ଞାନ ଓ ବିଶେଷକରି ମନସ୍ତତ୍ତ୍ୱର ପ୍ରଭବ ହେତୁରୁ ଏହି ପରିବର୍ତ୍ତନ ସାଧିତ ହୋଇଅଛି । ବସ୍ତୁତଃ "ପେଡାଗଜି" ଏହି ଶବ୍ଦଟି ଯେପରି ନିଷ୍ପନ୍ନ ହୋଇଅଛି, ସେଥିରୁ ଜଣାଯାଏ ଯେ ଅତୀତରେ ଶିକ୍ଷାଶାସ୍ତ୍ରର ଅର୍ଥ ହେଲା, କିଶୋର ବୟସର ପିଲାମାନଙ୍କୁ ଉପଦେଶ ଦେବା । କିନ୍ତୁ ଏହି ଅର୍ଥ ଆଜିର ସମୟ ସଙ୍ଗେ ତାଳ ରଖୁନାହିଁ । ଏହି ପରିବର୍ତ୍ତିତ ପରିପ୍ରେକ୍ଷୀରେ ସିଦ୍ଧାନ୍ତ ଗ୍ରହଣ କରଯାଏ ଯେ "ପେଡ଼ାଗଜି କେବଳ ଶିକ୍ଷାଦର୍ଶନ ନୁହେଁ" ଯେଉଁଥିରେ କେବଳ ଉଦ୍ଦେଶ୍ୟ ସୁସ୍ପଷ୍ଟ ହୁଏ, କିନ୍ତୁ କାର୍ଯ୍ୟାନୁଷ୍ଠାନର ବାସ୍ତବ ଉପାୟ ନଥାଏ । ପେଡ଼ାଗଜି ମଧ୍ୟ ଉପାଦେୟ ଟେକନିକ୍ ସମ୍ବନ୍ଧୀୟ କଳ୍ପନାବିଳାସ ନୁହେଁ । ସୁତରାଂ ପେଡ଼ାଗଜିରେ ତା'ର ନିଜ ବୈଜ୍ଞାନିକ ସ୍ୱାତନ୍ତ୍ର୍ୟ (scientific autonomy) ରହିଛି । ଏହାର ଅର୍ଥ ହେଉଛି ଯେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟକୁ ଅବଲମ୍ବନ କରି ଏହା ଏକ ସଙ୍ଗଠିବି ସମଗ୍ର organised whole ହେବ । ପେଡ଼ାଗଜିର ଉଦ୍ଦେଶ୍ୟ ଆଉ ଶିଶୁ ଓ କିଶୋରମାନଙ୍କୁ ତାଲିମ ଦେବା ନୁହେଁ, କିନ୍ତୁ ସମସ୍ତ ନରନାରୀଙ୍କୁ

ଜୀବନବ୍ୟାପୀ ଶିକ୍ଷାଦେବା, ତେଣୁ କେତେକ ବିଶ୍ୱବିଦ୍ୟାଳୟରେ ଯେପରି କରାଗଲାଣି, ଏହି ଜୀବନବ୍ୟାପୀ ଶିକ୍ଷାର ବିଜ୍ଞାନକୁ ଏଣ୍ଡ୍ରାଗଜି (Andragogy) ଆଖ୍ୟା ଦିଆଯାଉଛି ।

ଅତଏବ ଶିକ୍ଷା ଓ ଶିକ୍ଷାତତ୍ତ୍ୱର ଅର୍ଥ ଆଜି ଅଧିକ ଜଟିଳ ଓ ବ୍ୟାପକ ହୋଇଅଛି । ବ୍ୟକ୍ତିବିଶେଷର ପ୍ରଚ୍ଛନ୍ନ ଶକ୍ତିସମୂହର ବିକାଶ ସାଧନ କରିବା ଓ ଲାଳନପାଳନ କରିବାର ସାସ୍କୃତିକ ପ୍ରକ୍ରିୟା ଏହାର ଅନ୍ତର୍ଭୁକ୍ତ ହୋଇଛି । ଶିକ୍ଷାତତ୍ତ୍ୱର କାର୍ଯ୍ୟ ପ୍ରାରମ୍ଭିକ ଅବସ୍ଥାରେ ସୀମିତ ନୁହେଁ । ନିରବଚ୍ଛିନ୍ନ ଶିକ୍ଷାର ସାଧନ ଆଧୁନିକ ଶିକ୍ଷାତତ୍ତ୍ୱର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଶିକ୍ଷାତତ୍ତ୍ୱର ପରମ୍ପରାରେ ଶିକ୍ଷାର୍ଥୀମାନଙ୍କର ବୟସ ତଥା ବୌଦ୍ଧିକ ବିକାଶର ସ୍ତର ଅନୁସାରେ ପାଠ୍ୟବିଷୟ ଓ ପାଠ୍ୟପ୍ରଣାଳୀର ମାତ୍ରାଭେଦ କରାଯାଇ ପାରୁନଥିଲା । ଶିଶୁ ଜଣେ ଅପ୍ରାପ୍ତବୟସ୍କ ବା ଅଳ୍ପବିକଶିତ ପୌଢ଼—ଏହି ଜ୍ଞାନରେ ଶିଶୁବୟସର ବୈଶିଷ୍ଟ୍ୟ ଓ ବିକାଶର ଆବଶ୍ୟକତା ପ୍ରତି ଅବହେଳା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ କ୍ରମବର୍ଦ୍ଧିଷ୍ଣୁ ବିକାଶର ନିରବଚ୍ଛିନ୍ନ ଧାରା ପ୍ରତି ସମୁଚିତ ଦୃଷ୍ଟି ଦିଆଯାଇପାରୁ ନଥିଲା । ସମସାମୟିକ ମନୋବିଜ୍ଞାନ, ବିଶେଷକରି ଜନନ (Genetic) ମନୋବିଜ୍ଞାନର ଗବେଷଣା ଫଳରେ ବୟସାନୁପାତରେ ବିକାଶର ଲକ୍ଷଣଗୁଡ଼ିକୁ ନିରୂପିତ କରାଯାଇଅଛି । କିନ୍ତୁ ଏଦିଗର ବହୁ ସାଧକ ବିଶେଷତଃ ରୁଷଦେଶର ସାଧକଗଣ ଏହାକୁ ଅସ୍ୱୀକାର କରନ୍ତି ଓ ବିକାଶ ଯେ କ୍ରମିକ ଓ ନିରବଚ୍ଛିନ୍ନ ଧାରା ଏହା ପ୍ରତିପାଦନ କରନ୍ତି ।

ଏ ପ୍ରସଙ୍ଗରେ ସୋଭିଏତ୍ ବୈଜ୍ଞାନିକ L. S. Vygotskyଙ୍କ କୃତି ଉଲ୍ଲେଖଯୋଗ୍ୟ । ଏହା ହେଉଛି ମନୋଶିକ୍ଷାତତ୍ତ୍ୱ (Psychopedagogy)ର ସିଦ୍ଧାନ୍ତ । ତଦନୁସାରେ ବିଶ୍ୱାସ କରାଯାଏ ଯେ ବ୍ୟକ୍ତିବିଶେଷ ଚିନ୍ତା କରିବାକୁ ଓ ଶୁଦ୍ଧ ବିଚାର ଆୟତ୍ତ କରିବାକୁ ଶିକ୍ଷାକରେ । ଏହା ତା'ର ଜନ୍ମଗତ ନୁହେଁ । ଫଳରେ ପ୍ରାଥମିକ ଶିକ୍ଷାର ବିଷୟ, ବ୍ୟବସ୍ଥା ଓ ପ୍ରଣାଳୀ ବହୁଭାବରେ ପରିବର୍ତ୍ତିତ ହୋଇଅଛି । ମନୋଶିକ୍ଷାତତ୍ତ୍ୱର ସିଦ୍ଧାନ୍ତ ଯୋଗୁଁ ଦୁଇଟି ନୂତନ ବିଚାରର ଅବତାରଣା କରାଯାଇଅଛି । (୧) ଶିକ୍ଷାକୁ ଜୀବନବ୍ୟାପୀ କରିବାକୁ ହେବ ଓ (୨) ପରବର୍ତ୍ତୀ ତଥା ଅସଲଗ୍ନ ଅବସ୍ଥାରେ ଶିକ୍ଷାର ପୁନରାବୃତ୍ତି କରାଯିବ ।

ସଂରଚନାବାଦୀ (Structuralist) ମନୋବିଜ୍ଞାନରେ ରୂପର (form) ମନୋବିଜ୍ଞାନ ଉପରେ ଧ୍ୟାନ ଦିଆଯାଇଅଛି । ରୂପ ମନୋବିଜ୍ଞାନ ବା ଗେଷ୍ଟାଲଟ୍

ମନୋବିଜ୍ଞାନରେ ପ୍ରତିପାଦନ କରାଯାଏ ଯେ ଆଚରଣପଦ୍ଧତି ଓ ସଂଜ୍ଞାନାତ୍ମକ ସଂରଚନାରେ ମୌଳିକ ଐକ୍ୟ ରହିଛି । ଏସବୁ ପରସ୍ପର ପରିପୂରକ ସମଗ୍ର ଅଂଶ ଅଟେ । ଫଳରେ ବିଦ୍ୟାର୍ଥୀ ଅଧିଗମ କାଳରେ ସ୍ୱ ଉଦ୍ଦେଶ୍ୟ ଓ ଉପାୟ ନିର୍ବାଚନ କରିପାରିବ । ସାମାଜିକ ସମ୍ପର୍କ ଓ ବୌଦ୍ଧିକ ଉତ୍ତେଜନା କ୍ଷେତ୍ରରେ ସମନ୍ୱୟର ଅଗ୍ରାଧିକାର ଅପେକ୍ଷା ଆତ୍ମସାତ୍କରଣ (Assimilation)ର ଅଗ୍ରାଧିକାର ଅଧିକ ଥିବା ହେତୁରୁ ବିଦ୍ୟାଧ୍ୟୟନ ପ୍ରକ୍ରିୟାରେ ବିଦ୍ୟାର୍ଥୀର ସହଯୋଗ ଶିକ୍ଷାର ପ୍ରତ୍ୟେକ ସ୍ତରରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ମନସ୍ତତ୍ତ୍ୱର ସାମ୍ପ୍ରତିକ ଗବେଷଣା ଫଳରେ ଜ୍ଞାନର ସମସ୍ୟାଗୁଡ଼ିକ ଉପରେ ଧାରାବାହିକ ଅଧ୍ୟୟନ ହେଉଅଛି । ଏହାକୁ ଆଉ ଏବେ ପୁରୁଣାକାଳିଆ ଓ ଅପରିବର୍ତ୍ତନୀୟ ଭଣ୍ଡାରରୂପେ ବିବେଚନା କରାଯାଉନାହିଁ । କିନ୍ତୁ ବିକାଶର ଏକ ପ୍ରକ୍ରିୟା ଭବରେ ଏହା ପରିଗଣିତ ହେଉଅଛି । ଶିକ୍ଷଣ ଓ ସ୍ମରଣ ବିଷୟରେ ପରୀକ୍ଷାମୂଳକ (Experimental) ମନୋବିଜ୍ଞାନର ଗବେଷଣା, ଶୟନିକ (Clinical) ଅଧ୍ୟୟନ, ଜ୍ଞାନମୀମାଂସା ସମ୍ପର୍କୀୟ ଅନୁଧ୍ୟାନ ଓ ଚେଷ୍ଟାଲ୍ଟ ତଥା କ୍ଷେତ୍ର ମନୋବିଜ୍ଞାନର ଅଧ୍ୟୟନ– ଏସବୁ ହେତୁରୁ ଏତେ ଅଧିକ ଉପାଦାନ ସଂଗୃହୀତ ହେଲଣି ଯେ ସେସବୁକୁ ସୁବିନ୍ୟସ୍ତ କରାଗଲେ ଶିକ୍ଷାପଦ୍ଧତିର ଓ ଶିକ୍ଷାପ୍ରଣାଳୀର ବିପ୍ଳବିକ ସଂସ୍କାର କରାଯାଇପାରିବ ।

ଦଳ ଶିକ୍ଷାତତ୍ତ୍ୱ (Group pedagogy) ଓ ବ୍ୟକ୍ତିବିବରଣ (Persona-lisation) ମଧ୍ୟରେ ଏକ ମନୋରମ ସମନ୍ୱୟର ସନ୍ଧାନ ଅଧୁନାତନ ଗବେଷଣାର ସିଦ୍ଧାନ୍ତ ଅଟେ । ଏକ ଦଳର ସକ୍ରିୟ ସଦସ୍ୟ ରହି ସୁଦ୍ଧା ବ୍ୟକ୍ତିର ସ୍ୱକୀୟ ଶକ୍ତି, ସାମର୍ଥ୍ୟ, ଅଭିପ୍ରେରଣା, ଆବଶ୍ୟକତା, ଆଗ୍ରହ ପ୍ରତି ସମ୍ୟକ୍ ଧ୍ୟାନ ଦିଆଯାଇ ପାରିବ । ଶ୍ରେଣୀ, ସାଙ୍ଗସାଥିଙ୍କ ମେଳରେ ପ୍ରଭାବିତ ଓ ପରିବର୍ତ୍ତିତ ହେଉଥିବା ପ୍ରସଙ୍ଗରେ ଶିକ୍ଷାଗ୍ରହଣ କରୁଁ କରୁଁ ଛାତ୍ର ନିଜର ଶିକ୍ଷାରେ ଅଧିକରୁ ଅଧିକ ସକ୍ରିୟ ଭୂମିକା ଗ୍ରହଣ କରି ପାରିବ ।

ଅନ୍ୟ ଏକ ଅନୁରୂପ ସିଦ୍ଧାନ୍ତ ମଧ୍ୟ ମିଳୁଛି । ତାହା ମନୋସମାଜ ବିଜ୍ଞାନ (Psycho-sociology)ର ଅନ୍ତରୟଣ (Intervention) ତଥ୍ୟରୁ ଓ ମାନବିକ ସମ୍ପର୍କର ମନୋବିଜ୍ଞାନରୁ କର୍ମର କୌଶଳକୁ ଆଧାରିତ ହୋଇଅଛି । ତାହା ହେଉଛି ଯେ ଯେଉଁ ବ୍ୟକ୍ତିବିଶ୍ଳେଷକଙ୍କୁ ନେଇ ଗୋଟିଏ ଦଳଗଠନ କରାଯାଇଅଛି ସେହି ଦଳ

ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହେଲେହେଁ ସେହି ବ୍ୟକ୍ତିବିଶେଷଙ୍କ ସମ୍ପର୍କ ଉପରେ ଦଳ ମଧ୍ୟ ନିର୍ଭର କରେ । ଏଥିଯୋଗୁଁ ଶିକ୍ଷାୟତନର ପ୍ରାଧିକାରବାଦୀ (Authoritarian) ସତ୍ତାରେ ପରିବର୍ତ୍ତନ ଘଟିଛି । ଯେଉଁ ଜ୍ଞାନର ଗୁରୁତ୍ୱ ଛାତ୍ର ପ୍ରତି ରହିଛି ସେ ତାହାହିଁ ଆହରଣ କରିବାରେ ବ୍ରତୀ ହୁଏ । Kurt Lewin ସାମାଜିକ ଜଳବାୟୁ (Social climate)ର ପ୍ରଭବ ଉପରେ ଅନୁସନ୍ଧାନ କରିଥିଲେ । ପ୍ରାଧିକାରବାଦ, ଗଣତନ୍ତ୍ର ଓ ଯଥାସ୍ଥି–ଏହି ତିନି ଅବସ୍ଥାରେ ଛାତ୍ରମାନଙ୍କୁ ଅଧ୍ୟୟନ କରିବାକୁ ଦିଆଯାଇଥିଲା । ଉକ୍ତ ଅନୁସନ୍ଧାନରୁ ସୂଚୀତ ହୁଏ ଯେ ସ୍ୱଚ୍ଛନ୍ଦ ତଥା ଆତ୍ମନିର୍ଦ୍ଦେଶନାତ୍ମକ ପରିବେଶ ବିକାଶ ପାଇଁ ଖୁବ୍ ସହାୟକ । ଏହି ଅନୁସନ୍ଧାନର ସୁଦୂରପ୍ରସାରୀ ପରିଣତି ଶିକ୍ଷକ-ଶିକ୍ଷା, ଶିକ୍ଷାସଙ୍ଗଠନ, ପ୍ରଣାଳୀ ଓ ପ୍ରଶାସନକୁ ପ୍ରଭବିତ କରିପାରିବ । ସାମାଜିକ ସଙ୍ଗଠନ ଓ ପରିବର୍ତ୍ତନରେ ଏହାର ପ୍ରଭବ ପଡ଼ିପାରେ । ଦଳମଧ୍ୟସ୍ଥ ଓ ଦଳଦଳାନ୍ତର ମଧ୍ୟରେ ସମ୍ପର୍କ ସହଜ ଓ ସ୍ୱାଭବିକ ହେବ । ପର୍ଯ୍ୟବେକ୍ଷଣ, ବିଶ୍ଳେଷଣ, ବିଦାନ ଓ ମୂଲ୍ୟାୟନ–ଏହିସବୁ କାର୍ଯ୍ୟ, ଯାହାକି ଦଳପତିଙ୍କ ଉପରେ ଆରୋପିତ ହୋଇଥାଏ, ତାହା ଦଳର ସଭ୍ୟଗଣ ହାତକୁ ନେବାର ଦେଖାଯାଏ ।

ଶିକ୍ଷାର ପ୍ରତ୍ୟେକ ବିଭଗ ଆଜି ପରୀକ୍ଷା-ନିରୀକ୍ଷାର ଅନ୍ତର୍ଭୁକ୍ତ ହୋଇଅଛି । କୌଣସି କ୍ରିୟା-କଳାପ, କୌଶଳ, କାମଧନ୍ଦା ଓ କର୍ମଯୋଜନାକୁ ଧରବନ୍ଧା ଗତରେ ଧରିନିଆ ଯାଇପାରେ ନାହିଁ । ଆଭ୍ୟନ୍ତରୀଣ ତଥା ଶିକ୍ଷାୟତନ ବହିର୍ଭୂତ ଶକ୍ତି, ତାଡ଼ନା ଓ ଉତ୍ତେଜନାର ପ୍ରଭବ ଫଳରେ ଏସବୁ ଅଥୟ ହେଉଅଛି । ଯଦି ଅଧ୍ୟୟନ ଓ ଅଧ୍ୟାପନା ଶିକ୍ଷାର ମୁଖ୍ୟ ବିଭଗ ବୋଲି ବିବେଚିତ ହୁଏ, ତେବେ ଏହାର ପ୍ରକୃତି, ଗତି, ରୀତି ଆଦି ବୈଜ୍ଞାନିକ ଅଧ୍ୟୟନର କେନ୍ଦ୍ର ବିଷୟ ହୋଇଅଛି । ଆଚରଣ-ବାଦର ଉତ୍ତେଜକ ଅନୁକ୍ରିୟା (Stimulus – Response) ସମ୍ପର୍କ ଶିକ୍ଷଣର ସ୍ୱରୂପ ନିର୍ଣ୍ଣୟ କରିବାରେ ପର୍ଯ୍ୟାପ୍ତ ନୁହେଁ । ଏହି ମନୋବୈଜ୍ଞାନିକ ବିଶ୍ୱର ଧାରରେ "ବାଲ୍‌କ ବକ୍‌ସ" ଶାଖା ଉତ୍ତେଜକ ଓ ଅନୁକ୍ରିୟା ମଧ୍ୟ-ସମ୍ପର୍କ ପ୍ରତି ଦୃଷ୍ଟି ରଖୁ ନାହିଁ । "ବାଲ୍‌କ ବକ୍‌ସ" ନୀତି ଆମେରିକାରେ ପରିତ୍ୟକ୍ତ ହେବାର ଧାର ଦେଖିବାକୁ ମିଳେ . ଶିକ୍ଷଣ ପ୍ରକ୍ରିୟାରେ ଉତ୍ତେଜନାକୁ ବିତରିତ କରିବା ପାଇଁ ସୁନିୟନ୍ତ୍ରିତ ଯନ୍ତ୍ରପାତି ବ୍ୟବହାର କରଯାଉଛି । ଏଥିପାଇଁ ଅସ୍ତିସୂଚକ ପୁନର୍ବଳନର (positive reinforcement) ସାହାଯ୍ୟ ନିଆଯାଇପାରେ । ଏହାଫଳରେ ଶିକ୍ଷଣର କ୍ଷେତ୍ରାନ୍ତର ପ୍ରୟୋଗ

ସୁସାଧିତ ହୋଇପାରେ । ଶିକ୍ଷଣ ସୁଦୃଢ଼ ହେବା ସଙ୍ଗେ ସଙ୍ଗେ ଶିକ୍ଷା ଜୀବନ ମାଧ୍ୟମରେ ଜୀବନ ପାଇଁ ଜୀବନବ୍ୟାପୀ ପ୍ରକ୍ରିୟାରେ ପରିଣତ ହୋଇଯିବ ।

କେବଳ ଆମ ଦେଶରେ ନୁହେଁ, ସାରା ବିଶ୍ୱରେ ଶିକ୍ଷାରେ ସଙ୍କଟ ଉପୁଜିଛି । ଏହା ଏକ ସଂଘର୍ଷର ସମ୍ମୁଖୀନ ହୋଇଅଛି । ଚରିତ୍ରରେ ସଙ୍କଟ, ସଂସ୍କୃତିରେ ସଙ୍କଟ ଆଦି ବହୁ ଭାବରେ ଏହା କଥିତ ହୁଏ । ଶିଳ୍ପ ସମୃଦ୍ଧ ସମାଜରେ ସୃଜନଶୀଳ ମାନବର ସୃଷ୍ଟି ପରିବର୍ତ୍ତେ କାରିଗର ଓ ଶାସକ ପ୍ରତି ଲକ୍ଷ୍ୟ କରାଯାଉଅଛି, କାରଣ ସେ ସବୁ ସମାଜରେ ଉଚ୍ଚତର ଶିକ୍ଷା, ବିଶେଷତଃ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇଁ ଛାତ୍ରଗ୍ରହଣ ବୁଦ୍ଧିପରୀକ୍ଷଣ ଓ ମାଧ୍ୟମିକ ଶିକ୍ଷାର ଫଳ ଉପରେ ପର୍ଯ୍ୟବସିତ ହୋଇଅଛି । କିନ୍ତୁ ଏହି ଦୁଇ ଫଳର ପ୍ରାୟ କୌଣସି ସମ୍ପର୍କ ବାସ୍ତବ ଜୀବନର ସୃଜନଶୀଳତା ସହିତ ନଥାଏ । ତେଣୁ କେବଳ "ବହିଘୋଷା," "ପୁସ୍ତକକୀଟ" ହେବା ଉପରେ ଅତ୍ୟଧିକ ଗୁରୁତ୍ୱ ନ ଦେଇ ବାସ୍ତବ କ୍ରିୟାକଳାପ, ବିଚାର ଓ ଆଚାର, ସ୍ୱାଧୀନ ଚିନ୍ତା ଉପରେ ପ୍ରାଧାନ୍ୟ ଆରୋପ କରାଯିବା ଦରକାର । ଏହି ଶୀର୍ଷକରେ ବହୁ ଗବେଷଣା ମନୋବିଜ୍ଞାନୀମାନଙ୍କ ଚିନ୍ତା ପରିସରଭୁକ୍ତ ହୋଇଅଛି । ବୁଦ୍ଧିପରୀକ୍ଷଣ, ଶୈକ୍ଷିକ ଉପଲବ୍ଧି (academic achievement) ଓ ସୃଜନଶୀଳତା ସମ୍ପର୍କରେ ଅନୁସନ୍ଧାନ କରାଯାଇଅଛି । ବ୍ୟକ୍ତିର ସୃଜନଶୀଳତାହିଁ ଜାତିର ପ୍ରକୃତ ସମ୍ବଳ । ସେ ଦୃଷ୍ଟିରୁ ଶିକ୍ଷାରେ ମୂଲ୍ୟାୟନ, ବିଭିନ୍ନ ବୃତ୍ତି ଓ ଶିକ୍ଷା ପାଇଁ କର୍ମୀ ଗ୍ରହଣ, ନୈଦାନିକ ଓ ଶିକ୍ଷାସହାୟକ ପଦକ୍ଷେପ ଆଦି ବିଷୟରେ ପର୍ଯ୍ୟାପ୍ତ ଚିନ୍ତା ଓ ଗବେଷଣା କରାଯାଉଅଛି ।

ମନୋବିଜ୍ଞାନ ଓ ଏହାର ବିଭିନ୍ନ ଶାଖା, ନୃତତ୍ତ୍ୱ, ପଦାର୍ଥବିଜ୍ଞାନ, ପ୍ରୟୋଗାତ୍ମକ ଗଣିତ, ଜୀବବିଜ୍ଞାନ, ଜ୍ଞାନମୀମାଂସା, ସମାଜବିଜ୍ଞାନ ଆଦି ଅଖଣ୍ଡ ଓ ଅନନ୍ତ ଜ୍ଞାନରାଜ୍ୟର ବିଭିନ୍ନ ବିଚାରଧାରା ଦ୍ୱାରା ପ୍ରଭାବିତ ଓ ପରିପୁଷ୍ଟ ହେବା ସଙ୍ଗେ ସଙ୍ଗେ ସ୍ୱକୀୟ ସାଧନାର ସାଧନ ଓ ଆଭିମୁଖ୍ୟକୁ ଶାଣିତ କରି ଶିକ୍ଷାବିଜ୍ଞାନ ସମୃଦ୍ଧ ହେବାରେ ଲାଗିଛି । ସାଧାରଣ ଶିକ୍ଷକଙ୍କୁ ଅନୁପ୍ରାଣିତ କରିବା ପାଇଁ କ୍ରିୟାନୁସନ୍ଧାନର (action research) ଯୋଜନା ଗ୍ରହଣ କରାଯାଇ ଅଛି । ଶିକ୍ଷାକର୍ମ କୌଶଳ କେନ୍ଦ୍ର (Centre for Educational Technology) ପ୍ରତିଷ୍ଠା କରାଯାଉଛି । ଏସବୁ ସତ୍ତ୍ୱେ ଶିକ୍ଷାରେ ସାଧାରଣ କାର୍ଯ୍ୟକ୍ରମ ଓ ଅଭ୍ୟାସ ଯେପରି ସେପରି ରହିଛି । ବିଚାର ଓ ଆଚାରର

ବ୍ୟବଧାନ ବ୍ୟକ୍ତି ଓ ସମାଜ ଜୀବନରେ ଯେପରି ଶିକ୍ଷାରେ ସେହିପରି ବୃଦ୍ଧି ପାଇବାରେ ଲାଗିଛି । ଚିନ୍ତା ଯେପରି ଦ୍ରୁତ ହେଉଛି, ଏହାର ପ୍ରୟୋଗ ସେପରି ହେଉନାହିଁ । ଏଇ ମୁହୂର୍ତ୍ତର ଚିନ୍ତାର ଫଳ ଠିକ୍ ତତ୍ପରବର୍ତ୍ତୀ ମୁହୂର୍ତ୍ତକୁ ଅନୁପଯୋଗୀ ଓ ଅପାଙ୍କ୍ତେୟ ହେବାର ଆଶଙ୍କାରେ ଗବେଷକ କ୍ଷୁଣ୍ଣ ଅନୁଭବ କରୁଅଛନ୍ତି । ଚିନ୍ତାର ଅଚିନ୍ତ୍ୟଦ୍ରୁତ ଗତିହିଁ ଚିନ୍ତାନାୟକଙ୍କୁ ମଳିନ ଓ ମ୍ରିୟମାଣ କରିଥାଏ । ଅଥଚ ପ୍ରୟୋଗ କ୍ଷେତ୍ରର ପଥିକ ସ୍ୱପଛାନୁସରଣକୁ ଶ୍ରେୟ ମନେକରେ । ପଛାନ୍ତର ଗ୍ରହଣକୁ ଶଙ୍କାଦୃଷ୍ଟିରେ ସେ ଦେଖେ । ସାହସିକ ପଦକ୍ଷେପ ନେବାରେ ସେ ନିଜକୁ ନିସଙ୍ଗ ମନେକରେ । ପୁନଶ୍ଚ ଚିନ୍ତାରାଜ୍ୟର ନିତ୍ୟ ନୂତନ ଜ୍ଞାନ, କୌଶଳ ଓ ଧାରା ସାଧାରଣ ଶିକ୍ଷକଙ୍କର କର୍ମକ୍ଷେତ୍ରରେ ପହଞ୍ଚିପାରେ ନାହିଁ । କର୍ମ ଜଞ୍ଜାଳକୁ ଅତିକ୍ରମ କରି ସେ ଯେପରି ନୂତନ ଦିଗନ୍ତର ଆହ୍ୱାନର ସମ୍ମୁଖୀନ ହେବେ ଏହାହିଁ ଏ କ୍ଷେତ୍ରରେ ସମସ୍ୟା ।

**

**

# ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ

ଓ୍ୱେରେଟି ପିଲର ବାପା ରିଗ୍ୱର୍ଡ କାର୍ଡିନାଲର ପଇସା ନାହିଁ, ସମୟ ନାହିଁ ଓ କାମରୁ ଛୁଟି ନାହିଁ । ସେ ପଢ଼ିବ କିପରି ? ସେ ଫୋର୍ଡ କାରଖାନାର ଶ୍ରମିକ । କିନ୍ତୁ ମନ ତା'ର ବ୍ୟାକୁଳ, ସେ ପଢ଼ନ୍ତା କି ? ସେ ଖଡ଼ି ଛୁଇଁ ନାହିଁ, ଅବଧାନଙ୍କ ପାଖରେ ବସି ନାହିଁ ଓ ଶ୍ରେଣୀରେ ପାଦ ପକାଇ ନାହିଁ । ଗତବର୍ଷ ସେ ଆବିଷ୍କାରକଲା ଯେ ସେ ନିଉୟର୍କର ଷ୍ଟେଟ ବିଶ୍ୱବିଦ୍ୟାଳୟର ଏକ ଅଙ୍ଗ ଏମ୍ପାୟାର ଷ୍ଟେଟ କଲେଜର ଜଣେ ଡ଼ିଗ୍ରୀଧାରୀ ଛାତ୍ର, ସେ ଆଉ ଶ୍ରମିକ ନୁହେଁ କିନ୍ତୁ ଶ୍ରମଆନ୍ଦୋଳନ–ଇତିହାସର ଛାତ୍ର, ସେ ଆଉ ଫୋର୍ଡ କାରଖାନାରେ ମଟରଗାଡ଼ି ସଜାଡୁ ନାହିଁ କିନ୍ତୁ ସେ ଶ୍ରମ-ସମ୍ପର୍କରେ ସୁରକ୍ଷା ପାଇଁ ଅନ୍ୟମାନଙ୍କୁ ସାହାଯ୍ୟ କରୁଛି ।

ଏହିପରି ଆହୁରି ଅନେକ ଛାତ୍ର ପ୍ରାଚୀର-ବିହୀନ କଲେଜ ଓ ପ୍ରାଚୀର-ବିହୀନ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଛନ୍ତି । ହଜାର ହଜାର ଯୁବକ ଓ ପୌଢ଼ କଲେଜକୁ ଯାଇପାରୁ ନାହାନ୍ତି କିନ୍ତୁ କଲେଜ ଶିକ୍ଷା ପାଇବାର ପ୍ରବଳ ବାସନା ସେମାନଙ୍କର ଅଛି । "ବିନା କଲେଜରେ କଲେଜ ଶିକ୍ଷାର" ଅଭିନବ ପରୀକ୍ଷା ଓହାଇଓ ଓ ନିଉୟର୍କରେ ଆରମ୍ଭ କରଯାଇ ଅଛି । ଆମେରିକାର ଏହି ପ୍ରାଚୀର-ବିହୀନ ବିଶ୍ୱବିଦ୍ୟାଳୟ (University without walls) ମାତ୍ର ବର୍ଷକରେ ସାରା ଦେଶରେ ଅଭିଭାବକ, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାଶାସ୍ତ୍ରୀଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରିଛି । ସେମାନେ ଅଧିକରୁ ଅଧିକ ଆକୃଷ୍ଟ ହେଉଛନ୍ତି । ଉଚ୍ଚତର ଶିକ୍ଷାର ଦିଗନ୍ତ ସୁଦୂରପ୍ରସାରୀ । ମାନସିକ ଉତ୍କର୍ଷ ଓ ବୌଦ୍ଧିକ ଦୁଃସାହସିକତା ଏହାର ଧ୍ୟେୟ । ଜୀବନର ଚରମ ଓ ପରମ ପରାକାଷ୍ଠା ଏହାର ଲକ୍ଷ୍ୟ । ଏଥିପାଇଁ କେତେଖଣ୍ଡ ପୁସ୍ତକ, ଗୋଟାଏ ପାଠ୍ୟକ୍ରମ, ଏକ ଚିରାଚରିତ ପ୍ରଣାଳୀ ଓ ଏକ ପ୍ରାସାଦ କ'ଣ ଏହାକୁ ସୀମିତ କରିପାରିବ ? ଏକ ସର୍ବସାଧାରଣ ପରୀକ୍ଷା ଏହାର ମୂଲ୍ୟାଙ୍କନ କ'ଣ କରିପାରିବ ? ବୟସର ସୀମା ଓ ନିର୍ଦ୍ଧାରିତ ସ୍ଥାନ ସଂଖ୍ୟା ଜ୍ଞାନାର୍ଜନର ପ୍ରବଳ ପିପାସାକୁ କ'ଣ ରୋକି ପାରିବ ? ଏକ ରକ୍ଷଣଶୀଳ ମନୋଭାବ ଓ ଧରାବନ୍ଧା ଆଇନ କାନୁନ କ'ଣ ଉନ୍ମୁକ୍ତ ମନର ପରିପୋଷଣ କରି ପାରିବ ?

ସତ୍ୟର ସନ୍ଧାନ ଓ ସାଧନା କଅଣ ସମୟର ସୀମା ଓ ଶାସ୍ତ୍ରର ଜ୍ଞାନରେ ସୀମିତ ହୋଇପାରିବ ?

ଏ ଦିଗରେ ଗ୍ରେଟବ୍ରିଟେନର ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ (Britain's Open University) ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଅଛି । ଏହା ୧୯୬୯ ମସୀହାରେ ଆରମ୍ଭ କରାଯାଇଥିଲା । ୩୫୦୦୦ ଗୃହିଣୀ, ପରିଗ୍ରାଜକ ଓ ଏଥିରେ ସୈନ୍ୟ ଯୋଗ ଦେଇଥିଲେ । କଳା ଓ ବିଜ୍ଞାନର ବିଭିନ୍ନ ବିଭାଗରେ ସେମାନେ ସ୍ନାତକ ପାଠ୍ୟକ୍ରମ ଅଧ୍ୟୟନ କରୁଅଛନ୍ତି । ପ୍ରବେଶ ପାଇଁ ନିର୍ଦ୍ଦିଷ୍ଟ ଯୋଗ୍ୟତା ନାହିଁ । ଲେଖି ପଢି ଜାଣିଥିଲେ ଚଳିବ । ଛାତ୍ରପିଛା ପ୍ରାୟ ୨୦୦ ପାଉଣ୍ଡ ଖର୍ଚ୍ଚରେ ପାଠ୍ୟକ୍ରମରେ ଏକ ସପ୍ତାହରେ ଗ୍ରୀଷ୍ମକାଳୀନ ଶିକ୍ଷାକ୍ରମ, ୩୪ ସପ୍ତାହରେ ଟେଲିଭିଜନ ଓ ରେଡ଼ିଓ ବକ୍ତୃତା, ବହୁସଂଖ୍ୟକ ପଠନ ଓ ଲିଖନର ନିରୂପିତ କାର୍ଯ୍ୟକ୍ରମର ବ୍ୟବସ୍ଥା ରହିଛି । ବିଧି ଓ ବ୍ୟବସ୍ଥାର ବିଭିନ୍ନତା ଓ ସଦୁପଯୋଗ ଦ୍ୱାରା ଶିକ୍ଷାୟତନର ଢାଁଚାର ମଧ୍ୟରେ ସୀମିତ ନ ହୋଇ ଏକ ଆଗ୍ରହୀ ଶ୍ରଦ୍ଧାବାନ୍ ଲୋକର ସମୀପସ୍ଥ ହୋଇଅଛି ।

ଗ୍ରେଟ୍‌ବ୍ରିଟେନର ପାରମ୍ପରିକ ଶିକ୍ଷା ବିଭାଗ ଏଥିପ୍ରତି ଅସହିଷ୍ଣୁ ହୋଇ ପଡ଼ିଥିଲା । କିନ୍ତୁ ବୌଦ୍ଧିକ ମାନ ଯେ ଉଚ୍ଚକୋଟୀର ହୋଇପାରୁଛି, ତଦ୍ୱାରା ସେଠାର ମତିଗତି ବଦଳି ଯାଉଛି । ଜଣାଯାଏ ଯେ ପ୍ରଥମ ବର୍ଷର ପାଠ୍ୟକ୍ରମରେ ଯେଉଁ ୨୪୦୦୦ ଛାତ୍ରଙ୍କର ନାମ ଲେଖା ଯାଇଥିଲା ସେହି ସଂଖ୍ୟାର ଏକ ପଞ୍ଚମାଂଶ ପାଠପଢ଼ା ଛାଡ଼ିଦେଲେ ଓ ଅନ୍ୟ ଏକପଞ୍ଚମାଂଶ ଶେଷ ପରୀକ୍ଷା ଦେଲେ ନାହିଁ କାରଣ ପରୀକ୍ଷାର ମାନ ଅକ୍‌ସଫୋର୍ଡ ବା କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ମାନ ସଙ୍ଗେ ସମାନ ଥିଲା । ଯେଉଁମାନେ ପରୀକ୍ଷା ଦେଲେ ସେମାନଙ୍କ ମଧ୍ୟରେ ଶତକଡା ୯୩ ଜଣ କୃତକାର୍ଯ୍ୟ ହୋଇଥିଲେ ।

ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର କୁଳାଧିପତି ଲର୍ଡ କ୍ରୋଥର ୧୯୬୯ ମସୀହା ଜୁଲାଇ ୨୩ ତାରିଖରେ ବିଶ୍ୱବିଦ୍ୟାଳୟ ଉଦ୍‌ଘାଟନ ଉତ୍ସବରେ ଅଭିଭାଷଣ ପ୍ରସଙ୍ଗରେ ଏହାର ଶିକ୍ଷାଦର୍ଶନ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ପ୍ରଥମତଃ ଏପ୍ରକାର ବିଶ୍ୱବିଦ୍ୟାଳୟ ଦ୍ୱାରା ସବୁ ଶ୍ରେଣୀର ଲୋକଙ୍କ ପାଇଁ ଉନ୍ମୁକ୍ତ ଥାଏ । ପୂର୍ବବର୍ତ୍ତୀ ପାଠର କୃତିତ୍ୱ ହେଉଛି ପରବର୍ତ୍ତୀ ପାଠ ପାଇଁ ସୋପାନ ଓ ଏହା ପାରମ୍ଭିକ ଉଚ୍ଚଶିକ୍ଷାର

ନିୟମ । କିନ୍ତୁ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟରେ କୌଣସି ପ୍ରବେଶ ଯୋଗ୍ୟତା ନ ଥାଏ । (କ) ଯେଉଁ ବୟସ୍କ ଲୋକ ଯୌବନାବସ୍ଥାରେ ଶିକ୍ଷା ସୁଯୋଗରୁ ବଞ୍ଚିତ, (ଖ) ଯେଉଁ ବୃତ୍ତିଧାରୀ ଲୋକଙ୍କର ସ୍ୱବୃତ୍ତିରେ ଅଧିକ ଜ୍ଞାନାର୍ଜନର ଆବଶ୍ୟକତା ଥାଏ, (ଗ) ଯେଉଁ ମେଧାବୀ ଲୋକ ନାନା କାରଣରୁ ପାଠ ଛାଡ଼ିବାକୁ ବାଧ୍ୟ ହୁଅନ୍ତି କିନ୍ତୁ ଅଧ୍ୟୟନର ବାସନା ଥାଏ, ( ଘ ) ବିଶ୍ୱବିଦ୍ୟାଳୟ ପ୍ରବେଶ-ଯୋଗ୍ୟତା ଥାଇ ସୁଦ୍ଧା ଯେଉଁମାନେ ସ୍ଥାନଲାଭ କରିପାରନ୍ତି ନାହିଁ ଓ (ଙ) ଯେଉଁ ମହିଳାଗଣ ବୈବାହିକ ଜୀବନ ହେତୁ ଶିକ୍ଷାଲାଭରୁ ବଞ୍ଚିତ ହୁଅନ୍ତି, ସେମାନେ ଯୋଗଦେଇ ପାରିବେ । ପ୍ରବେଶ ପାଇଁ ଧରାବନ୍ଧା ଯୋଗ୍ୟତା ଧାର୍ଯ୍ୟ କରାଯାଇ ନଥାଏ ।

ଏହି ବିଶ୍ୱବିଦ୍ୟାଳୟ ମଧ୍ୟ ସ୍ଥାନ ଦୃଷ୍ଟିରୁ ଉନ୍ମୁକ୍ତ । ଏହା ନିର୍ଦ୍ଦିଷ୍ଟ ଶିକ୍ଷାୟତନର ପରିସର ମଧ୍ୟରେ ସୀମିତ ନୁହେଁ । ସମଗ୍ର ଇଂଲଣ୍ଡ, ଓ୍ୱେଲସ୍, ସ୍କଟଲଣ୍ଡ ଓ ଉତ୍ତର ଆୟରଲଣ୍ଡ ପାଇଁ ମାତ୍ର ଗୋଟିଏ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ । ଏହା ସମଗ୍ର ଗ୍ରେଟ ବ୍ରିଟେନ୍ ପାଇଁ ଅଭିପ୍ରେତ । ଦ୍ୱିତୀୟତଃ ଏହା ସମଗ୍ର ବିଶ୍ୱବିଦ୍ୟାଳୟର ସେବା କରିପାରେ, ଯଦି ଭାଷା, ସଂଗଠନ, ଟେଲିଭିଜନ ଆଦିର ଅସୁବିଧା ନ ହୁଏ । ତୃତୀୟତଃ କୌଣସି ଗୋଟିଏ ପ୍ରଣାଳୀ, ଉପାୟ ବା ଉପାଦାନ ପ୍ରତି ବାନ୍ଧି ନ ହୋଇ ବହୁବିଧ ପ୍ରଣାଳୀ, ଉପାୟ ବା ଉପାଦାନର ଉପଯୋଗ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟରେ କରାଯାଏ । ବିଭିନ୍ନ ବିଷୟ ମଧ୍ୟରେ ଯେଉଁ ଦୁର୍ଭେଦ୍ୟ ପ୍ରାଚୀର ପାରମ୍ପରିକ ଶିକ୍ଷାୟତନରେ ଥାଏ ତାହା ପରିବର୍ତ୍ତେ ବିଦ୍ୟାର୍ଥୀକୁ ଜ୍ଞାନ ଓ ଅଭିଜ୍ଞତା ପ୍ରତି ଆଗ୍ରହୀ କରିବା ପାଇଁ ବହୁବିଷୟ ଅଧ୍ୟୟନ ରୀତି ( multi-discipline-approach ) ଅନୁସରଣ କରାଯାଏ । ଏହାଛଡ଼ା ଏଥିରେ ପତ୍ର-ବିନିମୟ ( correspondence course ) ବ୍ୟବସ୍ଥା ଅଛି । ତନ୍ମଧ୍ୟରୁ ଅନେକ ସ୍ଥଳରେ ଛାତ୍ରମାନେ ଉତ୍ତର ଲେଖି ପଠାନ୍ତି । ରେଡ଼ିଓ ଓ ଟେଲିଭିଜନ କାର୍ଯ୍ୟକ୍ରମ ରୀତିମତ ଚାଲିଥାଏ । ସ୍ୱଳ୍ପ ମିଆଦୀ ପାଠ୍ୟକ୍ରମ ଗ୍ରୀଷ୍ମକାଳରେ ବା ସପ୍ତାହ ଶେଷରେ ରହିଛି । ଉପଦେଷ୍ଟା ଓ ଅଭିଜ୍ଞ ଶିକ୍ଷକଙ୍କ ସହିତ ଆଲୋଚନାର ବ୍ୟବସ୍ଥା ଆଞ୍ଚଳିକ ଭିତ୍ତିରେ କରାଯାଏ । ଆବଶ୍ୟକତା ଅନୁସାରେ ଏ ସବୁର ସଦୁପଯୋଗ କରାଯାଏ । ପ୍ରକୃତରେ ଯେ କୌଣସି ଉଚ୍ଚ ଶିକ୍ଷାନୁଷ୍ଠାନର ସ୍ୱମର୍ଯ୍ୟାଦା ଓ ମାନର ସୁରକ୍ଷା ଓ ଅଭିବୃଦ୍ଧି ଦୃଷ୍ଟିରୁ କେବେହେଁ ରକ୍ଷଣଶୀଳ ଓ ସ୍ଥାଣୁ ହୋଇ ନ ପାରେ । ଉଦ୍ଦେଶ୍ୟ ଓ ଉପାୟ, ସିଦ୍ଧି ଓ ସାଧନା—ଏସବୁ ପରସ୍ପର ପରିପୂରକ ହେବା ଉଚିତ । ମାନବିକ ଅବବୋଧ ଓ ଚରମ ଉତ୍କର୍ଷ ସାଧନ ପାଇଁ ସହାୟକ ଯେ କୌଣସି ଉପାୟ

ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟରେ ବ୍ୟବହାର କରାଯାଏ । ବହୁବିଧ ମାଧ୍ୟମର ବିନିଯୋଗ ( multi-media ) କରି ଶିକ୍ଷାଦାନରେ ସମନ୍ୱୟ ସ୍ଥାପନ କରିବା ଯେପରି ଗବେଷଣାସାପେକ୍ଷ ସେହିପରି ଫଳପ୍ରଦ ।

ନିତ୍ୟ ନୂତନ ଜ୍ଞାନର ଅନାବରଣ ତଥା ଆବାହନ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ଶିକ୍ଷା ଦର୍ଶନର ଅନ୍ୟତମ ବୈଶିଷ୍ଟ୍ୟ । ପାରମ୍ପରିକ ଶିକ୍ଷାୟତନର ଚିର ସହଚର ହେଉଛି ରକ୍ଷଣଶୀଳତା ଓ ଏହା ବିରୁଦ୍ଧରେ ତିବ୍ର ବିମୁଖତା ପ୍ରକାଶ କରି ଏହି ବିଶ୍ୱବିଦ୍ୟାଳୟ ପ୍ରଗତି ଓ ପ୍ରତିଭାର ସ୍ୱାଗତ କରେ । ଏଥିରେ ଯେଉଁ ପରିବର୍ତ୍ତନ ସୂତ୍ରପାତ କରାଯାଉ ଅଛି ତାହା ପ୍ରଚଳିତ ପରମ୍ପରାର ବହୁ ଉର୍ଦ୍ଧ୍ୱରେ । ଏହାର ସମର୍ଥକଗଣ ଯାହା ଦାବୀ କରନ୍ତି ତାହା ଆମ ଭାରତୀୟ ଭାଷାରେ "ଆନୋଭଦ୍ରା କ୍ରତବୋୟନ୍ତୁ ବିଶ୍ୱତଃ"ର ପ୍ରତୀକ । ନୂତନ ଚିନ୍ତା ଓ ଜ୍ଞାନ ପାଇଁ ଏହାର ଦ୍ୱାର ସର୍ବଦା ଉନ୍ମୁକ୍ତ ।

ଭାରତ ଭୂମିରେ ଏକ ନୂତନ ପରୀକ୍ଷା ପାଇଁ ଉଦୀପନା ଓ ଉତ୍ସାହ ପ୍ରକାଶ ପାଇଛି । ୧୯୭୦ ମସୀହା ଡ଼ିସେମ୍ବର ୧୬ ତାରିଖରୁ ୧୮ ତାରିଖ ପର୍ଯ୍ୟନ୍ତ ତିନିଦିନ ବ୍ୟାପୀ ଆଲୋଚନାଚକ୍ର ଦିଲ୍ଲୀ ବିଜ୍ଞାନ ଭବନରେ ଅନୁଷ୍ଠିତ ହୋଇଥିଲା । ବ୍ରିଟେନର ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ସମ୍ପାଦକ, ଅନ୍ୟ କେତେକ ଅଧ୍ୟାପକ, ଆମେରିକାର ଦୁଇ ଜଣ ପରିଦର୍ଶକ ଓ ଭାରତର ଶିକ୍ଷା ମନ୍ତ୍ରଣାଳୟର ମିଳିତ ପ୍ରଚେଷ୍ଟାରେ ଆଲୋଚନା ଚକ୍ରର ବ୍ୟବସ୍ଥା କରାଯାଇଥିଲା । ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଅଧ୍ୟାପକ V.K.R.V. Rao ତାଙ୍କ ଉଦ୍‌ଘାଟନ ଭାଷଣରେ ଏହି ନୂତନ ପରୀକ୍ଷାର ଉପାଦେୟତାର ଉଚ୍ଚ ପ୍ରଶଂସା କରିଥିଲେ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅଧ୍ୟକ୍ଷ ଡଃ କୋଠାରୀ ଆଲୋଚନା ଚକ୍ରରେ ସଭାପତିତ୍ୱ କରି ଉନ୍ମୁକ୍ତ ମନରେ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ବିଚାର କରିବାକୁ ନିବେଦନ କରିଥିଲେ । ଭାରତୀୟ ଆଲୋଚକଗଣ ଉଚ୍ଚତର ଶିକ୍ଷାର ଗୁଣାତ୍ମକ ବିକାଶ, ଶିକ୍ଷାରେ ଗୁରୁ ଛାତ୍ରର ସମ୍ପର୍କ ଆଦି ଶିକ୍ଷାର ବହୁବିଧ ସମସ୍ୟା ଉପରେ ଆଲୋକପାତ କରିଥିଲେ । ଡଃ କୋଠାରୀ ତାଙ୍କ ଅଧ୍ୟକ୍ଷୀୟ ଅଭିଭାଷଣରେ (୧) ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟ ଓ ବିଦ୍ୟାୟତନ ତଥା ବିଶ୍ୱବିଦ୍ୟାଳୟ ପରସ୍ପରର ପରିପୂରକ ହୋଇ ସମାଜର ମଙ୍ଗଳ ସାଧନ କରିବା ଉଚିତ, (୨) ସାବଧାନତା ଅବଲମ୍ବନ କରାନଗଲେ ସମୁନ୍ନତ ପ୍ରଚଳିତ ବିଶ୍ୱବିଦ୍ୟାଳୟ ମଧ୍ୟ ନିମ୍ନ କୋଟୀର ଉନ୍ମୁକ୍ତ ବିଶ୍ୱ ବିଦ୍ୟାଳୟରେ ପରିଣତ ହୋଇ ପାରେ ଇତ୍ୟାଦି ବିଷୟର ଆଲୋଚନା କରିଥିଲେ ।

ଭାରତୀୟ ଶିକ୍ଷା ପରିପ୍ରେକ୍ଷୀରେ ଶିକ୍ଷାର ବିମୂର୍ତ୍ତି କ୍ରମେ ସୁଦୂର ପରାହତ ହୋଇଯାଇଅଛି । ଦୋଷ ତ୍ରୁଟିର ବହୁ ଜଟିଳତା ଆମକୁ ଗ୍ରାସ କରିବାରେ ଲାଗିଛି, ସେଥିରେ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ଚିନ୍ତା ଆମକୁ ଅନୁପ୍ରାଣିତ କରୁ । ଶୁଭକଥା, ଏଇ ଏବେ ଭାରତ ସରକାର ପୁନଶ୍ଚ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପାଇଁ ଉଦ୍ୟମ କରୁଛନ୍ତି । ଏ ସମ୍ବନ୍ଧୀୟ ଆଇନ ପ୍ରଣୟନ ଅଚିରେ ହେବାର ଆଶାକରାଯାଏ । ରେଡ଼ିଓ, ଟେଲିଭିଜନ ଆଦି ଗଣମାଧ୍ୟମ ତଥା ଦୂର ଶିକ୍ଷଣ (Distance Learning) ପଦ୍ଧତି ବଳିଷ୍ଠ, ବାସ୍ତବ ଓ ସୁଦୂରପ୍ରସାରୀ ହେବା ଫଳରେ ଉନ୍ମୁକ୍ତ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଅନିର୍ବାର୍ଯ୍ୟ ହୋଇ ପଡ଼ିଛି । ଜ୍ଞାନର ବିସ୍ଫୋରଣ ଓ ପ୍ରତିଭାର ବିସ୍ଫୋରଣ ଏଥି-ପାଇଁ ଅତ୍ୟାବଶ୍ୟକ ପରିବେଶ ସୃଷ୍ଟି କରିଛି ।



# ସୃଷ୍ଟିଧର୍ମୀ ଶିକ୍ଷା

ଆମ ଶିକ୍ଷା, ଶିକ୍ଷାୟତନ, ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାପ୍ରଣାଳୀ ସୃଷ୍ଟିଧର୍ମୀ ନୁହେଁ । ଏସବୁ ମୁଖ୍ୟତଃ ବିଧିରକ୍ଷା ନିୟମରେ ଚାଲିଛି । କାମଚଳା ଢଙ୍ଗ ଅଧିକାଂଶ ସ୍ଥଳରେ ପରିଲକ୍ଷିତ ହୁଏ । ଅନେକ ଭଲ ଶିକ୍ଷକ ପାଠପଢାରେ ଏପରି ବ୍ୟସ୍ତ ହୋଇ ପଡ଼ନ୍ତି ଯେ, ପିଲାଙ୍କର ସୃଜନିଶକ୍ତିର ବିକାଶ ବିଷୟ ଏକବାରେ ଭୁଲି ଯାଆନ୍ତି । ପାଠକୁ ଘୋରି ଚାମଚରେ ପିଆଇ ଦେବାର ଉଦ୍ୟମ ହୁଏ । ପରୀକ୍ଷା ପାଇଁ କଲମ ଓ କାଗଜର ସଘନ ଘର୍ଷ ହୁଏ । ପାଠ୍ୟପୁସ୍ତକକୁ ଧାଡ଼ି ଧାଡ଼ି ମଡ଼ାଇ ପିଆଯାଏ । ଭଲ ପାଠପଢାର ଅର୍ଥ ବହି ଶେଷ କରିବା ବୋଲି ଧରାଯାଏ । ଉତ୍ତର ଘୋଷି ଦେବା ମଧ୍ୟ ଭଲ ପାଠପଢ଼ାର ଅନ୍ୟ ଏକ ଅର୍ଥ । ଅନର୍ଗଳ ବକ୍ତୃତାର ନିରବଚ୍ଛିନ୍ନ ଗର୍ଜ୍ଜନ ଏହାର ଅନ୍ୟତମ ଲକ୍ଷଣ । କିନ୍ତୁ ଏ ସବୁ ଭିତରେ "ସୃଜନଶୀଳତା"ର ବିଲୋପ ଘଟେ । ପରୀକ୍ଷା, ପ୍ରଣାଳୀ, ପାଠ୍ୟପୁସ୍ତକ ଓ ପ୍ରଶାସନର ପ୍ରଭୁତ୍ୱ ଫଳରେ ଶିକ୍ଷାକୁ ସୃଷ୍ଟିଧର୍ମୀ କରିବାର ଚିନ୍ତା ଆଦୌ ରହେ ନାହିଁ ।

ଏହାର କାରଣ କଅଣ ? ଆମ ପାଠପଢ଼ାରେ ପିଲାଙ୍କ ଉଦ୍ୟମ ବହୁତ କମ୍ ଥାଏ । ସେମାନେ ପ୍ରଶ୍ନ କରନ୍ତୁ, ଚିନ୍ତାକରନ୍ତୁ, ବହି ଦେଖନ୍ତୁ, ବାହାର ବିବରଣୀ ସଂଗ୍ରହ କରନ୍ତୁ, ନିଜ ହାତରେ କରି ଦେଖନ୍ତୁ, ଆପଣା ଭିତରେ ଆଲୋଚନା କରନ୍ତୁ– ଏ ପ୍ରକାର ଉଦ୍ୟମର ସ୍ଥାନ ଆମ ଶିକ୍ଷାରେ ପ୍ରାୟ ନାହିଁ । ଆମ ପଢ଼ା ଫଳରେ ପିଲାଏ ପଢିବାକୁ ଉତ୍ସାହିତ ହେବେ, ଏହା ବହିର ପାଠ ହୋଇ ରହେ । କାର୍ଯ୍ୟତଃ ସେମାନେ ନୀରବରେ ପାଠକୁ ଶୋଷି ନିଅନ୍ତି । ଖଣ୍ଡେ ଅଭିଧାନ ଦେଖି କେଉଁ ଅର୍ଥଟି ଠିକ୍ ପାଇବ,ଏହା ବାହାର କରିବାର ସୁଯୋଗ ନ ଥାଏ । ମାନେ ବହି, ଟୀକା, ପ୍ରଶ୍ନୋତ୍ତର, ଶବ୍ଦାର୍ଥ, ଟେଷ୍ଟପେପର ଆଦିର କାରବାର ଡଳୁ ତାଳୁପାଯାଏ ଏତେ ବେଶୀ ଯେ, ମୂଳ ଗ୍ରନ୍ଥର ଅଧ୍ୟୟନ ସମ୍ଭବତଃ ହୋଇପାରେ ନାହିଁ, ସ୍ୱାଧୀନ ଚିନ୍ତାର ବିକାଶ କରାଯାଏ ନାହିଁ । ବହିକୁ ଛାଡ଼ି ବହି ଭାବର ଘାତ ପ୍ରତିଘାତ ମନରେ ଉଠେ ନାହିଁ । ଏ ତ ଗଲା ପାଠପଢ଼ାର ଲକ୍ଷଣ । ପୁଣି ଶିକ୍ଷକମାନେ ସ୍ୱଭାବତଃ ପିଲାମାନଙ୍କ ମାନିନେବାପଣିଆକୁ ଭଲ ପାଆନ୍ତି । "ଚୁପ୍ କରି ଶୁଣନ୍ତୁ,ପାଠ

ବାନ୍ତିକରି ପକାନ୍ତୁ, ମୁଣ୍ଡ ଟୁଙ୍ଗାରନ୍ତୁ, ହାତ ଟେକନ୍ତୁ ଇତ୍ୟାଦି ସୁବୋଧପଣିଆ ସେମାନଙ୍କୁ ଭଲ ଲାଗେ । ଶିକ୍ଷକଙ୍କ ଚିତ୍ର,ବାକ୍ୟ,ଗାଲି,କଥା ଆଦି ଅବିକଳ ନକଲ କରିଦେଲେ ହେଲା । ଏଥିରେ ମୌଳିକତା ଓ ନୂତନତା କେଉଁଠି ରହିଲା ? ଚିନ୍ତା, କାମ, କଥା, ଦୃଷ୍ଟି ଓ ବିଗ୍ରରରେ ନବ ପ୍ରବର୍ତ୍ତନର ସ୍ଥାନ କାହିଁ ? ପିଲାଙ୍କୁ ସଖୀକୁଣ୍ଢେଇରୂପେ ଦେଖିବାର ମନୋଭାବ ଫଳରେ "ସୃଜନଶୀଳତା"ର ଗଳା ମରୁଡ଼ି ହୁଏ । ଏହା ସାଙ୍ଗକୁ ଭୟ, ବିଶେଷକରି ବାଳସୁଲଭ ଅସ୍ଥିରତା ଓ ଶ୍ରମପ୍ରତି ଭୟ ସର୍ବନାଶ କରେ । ସ୍ୱାଛନ୍ଦ୍ୟ ଓ ସ୍ୱାଧୀନତାର ଅଭାବରେ ସୃଜନୀ ଶକ୍ତିର ସମାଧି କରଯାଏ । ଆତ୍ମାଭିବ୍ୟକ୍ତି ପାଇଁ ଅନୁକୂଳ ପରିବେଶ ନ ଥାଏ । ଅମଡ଼ାବାଟରେ ଗ୍ଲଲିବା ପାଇଁ ଉତ୍ସାହ ନଥାଏ । ଶଗଡ଼ିଆକୁ ଶଗଡ଼ଗୁଳା ସୁହାଇଲା ପରି ଶିକ୍ଷାରେ ଯେମିତି ସେମିତିର ମନୋଭାବରେ ସମସ୍ତେ ମାତି ଯାଆନ୍ତି । ଶିକ୍ଷକ ଗ୍ରାମୋଫୋନର ରେକର୍ଡରେ ପରିଣତ ହୋଇଯାଆନ୍ତି ।

କିନ୍ତୁ ସୃଜନଶୀଳତା ବିନା ଜୀବନ ବୃଥା ହୁଏ । ଜାତିର ପ୍ରଗତି ସମ୍ଭବ ହୁଏ ନାହିଁ । ଚିନ୍ତାଶୀଳ ଭାବୁକ, ବିଜ୍ଞାନୀ, କଳାକାର, ଶିଳ୍ପୀ, ସାଧକ,ଉତ୍ପାଦକ ପ୍ରଭୃତିଙ୍କ ସୃଷ୍ଟି ଦେଶର ସମ୍ବଳ ଓ ପ୍ରଗତିର ପରିଚାୟକ । ଏହାର ଅବହେଳା ସାମାଜିକ ଓ ବ୍ୟକ୍ତିଗତ ଜୀବନରେ ଆତ୍ମଘାତୀ ଅଟେ ।

ଅତି କ୍ଷୁଦ୍ର ଶିଶୁର ମୁଖଭଙ୍ଗୀର ବୈଶିଷ୍ଟ୍ୟରୁ ଏହା ଜଣା ପଡ଼ିଥାଏ । ହସ୍ତପଦ ସଞ୍ଚାଳନ ଦ୍ୱାରା ଏହି ଶକ୍ତିର ପ୍ରକାଶ ମଧ୍ୟ କରଯାଏ । ଟିକିଏ ପରେ ଚିତ୍ରାଙ୍କନରୁ ମଧ୍ୟ ଜଣାଯାଏ । ଅନ୍ୟଙ୍କୁ ଲକ୍ଷ୍ୟ କରିବାରେ ନୂତନତା ପ୍ରକାଶ ପାଏ । ନିଜର ଅଭିଜ୍ଞତା ଓ ଭାଷାରେ ଯାହା ତାଙ୍କ ପାଇଁ ନୂଆ, ତାହା ମାଧ୍ୟମରେ ସୃଜନୀଶକ୍ତିର ଆଦ୍ୟ ସଙ୍କେତ ମିଳେ । ଦରଭେଟି ବଚନର ଯୁକ୍ତିରେ ମଧ୍ୟ ଏହା ପ୍ରତିଫଳିତ ହୁଏ । ବୟସର ବୃଦ୍ଧି ଫଳରେ ହାଇସ୍କୁଲ ଶିକ୍ଷା ବେଳକୁ ପ୍ରକାଶର ମାଧ୍ୟମ ବହୁବିଧ ହୋଇଯାଏ । ରଚନା, ସଙ୍ଗୀତ, ଚିତ୍ରକଳା,ନୃତ୍ୟ,ନାଟକ, ମୌଖିକ ପ୍ରକାଶ, ଅଭିନୟ,ହାତକାମ, କ୍ରୀଡ଼ା, ସଂଗ୍ରହାଦିରେ ବହୁଭାବରେ ସୃଜନଶୀଳତା ପ୍ରକାଶ ପାଏ । ଅର୍ଥ କରିବାରେ, ଅଙ୍କ କଷିବାରେ, ସଜାଡ଼ି ରଖିବାରେ, ସଫାସୁତୁରା କରିବାରେ, ଯନ୍ତ୍ରପାତି ଧରିବାରେ, ଅନ୍ୟକୁ ଅନୁକରଣ କରିବାରେ ଇତ୍ୟାଦି ବିଭିନ୍ନ ଆଚରଣରେ ଏହି ଶକ୍ତିର ପ୍ରକାଶ ହୁଏ । ହାସ୍ୟରସ ପରିବେଷଣ କରିବାରେ, କ୍ରୀଡ଼ା କୌତୁକରେ, ଅଙ୍ଗଭଙ୍ଗୀରେ ଓ ଚାଲିଚଳଣିରେ

ସୃଜନଶୀଳତା ଆତ୍ମପ୍ରକାଶ କରିଥାଏ । ଗତାନୁଗତିକତାକୁ ଛାଡ଼ି ଏହା ନୂଆ ରୂପ ନିଏ । ଘଣ୍ଟିବନ୍ଧା ଧରାବନ୍ଧା ରୁଟିନରେ ଏହାର ସ୍ଥାନ ନାହିଁ । ଜବରଦସ୍ତି ଏହା ହୁଏନାହିଁ । ହାତ ଗୋଡ ଲମ୍ବାଇ ମନଖୋଲା ଖୁସିବାସିରେ ଏହା ପଲ୍ଲବିତ ହୁଏ । ଅବକାଶରେ ଏହା ଅକସ୍ମାତ ପ୍ରକାଶ ପାଏ । ସୃଜନଶୀଳ ବାଳକ ନିଜେ ଶିଖିବାକୁ ଇଚ୍ଛା କରିବ । ଅନ୍ୟ ଆଡ଼କୁ ହାତ ପତାଇବାର ଇଚ୍ଛା କମ୍ ଥିବ । ଅନ୍ୟାନ୍ୟଙ୍କ ଅପେକ୍ଷା ସେ ବିପଦସଙ୍କୁଳ କାମରେ ଅଧିକ ହାତ ଦେବାର ଦେଖାଯାଏ । କଠିନ ସମସ୍ୟା ବିରୁଦ୍ଧରେ ସେ ଲଢ଼ିବ । ଗଛରୁ ବେଲ ପଡୁନାହିଁ, ଆମ୍ବକୁ ହାତ ପାଉନାହିଁ, ବଲ ଜାଲ ଟପୁନାହିଁ, କୁଦା ସମସ୍ତଙ୍କଠାରୁ ବେଶୀ ହେଉନାହିଁ, ମୂଷା ଗାତରୁ ବାହାରୁ-ନାହିଁ ଇତ୍ୟାଦି କଠିନ ସମସ୍ୟାକୁ ସେ ଛାଡ଼େନାହିଁ । ଜିଦ୍‌ଖୋରପଣିଆ ସୃଜନଶୀଳତାର ଚିହ୍ନ ଅଟେ ।

"ସୃଜନଶୀଳତା"ର ବିଶ୍ଳେଷଣ କରାଯାଇଅଛି । ଗିଲ୍‌ଫୋର୍ଡ (J.P.Guilford)ଙ୍କ ମତରେ "ଅପସାରୀ ଚିନ୍ତନ" (divergent thinking) ସୃଜନଶୀଳତାର ବଡ଼ କଥା । ଅଭିସାରୀ (convergent) ଚିନ୍ତନରେ ଏହାର ସମ୍ଭାବନା ଆଦୌ ନାହିଁ । ଚିନ୍ତାର ନିଗଡ ଭିତରୁ ବାହାରି ନ ଗଲେ ସୃଷ୍ଟି ହେବ ନାହିଁ । ତେଣୁ ଅଭିସାରୀ ଚିନ୍ତା ମାମୁଲି, ଗତାନୁଗତିକ ଓ ଧରାବନ୍ଧା ହୁଏ । ପକ୍ଷାନ୍ତରରେ ଅପସାରୀ ଚିନ୍ତା ଉଦ୍ଦେଶ୍ୟବିହୀନ ପ୍ରଳାପ ନୁହେଁ । ସୃଷ୍ଟି ପାଇଁ ଏହା ସୁଯୋଗ ଦିଏ । ସୃଜନଶୀଳତାର ସଂଜ୍ଞା କରିବା ସହଜ ନୁହେଁ । ଗିଲ୍‌ଫୋର୍ଡ ଏହାର ଚାରୋଟି ଲକ୍ଷଣ ସ୍ଥିର କରିଛନ୍ତି, (୧) କୌଣସି ସମସ୍ୟାର ଚିରାଚରିତ ସମାଧାନ ପନ୍ଥା ପରିବର୍ତ୍ତନ କରିବାର ଶକ୍ତି; ପନ୍ଥାର ଆଖିବୁଜା ପଥିକ ହେଲେ ଚଳିବ ନାହିଁ । ସମସ୍ୟା ଅନୁସାରେ ପନ୍ଥାର ପରିବର୍ତ୍ତନ କରିହେବ । ପ୍ରଶ୍ନଟିଏ ପଚାରିଲେ ଉତ୍ତର ଚଞ୍ଚଳ ଓ ବାରମ୍ବାର ଆସିବ ନୂତନ ବିଚାର ରହିବ । (Fluency); (୨) ଯେଉଁ ବିଚାର ଉପଯୋଗୀ ଓ ଅସାଧାରଣ ତା'ର ପ୍ରୟୋଗ କରି ଜାଣିବାର ଶକ୍ତି । ବିଚାରଟି ନୂଆ ଓ ଅସାଧାରଣ ହୋଇପାରେ । କିନ୍ତୁ ସମସ୍ୟାର ସମାଧାନ ଦୃଷ୍ଟିରୁ ଯଦି ଉପଯୋଗୀ ହୋଇଥିବ, ତା'ର ପ୍ରୟୋଗ କରିବା (Flexibility) । (୩) ତତ୍‌କ୍ଷଣିକ ପରିସ୍ଥିତିର ଅତିରିକ୍ତ ବିଚାର କରିବାର ଶକ୍ତି । ବର୍ତ୍ତମାନର ପରିସ୍ଥିତି ଟପି ଆଗକୁ ଚିନ୍ତା କରିବା (Originality) ଓ (୪) ସମସ୍ୟା ହେଉ ବା ତା'ର କୌଣସି ଅଂଶ ହେଉ ତାକୁ ନୂତନ ରୂପରେ ବୁଝାଇବାର ଶକ୍ତି । ସଂକ୍ଷିପ୍ତ ସୂତ୍ରଟିକୁ ସମ୍ପ୍ରସାରିତ କରିବାର ଶକ୍ତି ।

ଆଜି ଆମେରିକାରେ ଆଉ ବୁଦ୍ଧି ପରୀକ୍ଷାର ଯୁଗ ନାହିଁ । ବୁଦ୍ଧି ପରୀକ୍ଷା ଛାଡ଼ି "ସୃଜନଶୀଳତା"ର ପରୀକ୍ଷାରେ ସେମାନେ ମନ ବଳାଇଲେଣି । ବୁଦ୍ଧି ଓ ସୃଜନଶୀଳତା ମଧ୍ୟରେ ଥିବା ସମ୍ବନ୍ଧ ନିରୂପଣ କରିବା ପାଇଁ କେତକ ଅଧ୍ୟୟନ କରାଯାଇଥିଲା । ଏଥିରୁ ଜଣାଯାଏ ଯେ, ବୁଦ୍ଧି ଲବ୍‌ଧାଙ୍କ (I. Q) ଉଣା ହେଲେ ସେଠି ସୃଜନଶୀଳତା କମ୍ ହୁଏ । ଅବଶ୍ୟ ଏହାର ବିପରୀତ ସମ୍ପର୍କ ସତ୍ୟ ନୁହେଁ । ୧୯୫୮ ସାଲରେ ସିକାଗୋ ବିଶ୍ୱବିଦ୍ୟାଳୟର ଅଧ୍ୟୟନ ଉଲ୍ଲେଖଯୋଗ୍ୟ । ଗେଜେଲସ୍ (Getzels, J. W.) ଓ ଜାକ୍‌ସନ (Jackson, P.W) ଅଧ୍ୟାପକଦ୍ୱୟ ଷଷ୍ଠରୁ ଦ୍ୱାଦଶ ଶ୍ରେଣୀ ମଧ୍ୟରେ ପଢୁଥିବା ୫୦୦ ଜଣ ପ୍ରତିଭଶାଳୀ (bright) ଛାତ୍ରଙ୍କୁ ଅଧ୍ୟୟନ କରିଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଯେପରି ଅଧିକ ବୁଦ୍ଧିସମ୍ପନ୍ନ, ସେହିପରି ସୃଜନଶୀଳ ଥିଲେ । ଗବେଷକଦ୍ୱୟ ମଧ୍ୟ ସିଦ୍ଧାନ୍ତ କରିଥିଲେ ଯେ, ଖୁବ୍ ଅଧିକ ବୁଦ୍ଧିଲବ୍‌ଧାଙ୍କ ସୃଜନଶୀଳତା ପାଇଁ ଆବଶ୍ୟକ ନୁହେଁ । ସେମାନଙ୍କ ଅଧ୍ୟୟନ ଅନ୍ତର୍ଭୁକ୍ତ ୫୦୦ ଜଣ ଛାତ୍ରଙ୍କ ମଧ୍ୟରୁ ଦୁଇଟି ଦଳ ସେମାନେ ପୃଥକ୍ କରି ଦେଇଥିଲେ । ଗୋଟିଏ ଦଳ ଅତ୍ୟୁଚ୍ଚ ବୁଦ୍ଧ ସମ୍ପନ୍ନ ହେଲେହେଁ ଅନୁରୂପ ସୃଜନଶୀଳ ନ ଥିଲେ ଓ ଅନ୍ୟ ଦଳଟି ସୃଜନଶୀଳତାରେ ଉଚ୍ଚକୋଟୀର ହୋଇ ସୁଦ୍ଧା ଅନୁରୂପ ବୁଦ୍ଧିସମ୍ପନ୍ନ ନ ଥିଲେ । ପ୍ରଥମ ଦଳର ସାଫଲ୍ୟ ଅର୍ଜନର ବାସନା ପ୍ରବଳ ଥିଲା, ବୟସ୍କ ଜୀବନର ସଦ୍‌ଗୁଣ ଲଭ ପାଇଁ ଆକାଂକ୍ଷୀ ଥିଲେ ଓ ଶିକ୍ଷକଙ୍କ ପସନ୍ଦ ଅନୁସାରେ ନିଜକୁ ଗଢିଥିଲେ । ପରୀକ୍ଷାରେ ଅଧିକ ନମ୍ବର ପାଇବା ପାଇଁ ଲାଗି ପଡ଼ିଥିଲେ । କିନ୍ତୁ ଦ୍ୱିତୀୟ ଦଳ, ଯାହାଙ୍କର ସୃଜନଶୀଳତା ବେଶୀ ଥାଇ ସୁଦ୍ଧା ବୁଦ୍ଧିଲବ୍‌ଧାଙ୍କ କମ୍ ଥିଲା, ସେମାନଙ୍କୁ ଶିକ୍ଷକ ଅଧିକ ପସନ୍ଦ କରୁ ନଥିଲେ । ସେମାନେ ମଧ୍ୟ ଶିକ୍ଷକସ୍ୱୀକୃତ ନମୁନାକୁ (Teacher-approved model) ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ ।

"ଔଦ୍ୟୋଗିକ କଳାରେ ସୃଜନାତ୍ମକତା" ବିଷୟ ମଧ୍ୟ ଅନୁସନ୍ଧାନ କରାଯାଇଥିଲା । ମିନେସୋଟା ବିଶ୍ୱବିଦ୍ୟାଳୟର ଜେରେମ ମାଂସ ଏହି ଅନୁସନ୍ଧାନ କରି ପୂର୍ବୋକ୍ତ ସିଦ୍ଧାନ୍ତର ଅନୁରୂପ ନିଷ୍ପତ୍ତିରେ ଉପନୀତ ହୋଇଥିଲେ ।

ଅଳ୍ପ କେତେବର୍ଷ ତଳେ (Wayne State University)ର ଗବେଷଣା ଦ୍ୱାରା ପୂର୍ବୋକ୍ତ ସିଦ୍ଧାନ୍ତକୁ ସମର୍ଥନ କରା ଯାଇଥିଲା । Dr. Norman Fuqua

ନିଗ୍ରୋ ଛାତ୍ରମାନଙ୍କୁ ଅଧ୍ୟୟନ କରିଥିଲେ । Dr. E. Paul Torrance ଯେଉଁ ସୃଜନାତ୍ମକତା ଟେଷ୍ଟ ରଚନା କରିଥିଲେ, ତାହା ବ୍ୟବହାର କରାଯାଇଥିଲା । Torrance, Getzel ଏବଂ Jackson ଙ୍କ ସିଦ୍ଧାନ୍ତକୁ ସମର୍ଥନ କରି ସେ ପ୍ରତିପାଦନ କରିଥିଲେ ଯେ ୧୨୦ ବୁଦ୍ଧିଲବ୍ଧାଙ୍କ (I. Q ) ପର୍ଯ୍ୟନ୍ତ, ବୁଦ୍ଧିଲବ୍ଧାଙ୍କ ଓ ସୃଜନଶୀଳତା ମଧ୍ୟରେ ସହସମ୍ବନ୍ଧ (co-relation) ରହିଥିବାର ଜଣାପଡେ । ଏହି ସୀମା ଅତିକ୍ରମ କରି ବୁଦ୍ଧିଲବ୍ଧାଙ୍କର ବୃଦ୍ଧି ସହିତ ସୃଜନଶୀଳତା ବଢିବାର ଜଣା ପଡେନାହିଁ । ଯେଉଁମାନେ ଅତ୍ୟଧିକ ସୃଜନଶୀଳ ସେମାନେ ଅପେକ୍ଷାକୃତ କମ୍ ସୃଜନଶୀଳ ଛାତ୍ରମାନଙ୍କଠାରୁ ଏକାଡେମୀକ୍ ଉପଲବ୍ଧିରେ (academic achievement) ନିଶ୍ଚିତ ଭାବରେ ଅଧିକ ଭଲ କରି ନଥିଲେ । ବୁଦ୍ଧିଲବ୍ଧାଙ୍କ ଓ ଏକାଡେ଼ମୀକ୍ ଉପଲବ୍ଧି ମଧ୍ୟରେ ଯେଉଁ ସହସମ୍ବନ୍ଧ ଅଛି, ତା'ଠାରୁ ଅପେକ୍ଷାକୃତ ଊଣା ହେଉଛି ଏକାଡେ଼ମୀକ୍ ଉପଲବ୍ଧି ଓ ସୃଜନଶୀଳତା ମଧ୍ୟରେ ଥିବା ସହସମ୍ବନ୍ଧ ।

ସୃଜନଶୀଳତା ଓ ପରୀକ୍ଷାଫଳ ମଧ୍ୟରେ ସହସମ୍ବନ୍ଧ ସୁନିଶ୍ଚିତ ନୁହେଁ ବୋଲି କୋଠାରୀ କମିଶନ (୧୯୬୪–୬୬) ମଧ୍ୟ ସ୍ୱୀକାର କରିଛନ୍ତି । ବିଜ୍ଞାନଶିକ୍ଷା ଓ ଗବେଷଣା ଶୀର୍ଷକ ଅଧ୍ୟାୟରେ ଗଣିତ ଶିକ୍ଷାର ଗୁରୁତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରି ସୃଜନଶୀଳତା ସମ୍ବନ୍ଧରେ ମତବ୍ୟକ୍ତ କରିଛନ୍ତି । ସେ ପ୍ରସଙ୍ଗରେ ଯେଉଁସବୁ ପ୍ରଭାବ ସୃଜନଶୀଳ ବୈଜ୍ଞାନିକ ସୃଷ୍ଟିରେ ସହାୟକ, ସେସବୁ ପ୍ରଭାବ Sir John Cockcroftଙ୍କ ଲେଖାରୁ କୋଠାରୀ କମିଶନ ଉଦ୍ଧାର କରିଛନ୍ତି । ସେସବୁ ପ୍ରଭାବ ହେଲା :

(କ) ଶୈଶବକାଳୀନ ପରିବେଶ : ଯେଉଁଥିରେ ଜ୍ଞାନ ଓ ବୌଦ୍ଧିକ ଉଦ୍ୟମ ପ୍ରତି ଏତେଦୂର ଗୁରୁତ୍ୱ ଦିଆଯିବ ଯେ, ତଦ୍ୱାରା ଅତି ଅଳ୍ପ ବୟସରୁ ପଠନ ଓ ଅଧ୍ୟୟନର ଅଭ୍ୟାସ ସୁଦୃଢ଼ ହେବ ।

(ଖ) ପରିବେଶର ଅସ୍ୱାଭାବିକ ସ୍ୱାଧୀନତା : ଯେଉଁଥିରୁ ଛାତ୍ରଟି ଶୀଘ୍ର ଆବିଷ୍କାର କରିପାରିବ ଯେ ସେ ନିଜ ଉଦ୍ୟମରେ ନିଜର ଜିଜ୍ଞାସାର ପୂରଣ କରି ପାରିବ ।

(ଗ) ନିଜର ସମ୍ବଳ ଓ ନିଜେ ଚିନ୍ତା କରିବାର ଆବଶ୍ୟକତା ଉପରେ ଛୋଟବେଳରୁ ନିର୍ଭରଶୀଳତା ।

(ଘ) ଅତି ପ୍ରବଳ ତାଡ଼ନା : ଯାହା ଫଳରେ ମନରେ ଏକାଗ୍ରତା ଜାତ ହେବ ଓ ପାଠପଢ଼ା ଏବଂ କାମରେ ସମୟ ପ୍ରତି ଭ୍ରୂକ୍ଷେପ ନକରି ଅନବରତ ଉଦ୍ୟମରେ ସେ ଲଗି ରହିବ ।

(ଙ) ମାଧ୍ୟମିକ ସ୍କୁଲର ଟ୍ରେନିଂ : ଯେଉଁଥିରେ ସାହିତ୍ୟ ଆଦି କଳା ବିଷୟ ଅପେକ୍ଷା ବିଜ୍ଞାନ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିବ ।

(ଚ) ବୁଦ୍ଧି : ଏହା ଉଚ୍ଚକୋଟୀର ହେବ, କିନ୍ତୁ ଏହା ଅତି ଉଚ୍ଚକୋଟୀର ହୋଇ ନ ପାରେ ।

ଏହିସବୁ ପରୀକ୍ଷାମୂଳକ ସିଦ୍ଧାନ୍ତରୁ ଅନେକ ସହାୟକ ନୀତି ସୁସ୍ପଷ୍ଟ ହୁଏ । ପ୍ରଥମ ପ୍ରଶ୍ନ ହେଉଛି ଯେ, ସୃଜନଶୀଳତାର ଅଙ୍କୁରୋଦ୍‌ଗମରୁ ଯଥାସମୟରେ ଜାଣିବା ଓ ସୃଜନଶୀଳ ଛାତ୍ରଙ୍କୁ ଚିହ୍ନିବା । ଭାରତୀୟ ଭାଷାରେ ବିଶେଷ କରି ଓଡ଼ିଆରେ ସୃଜନଶୀଳତା-ଟେଷ୍ଟ ଭାରତୀୟ ପରିବେଶରେ ରଚନା କରାଯାଇ ନାହିଁ । ତଥାପି ଅଭିଜ୍ଞ ଶିକ୍ଷକ ଓ ଅଭିଭାବକ ସୃଜନଶୀଳତାର ସଙ୍କେତ ଅନେକ ସମୟରେ ପାଇଥାନ୍ତି । ପାଠଶାଳା, ପରିବାର, କର୍ମଶାଳା ଓ କ୍ରୀଡ଼ାପ୍ରାନ୍ତରରେ ପିଲମାନଙ୍କ ବ୍ୟବହାର, କଥାବାର୍ତ୍ତା, ଲେଖା ଓ କାମ ପର୍ଯ୍ୟବେକ୍ଷଣ କଲେ "ଅପସାରୀ ଚିନ୍ତନ"ର ପୂର୍ବାଭାଷ ମିଳେ । ଅମାନିଆ ପଣ ଓ ଅବାଗିଆ କାମକୁ ଦୁଷ୍ଟାମି ବୋଲି ଦଣ୍ଡ ନ ଦେଇ ବା ଅବହେଳା ନ କରି ଯତ୍ନ ସହକାରେ ଲକ୍ଷ୍ୟ କରିବା ଉଚିତ । ଶ୍ରେଣୀର କାର୍ଯ୍ୟ କିପରି ସହାୟକ ହୋଇପାରିବ ସେ ସମ୍ବନ୍ଧରେ ନିମ୍ନୋକ୍ତ ପାଞ୍ଚୋଟି ସୂଚନା ଦିଆଯାଇପାରେ ।

(କ) ଅନୁଭବ ପାଇଁ ସୁଯୋଗ ଦେବା : ପାଠ୍ୟପୁସ୍ତକର ସୀମିତ ପରିବେଶ ମଧ୍ୟରେ ଆବଦ୍ଧ ନ ହୋଇ ବହୁବିଧ ପାଠେତର କାର୍ଯ୍ୟକ୍ରମର ବ୍ୟବସ୍ଥା କରିବା ଉଚିତ । ପରିଭ୍ରମଣ ଓ ପ୍ରକୃତି– ପର୍ଯ୍ୟବେକ୍ଷଣ ଏ ଦିଗରେ ବିଶେଷ ସହାୟକ । ପତ୍ରପତ୍ରିକା ଓ ଅନ୍ୟାନ୍ୟ ପୁସ୍ତକର ଅଧ୍ୟୟନ ମଧ୍ୟ କରାଯିବା ଉଚିତ । ଶ୍ରେଣୀର କାମକୁ ସରସ ଓ ସାବଲୀଳ କରିବା ପାଇଁ ଅଧ୍ୟୟନ ଓ ଅଧ୍ୟାପନା ରୀତିରେ ଆମୂଳଚୂଳ ପରିବର୍ତ୍ତନ କରାଯିବା ଆବଶ୍ୟକ । ସେଥିରେ ବିଭିନ୍ନ ଶିକ୍ଷାସହାୟକ ଉପକରଣର

ବ୍ୟବହାର କରଯିବ । କେବଳ ବୌଦ୍ଧିକ ବିକାଶ ସମ୍ବନ୍ଧରେ ବିକୃତ ଧାରଣା ପୋଷଣ ନ କରି ସମଗ୍ର ବ୍ୟକ୍ତିର ସମନ୍ୱିତ ଗଠନ ଦିଗରେ ଦୃଷ୍ଟି ଦେଲେ ଶିକ୍ଷା ବାସ୍ତବ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ହେବ । ସମଗ୍ର ପରିବେଶ ଶିକ୍ଷା–ସହାୟକ ଓ ଉତ୍ସାହ-ପ୍ରଦ ହେବ । ଫଳରେ ଅନୁଭୂତିର ଅବାରିତ ପ୍ରବାହ ଅଜାଡ଼ି ପଡ଼ିବ । ‘ଚକ୍ଷୁ, କର୍ଣ୍ଣ, ନାସିକା ଆଦି ଇନ୍ଦ୍ରିୟସମୂହ ଜ୍ଞାନ ସଂଗ୍ରହରେ ରତ ହେବେ ।

(ଖ) ମୁକ୍ତ ବାତାବରଣ : ସ୍ୱଚ୍ଛନ୍ଦତା ଓ ସ୍ୱାଧୀନତା ଫଳରେ ସ୍ୱତଃ ଅଭିବ୍ୟକ୍ତି ସହଜ ହୁଏ । ଚିନ୍ତା ଓ କଳ୍ପନା ମନରେ ସ୍ଥାନ ପାଏ । ବାଧ୍ୟକରି କେବେହେଁ କାହାରି ମନରେ ଚିନ୍ତାର ସଂଚାର କରିହେବ ନାହିଁ । ନିଜେ ପରୀକ୍ଷା କରିବା, ପ୍ରଯୋଗ କରିବା ଓ ଅନ୍ୱେଷଣ କରିବା ପାଇଁ ସୁଯୋଗ ଦିଆଯିବ । ଏଥିପାଇଁ ପୁସ୍ତକାଗାର, ଗବେଷଣାଗାର, ଚିତ୍ର ଆଦି ସୁବିଧା ଥିବା ଉଚିତ । କିନ୍ତୁ ଅନେକ ଉପକରଣ ଥାଇ ସୁଦ୍ଧା ଏ ସବୁର ସହଜ ଓ ସ୍ୱଚ୍ଛନ୍ଦ ଉପଯୋଗ ଓ ଉପଭୋଗ ଅଭାବରୁ ସୃଜନଶୀଳତା ସମ୍ଭବ ହୁଏ ନାହିଁ । କଠୋର ନିୟନ୍ତ୍ରଣ ଓ ସ୍ୱେଚ୍ଛାଚାର ଆଦୌ ସ୍ପୃହଣୀୟ ନୁହେଁ । କିନ୍ତୁ ଆତ୍ମନିୟନ୍ତ୍ରିତ ଲକ୍ଷ୍ୟ ଅନୁସାରେ କାମ କରିବାର ମନୋଭାବ ଏକାନ୍ତ ଆବଶ୍ୟକ ।

(ଗ) ସମସ୍ୟା ବୁଝିବା : ସମସ୍ୟା ନ ବୁଝି ଓ ସେ ସବୁର ସମାଧାନ ପାଇଁ ଉତ୍କଣ୍ଠିତ ନ ହୋଇ କାମ କରିଯିବା ଆମ ଜୀବନର ମାର୍ଗ ହୋଇ ଯାଉଛି । ଏହା ସୃଜନଶୀଳତା ମୂଳରେ କୁଠାରଘାତ କରେ । ଜୀବନକୁ ବୃଥା କରିଦିଏ । ତେଣୁ ବିସ୍ମୟ ସୃଷ୍ଟି ଶିକ୍ଷାର ମୁଖ୍ୟ କାମ ହେବା ଉଚିତ । ପିଲାଏ ପ୍ରାଶ୍ନିକ ହେବେ । ଜିଜ୍ଞାସା ଆମର ଜନ୍ମଗତ ପ୍ରବୃତ୍ତି ବୋଲି ଅନେକେ ଅନୁମାନ କରନ୍ତି । କିନ୍ତୁ ପ୍ରତିକୂଳ ପରିବେଶ ଯୋଗୁଁ ସ୍ୱାଭାବିକ ପ୍ରବୃତ୍ତିର ଅସ୍ୱାଭାବିକ ମୃତ୍ୟୁ ଘଟେ । ଗୋଟିଏ ପ୍ରଶ୍ନରୁ ଏକାଧିକ ପ୍ରଶ୍ନ ଜନ୍ମଲାଭ କରିବା ଉଚିତ । ଏଥିରୁ ଗଭୀର ଅଧ୍ୟୟନର ମନୋଭାବ ସୃଷ୍ଟି ହେବା ଉଚିତ । Oppenheimn ଥରେ ବର୍ଣ୍ଣନା କରିଥିଲେ ଯେ Einsteinଙ୍କୁ କେବେହେଁ "ବିସ୍ମୟ" ଛାଡ଼ି ନ ଥିଲା । ଜିଜ୍ଞାସା ତାଙ୍କ ଜୀବନରେ ଚିର ସହଚର ଥିଲା ।

(ଘ) ସମାଧାନ କରିବା ପ୍ରଣାଳୀ ବିଷୟର ଶିକ୍ଷା : ଆମ ପାଠରେ ସମସ୍ୟାର ସମାଧାନ କରଯିବା ପ୍ରଥା । ଗଣିତ, ସାହିତ୍ୟ ଇତିହାସର ପ୍ରଭୃତି ବିଷୟରେ ବିଭିନ୍ନ

ସମସ୍ୟା ଉପସ୍ଥାପନ କରଯାଏ । କିନ୍ତୁ ପିଲାଏ ନିଜେ ସମାଧାନ ନ କରି ଅନ୍ୟର ସମାଧାନ ଗ୍ରହଣ କରି ନିଅନ୍ତି । ବେଳେ ବେଳେ ଶିକ୍ଷକ ନିଜ ସମାଧାନ ଲଦି ଦିଅନ୍ତି, ଫଳରେ ସେମାନେ ସମାଧାନ ପ୍ରଣାଳୀ ଜାଣନ୍ତି ନାହିଁ । ବିଭିନ୍ନ ସମସ୍ୟାକୁ ତୁଳନା କରି ଦେଖାଯାଏ ନାହିଁ, ତେଣୁ ପ୍ରତ୍ୟେକ ସ୍ଥଳରେ ସମାଧାନ-ପ୍ରଣାଳୀ ପୃଥକ୍‌ରୂପେ ଶିକ୍ଷକଙ୍କୁ ଶିକ୍ଷାର୍ଥୀଙ୍କୁ ଶିକ୍ଷା ଦିଆଯିବା ଉଚିତ ।

(ଡ) ପ୍ରୋତ୍ସାହନ ଓ ପୁରସ୍କାର : ପିଲାଙ୍କର ବୈଶିଷ୍ଟ୍ୟକୁ ପ୍ରୋତ୍ସାହିତ କରିବା ଉଚିତ । ସବୁ ମାଟିରେ ସବୁ ଗଛ ହୁଏ ନାହିଁ କିମ୍ବା ଯେ କୌଣସି ଜଳବାୟୁରେ ଯେ କୌଣସି ଗଛ ହେବ ନାହିଁ । ଠିକ୍ ସେହିପରି ପ୍ରତ୍ୟେକ ପିଲାଙ୍କ ବୈଶିଷ୍ଟ୍ୟର ବିକାଶ-ଅନୁରୂପ ସୁବିଧା ସୁଯୋଗ ଦେବାକୁ ହେବ । ବାର୍ଷିକ କଳା ପ୍ରଦର୍ଶନୀ ଓ ରଙ୍ଗମଞ୍ଚର କାର୍ଯ୍ୟକ୍ରମ ରହିବ । ହାତକାମ, ହସ୍ତାକ୍ଷର, ଭାଷଣ, ଗଣିତ, ରଚନା, କ୍ରୀଡା ଆଦିରେ ପ୍ରତିଯୋଗିତାମୂଳକ ବ୍ୟବସ୍ଥା କରଯିବ । ଏହାଦ୍ୱାରା ପ୍ରତିଭାର ପରିଚୟ ମିଳିବା ସଙ୍ଗେ ସଙ୍ଗେ ଏହା ପ୍ରୋତ୍ସାହିତ ହେବ । ସେ ଦୃଷ୍ଟିରୁ ମଧ୍ୟ ପ୍ରଦର୍ଶନୀ ଓ ପ୍ରତିଯୋଗିତା କରଯିବ । ଅନେକ ସମୟରେ ଏସବୁ କାମ କେବଳ ବିଧିରକ୍ଷା ପାଇଁ ଲକ୍ଷ୍ୟହୀନ ଭାବରେ କରଯାଉଛି । ଫଳରେ ଗୋଟିଏ ବର୍ଷର କାର୍ଯ୍ୟକ୍ରମ ସହିତ ଅନ୍ୟ ବର୍ଷର କାର୍ଯ୍ୟକ୍ରମର ସମ୍ପର୍କ ରହୁନାହିଁ । ପ୍ରତିଭାର ପୋଷଣ ମଧ୍ୟ କରଯାଉ ନାହିଁ ।

Torrance ଏହି କ୍ଷେତ୍ରରେ କେତେ ଦଶନ୍ଧି ଧରି କାମ କରିଛନ୍ତି । ତାଙ୍କ ମତରେ ପିଲାମାନେ ଯେ ସୃଜନଶୀଳ ଚିନ୍ତା କରିପାରିବେ ଏଥିପାଇଁ ସେମାନଙ୍କୁ ସମ୍ଭବତଃ ଶିକ୍ଷା ଦେବା ସମ୍ଭବ । ସେ କହନ୍ତି : The most successful approaches seem to be those that involve both cognitive and emotional functioning, provide adequate structures and motivation and give opportunities for involvement, practice and interaction with teachers and other children. Motivating and facilitating conditions certainly make a difference in creative functioning but differences seem to be greatest and most predictable when deliberate teaching is involved. (1972)

ପରିଶେଷରେ ଶିକ୍ଷାକୁ ସୃଷ୍ଟିଧର୍ମୀ କରିବା ପାଇଁ ଶିକ୍ଷକ ନିଜେ ସୃଜନଶୀଳ ହେବେ । ନିଜେ ଜ୍ୟୋତିର୍ମାନ୍ ନ ହେଲେ ଗୋଟିଏ ଦୀପ ଅନ୍ୟ ଦୀପକୁ ପ୍ରଜ୍ଜ୍ୱଳିତ କରି ନ ପାରେ । ଶିକ୍ଷକ ଯଦି ସୃଷ୍ଟିଧର୍ମୀ ନ ହୁଅନ୍ତି ଓ ଶିକ୍ଷାର ସୃଷ୍ଟିକ୍ରିୟାରେ ବିଶ୍ୱାସ ନ କରନ୍ତି, ତେବେ ଶିକ୍ଷାର୍ଥୀ କେବେହେଁ ସୃଜନଶୀଳ ହୋଇ ପାରିବେ ନାହିଁ । ଶିକ୍ଷାୟତନ ସୃଷ୍ଟିର ପୀଠ—ନୂତନ ମୂଲ୍ୟ, ନବ ପ୍ରବର୍ତ୍ତନ (innovation) ଓ ନବୀନ ଭବଧାରର ସୃଷ୍ଟି ସେଠି ହୁଏ । ସାମାଜିକ ପରିବର୍ତ୍ତନ ଓ ପ୍ରଗତିର ପ୍ରାରମ୍ଭିକ ସଙ୍କେତ ସେଠୁ ମିଳେ । ସେଥିପାଇଁ Waterloo ଯୁଦ୍ଧ ଯେ ଇଟନ (Eton) ପବ୍ଲିକ ସ୍କୁଲର କ୍ରୀଡା· ପ୍ରାଙ୍ଗଣରେ ଜୟ କରଯାଇ ଥିଲା, ଏହା ଆର୍ଷବାକ୍ୟ ହୋଇ ରହିଛି । ସମସ୍ତ ସୃଷ୍ଟି-ଭବନାର ନବପ୍ରଭତ ଆମ ପାଠଶାଳା ଅଟେ ।

ପରିବାର ଏ ଦିଗରେ ସହାୟକ ହେବା ଉଚିତ୍ । ପିତାମାତା ଏହା ବୁଝିବେ ଓ ଶିକ୍ଷକମାନଙ୍କ ସହିତ ସହଯୋଗ କରିବେ । ଶିକ୍ଷକଶିକ୍ଷା ମଧ୍ୟ ମାତ୍ର ଏକ ଯାନ୍ତ୍ରିକ ପ୍ରକ୍ରିୟା ଓ ବଳଦିଆ ପୁନରାବୃତ୍ତି ନ ହୋଇ ନବ ପ୍ରବର୍ତ୍ତନର ପ୍ରତୀକ ହୋଇ ରହିବ । ଗୁରୁ-ଶିକ୍ଷକମାନଙ୍କ ଶିକ୍ଷା ଓ ଆବଶ୍ୟକ ପରିବେଶ ଏ ଦୃଷ୍ଟିରୁ ପରିଚାଳିତ କରଯିବ ।

**
**

# ଶିକ୍ଷା-କଥଣ ଜୀବିକା

ଶିକ୍ଷା-ବିଜ୍ଞାନ, ଶିକ୍ଷଣକଳା, ଶିକ୍ଷାଦର୍ଶନ ଆଦି ସମସ୍ତ ବିଷୟ କେବଳ "ପେଟପୋଷା" କଥାରେ ଗ୍ରଳିଯାଉଛି । ଏକ ସ୍ୱତନ୍ତ୍ର ଓ ମୌଳିକ ବିଷୟର ସମ୍ପୂର୍ଣ୍ଣ ମୂଲ୍ୟ ଏହାର ଆଂଶିକ କାର୍ଯ୍ୟରେ ସୀମିତ ହୋଇ ଯାଉଛି । ମୂଲ୍ୟଟା କେବଳ ଶିକ୍ଷକ ହେବାରେ ହେଉଛି । ଏହି ବିଷୟର ବ୍ୟାପ୍ତି ଓ ପ୍ରସାର ସହଜରେ ଜଣାପଡୁ ନାହିଁ । ଶିକ୍ଷାବିଜ୍ଞାନର ଦିଗ୍‌ବଳୟ କ୍ରମେ ବିସ୍ତାରିତ ହେଉଛି । ଜ୍ଞାନର ନିତ୍ୟ ନୂତନତାରେ ଏହାର କଳେବର ବୃଦ୍ଧି ପାଉଛି । ସାମାଜିକ ବିକାଶ ଓ ପୁନର୍ଗଠନରେ ଏହାର ଉପଯୋଗିତା ଓ ଅଗ୍ରାଧିକାର କ୍ରମେ ସ୍ୱୀକୃତ ହେଉଛି । କିନ୍ତୁ କାର୍ଯ୍ୟତଃ ଶିକ୍ଷାହିଁ ଯେ ଜୀବିକା, ଏହାହିଁ ଆମ ଚିନ୍ତାକୁ କ୍ରମେ ଗ୍ରାସ କରୁଛି । ଏକ ସମ୍ପୂର୍ଣ୍ଣ ସତ୍ୟକୁ ଗ୍ରହଣ ନ କରିବା ଫଳରେ ଆଂଶିକ ସତ୍ୟର ସମ୍ପାଦନ ମଧ୍ୟ ବିକୃତ ଓ କଳୁଷିତ ହୋଇ ଯାଉଛି ।

ଏକଥା ସତ୍ୟ ଯେ ଶିକ୍ଷକପ୍ରସ୍ତୁତି ସମାଜର ଦାୟିତ୍ୱ । ଶିକ୍ଷାର ସ୍ୱରୂପ ନିର୍ଣ୍ଣୟ କରି ଶିକ୍ଷାନୁଷ୍ଠାନର ସମଗ୍ର ଉନ୍ନତି ବିଧାନ କରିବା ଉଦ୍ଦେଶ୍ୟରେ ଶିକ୍ଷକଶିକ୍ଷା ବିଧିବଦ୍ଧ ଯୋଜନାରେ ପରିଣତ ହୋଇଅଛି । ଫଳତଃ ସପ୍ତଦଶ ଶତାବ୍ଦୀରେ ଫ୍ରାନସ୍ ଓ ଜର୍ମାନୀରେ ଶିକ୍ଷକଶିକ୍ଷାର ବ୍ୟବସ୍ଥିତ ରୂପ ପ୍ରକାଶ ପାଇଲା । ୧୮୨୦ ଖ୍ରୀଷ୍ଟାବ୍ଦରୁ ୧୮୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଆମେରିକାର ଯୁକ୍ତରାଜ୍ୟରେ ଶିକ୍ଷକ-ଶିକ୍ଷା ପ୍ରସାର ଲଭ କଲା । ଊନବିଂଶ ଶତାବ୍ଦୀର ଆରମ୍ଭରେ ଇଂଲଣ୍ଡର ଶିକ୍ଷକମାନଙ୍କୁ ତାଲିମ ଦେବାର ସୂତ୍ରପାତ ହେଲା । "ବଡ଼ଗ୍ରଟ" ବଦଳରେ "ଗୁରୁଛାତ୍ର" ଶବ୍ଦର ପ୍ରୟୋଗ କରାଗଲା । ଏହି "ବଡଗ୍ରଟ" ପଦ୍ଧତି ପ୍ରାଚୀନ ଭାରତର ନିଜସ୍ୱ । ଏହାର ପ୍ରଚଳନ ଭାରତରୁ ଇଂଲଣ୍ଡକୁ ଯାଇଥିଲା । ବମ୍ବେରେ ସର୍ବପ୍ରଥମେ ୧୮୨୬ ସାଲରେ ୨୪ ଜଣ ଶିକ୍ଷକ ତାଲିମ ପାଇଥିଲେ । ୧୮୫୪ ମସୀହାରେ ଉଡସ୍ ଡେ଼ସ୍‌ପାଚ୍ (Wood's Despatch) ପରେ ଭାରତରେ ଶିକ୍ଷକ-ଶିକ୍ଷା ଆନୁଷ୍ଠାନିକ ରୂପ ଧାରଣ କଲା । ଏହିସବୁ ପ୍ରାରମ୍ଭିକ ଉଦ୍ୟମ ଫଳରେ ଆଜି ସାରା ପୃଥିବୀରେ ଶିକ୍ଷକ-ଶିକ୍ଷାର ସଗଠନ କରାଯାଇଅଛି । ତେଣୁ ଶିକ୍ଷକ ହେବା ଯେ ଜନ୍ମଗତ ସ୍ୱଭାବସୁଲଭ ସଦ୍‌ଗୁଣ, ଏହି ଭାବନା ପରିବର୍ତ୍ତେ ଶିକ୍ଷକଙ୍କୁ

ତିଆରି କରିବାର ବିଗ୍ଭର ପ୍ରସାର ଲଭ କରିଛି । ଏହି ପ୍ରସ୍ତୁତିରେ ଗୁଣାତ୍ମକ ଉନ୍ନତି ସାଧନ କରିବାର ଯତ୍ନ କରଯାଉଛି । ଏହା ଫଳରେ ବୃତ୍ତି ଓ ପ୍ରବୃତ୍ତି ମଧ୍ୟରେ ସମତା ଓ ସମନ୍ୱୟ ରକ୍ଷା କର ନ ଯାଇ ଶିକ୍ଷକ ହେବାର ବୃତ୍ତିକୁ ଗ୍ରହଣ କରଯାଉଛି । ଜୀବିକା ସହିତ ଜୀବନ ସମ୍ପୃକ୍ତ ନ ହୋଇ ଜୀବିକା ଏକ ପ୍ରହସନ ହୋଇଯାଉଛି । ତେଣୁ ଶିକ୍ଷାର ଅନ୍ତର୍ନିହିତ ମହତ୍ତର ଓ ଉଦାର ଭବନା କେବଳ ଉପରଠାଉରିଆ ବୃତ୍ତିସାଧକ କଳାକୌଶଳରେ ପରିଣତ ହେଉଛି । ବ୍ୟବସାୟଗତ ବାଗ ଶିଖିବାରେ ସମୟ ଗ୍ଭଲିଯାଉଛି । ବଳଦିଆ ଢ଼ଙ୍ଗରେ ସମସ୍ତ ବିଗ୍ଭର କରଯାଉଛି ।

ଶିକ୍ଷକଙ୍କ ସଂଖ୍ୟାବୃଦ୍ଧି ଅନ୍ୟତମ କାରଣ । ବିଶ୍ୱର ବିଗ୍ଭରଧାରରେ ଆର୍ଥନୀତିକ ବିକାଶ ଓ ଗଣତନ୍ତ୍ରର ପ୍ରକାଶ ମୁଖ୍ୟସ୍ଥାନ ଲଭ କରିଛି । ତେଣୁ ଶିକ୍ଷା ଯେ ସାମାଜିକ ଜୀବନର ଅପରିହାର୍ଯ୍ୟ ଅଙ୍ଗ ଓ ଶିକ୍ଷାକୁ ସର୍ବଜନଲଭ୍ୟ କରିବା ଶାସନର ଦାୟିତ୍ୱ ଏ କଥା ସ୍ୱୀକୃତି ଲଭ କରୁଛି । ଇଉନେସ୍କୋ (UNESCO), ଶିକ୍ଷାର ଆନ୍ତର୍ଜାତିକ ସଂସ୍ଥା (International Bureau of Education) ପ୍ରଭୃତି ବିଶ୍ୱସଂଗଠନ ପ୍ରତ୍ୟେକ ମନୁଷ୍ୟର ଶିକ୍ଷାଲଭ କରିବାର ଦାବୀକୁ ପ୍ରତିପାଦନ କରି ତଦୁଦ୍ଦେଶ୍ୟରେ ଶିକ୍ଷାର ପ୍ରସାର ପାଇଁ ସମିତି, ସମ୍ଭାଷଣ, ସମାଗ୍ଭର, ପତ୍ରିକାଦି ମାଧ୍ୟମରେ ତଥ୍ୟ ଓ ବିଗ୍ଭର ପରିବେଷଣ କରୁଅଛନ୍ତି । ଏସବୁର ପ୍ରଭବ ଫଳରେ ଶିକ୍ଷକ-ଶିକ୍ଷା ଅଗ୍ରାଧିକାର ଲଭ କରିଛି । ସ୍ୱଳ୍ପମିଆଦୀ ଯୋଜନା ଗ୍ରହଣ କରଯାଉଛି । ବ୍ୟବସ୍ଥିତ ଚିନ୍ତା ଓ ଦୂରଦୃଷ୍ଟିର ଅଭବରୁ ଶିକ୍ଷାର ପ୍ରସାର ଅନୁସାରେ ଶିକ୍ଷକ ପ୍ରସ୍ତୁତି ବିଶେଷ ଭବରେ ମାନ ଦୃଷ୍ଟିରୁ ତାଳଦେଇ ପାରୁନାହିଁ । ସବୁଦେଶରେ ଶିକ୍ଷକଙ୍କର ସଂଖ୍ୟା ବଢ଼ିଛି । ଉପଯୁକ୍ତ ସଂଖ୍ୟକ ଓ ଯୋଗ୍ୟତା ସମ୍ପନ୍ନ ଶିକ୍ଷକ ଯଥାସମୟରେ ପାଇବା ରଷ୍ଟ୍ରନାୟକଙ୍କର ଗୁରୁତର ଚିନ୍ତାର ବିଷୟ ହୋଇଛି । ତେଣୁ ଶିକ୍ଷକ ତିଆରିରେ "କାରଖାନା" ଉତ୍ପାଦନର ମନୋଭବ ଆସିଯାଇଛି । ଏହା ଫଳରେ ଶିକ୍ଷାବିଜ୍ଞାନର ଆତ୍ମା ନଷ୍ଟ ହେଉଛି । ଅଙ୍ଗପରିଗ୍ଭଳନାର କୌଶଳହିଁ ଶିକ୍ଷାର ସାରବସ୍ତୁ ହୋଇଯାଇଛି । ଗୁଣର ନିୟନ୍ତ୍ରଣ ( Quality control ) ଆଜି କାରଖାନାରେ ଯେପରି କର-ଯାଇଛି, ଶିକ୍ଷକ-ଶିକ୍ଷାରେ ମାନବୃଦ୍ଧି ପାଇଁ ତଦନୁରୂପ ବ୍ୟବସ୍ଥା ନାହିଁ ।

ବିଭିନ୍ନ ଦେଶରେ ଦ୍ରୁତ ଆର୍ଥନୀତିକ ବିକାଶ ପାଇଁ ଉଦ୍ୟମ ଗ୍ଭଲିଛି । ଧନାଗମର ଚିନ୍ତା ଓ ସୁଖସମ୍ଭୋଗର ବାସନା ସମସ୍ତଙ୍କ ମନକୁ ଘାରିଛି । ବିଭିନ୍ନ କ୍ଷେତ୍ରରେ ସୁଯୋଗ୍ୟ

ବ୍ୟକ୍ତିଙ୍କ ତୁଳନାରେ କର୍ମସଂସ୍ଥାନର ସୁଯୋଗ ଅଧିକ ହେବା ଫଳରେ ଧନୋପାର୍ଜନର ସହଜ ସ୍ୱପ୍ନରେ ସମସ୍ତେ ବିଭୋର ହେଉଛନ୍ତି । ତେଣୁ ବିଜ୍ଞାନ ଓ କାରିଗରି ବିଦ୍ୟା ଶିକ୍ଷା-ଯୋଜନାରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି । କିନ୍ତୁ ବିଜ୍ଞାନ ନାମରେ ବିଶେଷ ଜ୍ଞାନ ଓଳିଆରୁ ଗଜା ହେଉଛି । ଶିକ୍ଷା ଓ ସଂସ୍କୃତିର ଉନ୍ନତ ପୃଷ୍ଠଭୂମିର ଅଭାବରେ ଓ ଅନେକ ସମୟରେ ଅପରିଣତ ବୟସରେ କାରିଗର ହେବାର ସୁଯୋଗ ମିଳୁଛି । ସୁତରାଂ ଯେ କୌଣସି ବିଷୟ ଶିକ୍ଷା ଓ ଶିକ୍ଷାପ୍ରତି ଯେଉଁ ଦୃଷ୍ଟି ରହିବାର କଥା ତାହା ରହୁ ନାହିଁ । ଆମପ୍ରଚେଷ୍ଟା, ସାଧନା, ସମୟ ଓ ସଂଯମ ସାପେକ୍ଷ ହେଉ ନାହିଁ । ଦ୍ରୁତ ଅଗ୍ରସର କରିବା ଆଶାରେ ଦେଶ ଓ ବ୍ୟକ୍ତି ଜୀବନର ମୌଳିକ ମୂଲ୍ୟ ଓ ଦୃଷ୍ଟି ପ୍ରତି ଅବହିତ ନ ହୋଇ ଉପାର୍ଜନକ୍ଷମ କାରିଗର ହେବାରେ ଲକ୍ଷ୍ୟ ରଖୁଛନ୍ତି । ତେଣୁ ଶିକ୍ଷା ଯେ ଉଦାର, ମୌଳିକ ଓ ମାନବିକତାକାରୀ, ଏ ଦିଗରେ ଦୃଷ୍ଟି ନ ରହି "ଅର୍ଥକରୀ" ଦିଗରେ ଦୃଷ୍ଟି ରହୁଛି; ଫଳରେ ଦୃଷ୍ଟି ବିକୃତ ହୋଇଯାଉଛି । ଅନ୍ୟାନ୍ୟ ବିଷୟ ତୁଳନାରେ ଶିକ୍ଷାକୁ ଯେଉଁ ଗୁରୁତ୍ୱପୂର୍ଣ୍ଣ ଓ ବ୍ୟାପକ ପ୍ରାଧାନ୍ୟ ଦେବାର କଥା ତାହା ହେଉ ନାହିଁ ।

ରୋଗ ସମୟରେ କୁପଥ୍ୟ ପରି ଏହି ଦୃଷ୍ଟି ସହିତ ଏକ କୋହଳ ସାମାଜିକ ପାଗ ବିଷମୟ ପରିଣତି ସୃଷ୍ଟି କରିଛି । ନିଷ୍ଠା ଓ ଐକାନ୍ତିକତା ପ୍ରତି ତୁଚ୍ଛ ଓ ହାସ୍ୟୋଦ୍ଦୀପକ ମନୋଭାବ ପ୍ରକାଶ ପାଉଛି । ସାଧନା ଓ ସ୍ୱାଧୀନଚିନ୍ତା ଏକ ଦୁର୍ବଳତାର ପ୍ରକାଶରୂପେ ପରିଗଣିତ ହେଉଛି । ବୟସ ନିର୍ବିଶେଷରେ ବ୍ୟର୍ଥତାର ଜଗବ୍ୟାଧି ସମସ୍ତଙ୍କୁ ଆକ୍ରମଣ କରିବାର ଦେଖାଯାଉଛି । ସ୍ୱାଧ୍ୟାୟର ବ୍ରତ ଜୀବନରେ ରହୁ ନାହିଁ । ମୂଳଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ପରିବର୍ତ୍ତେ ପ୍ରଶ୍ନୋତ୍ତର, ଟୀକା ଓ ଟୀକାକାରଙ୍କ ସହିତ ସମ୍ପର୍କ ଅଧିକ ହେଉଛି । ବିନା ପରିଶ୍ରମରେ ଧନୀ ହେବାର ଆଶା ବଢ଼ିବା ପରି ବିନା ଅଧ୍ୟୟନରେ ବିଦ୍ୟାଲାଭ କରିବାର ମନୋଭାବ ପ୍ରକାଶ ପାଉଛି । ଶିକ୍ଷା ପ୍ରକ୍ରି-ୟାରେ ସମ୍ପୃକ୍ତ ନ ରହି ଶିକ୍ଷାଫଳ ପାଇବା ପ୍ରତି ଲକ୍ଷ୍ୟ ରହୁଛି । ଏ ପ୍ରକାର ଲଘୁଚିନ୍ତା ଅଧିକାଂଶ ସ୍ଥାନରେ ପ୍ରକାଶ ପାଉଛି । ତେଣୁ ପ୍ରଣାଳୀର ତତ୍ତ୍ୱଦର୍ଶନ ପ୍ରତି ଦୃଷ୍ଟି ନ ରହି କେବଳ ପେଟପୋଷାର ଅବଲମ୍ବନ ସାର ହେଉଛି । ଏ ପ୍ରକାର ସାମାଜିକ ବାତାବରଣରେ ଶିକ୍ଷା-ବିଜ୍ଞାନର ମୂଲ୍ୟ ମଧ୍ୟ କୋହଳ ହୋଇଯାଉଛି । ଯୋଗ୍ୟତାର ପ୍ରମାଣ ନ ଦେଇ ପ୍ରମାଣ-ପତ୍ର ପାଇଁ ବ୍ୟାକୁଳତା ପ୍ରକାଶ ପାଉଛି ।

ଏପରି ସ୍ଥଳରେ ଶିକ୍ଷା-ବିଜ୍ଞାନର ସ୍ଥାନ ନିରୂପଣ କରିବା ସର୍ବାଦୌ ବାଞ୍ଛନୀୟ । ବିଭିନ୍ନ ଗତିଶୀଳ ଜ୍ଞାନ-ବିଭାଗରେ ( disciplines ) ଶିକ୍ଷାର ବ୍ୟାପକତା ଓ ମୌଳିକତା ସମ୍ବନ୍ଧରେ ଚିନ୍ତା କରିବା ଉଚିତ । ଏ ସମ୍ପର୍କରେ କ୍ରାନ୍ତଦର୍ଶୀ ଚାର୍ଲସ୍ ଡାରଉଇନ୍ ( Charles Darwin )ଙ୍କ ଯୁଗାନ୍ତକାରୀ ବିଚାର ପ୍ରଣିଧାନ କରିବାର କଥା । ସେ ୧୮୫୯ ମସୀହାରେ ତାଙ୍କ Origin of Species ନାମକ ପୁସ୍ତକରେ "ବିବର୍ତ୍ତନବାଦ" ତଥ୍ୟ ପ୍ରତିପାଦନ କଲେ । ଏହା ଫଳରେ ଚିନ୍ତାରାଜ୍ୟରେ ବିପ୍ଳବର ସୂତ୍ରପାତ ହେଲା । ଏରିଷ୍ଟୋଟଲ (Aristotle)ଙ୍କ ଠାରୁ ହେଗେଲ (Hegel) ପର୍ଯ୍ୟନ୍ତ ପରିବର୍ତ୍ତନ ସମ୍ବନ୍ଧରେ ଯେଉଁ ପାରମ୍ପରିକ ବିଶ୍ୱାସ ଥିଲା ସେଥିରେ କୁଠାରଘାତ କରାଗଲା । ନିତ୍ୟନୂତନ ସୃଷ୍ଟି ଦିଗରେ ପରିବର୍ତ୍ତନ ଚାଲିଛି । ସୃଷ୍ଟିରେ ବିଭିନ୍ନତା ପ୍ରକୃତି ସଙ୍ଗେ ତାଳଦେଇ ରକ୍ଷା କରିପାରିଲେ ସେଥିରୁ ରୂପାନ୍ତର ହେବ । ତେଣୁ ମନୁଷ୍ୟକୁ ଏଥିପାଇଁ ପ୍ରସ୍ତୁତ ରହିବାକୁ ପଡ଼ିବ । ଯେଉଁ ଚିରନ୍ତନ ବିବର୍ତ୍ତନ ଚାଲିଛି ସେଥିରେ ମନୁଷ୍ୟ କି ପ୍ରକାର ନିଜର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରକୃତି ସହିତ ତାଳ ଦେଇ ପାରିବ ଏହାହିଁ ମୁଖ୍ୟ ସମସ୍ୟା ।

ଠିକ୍ ସେହିବର୍ଷ ଅର୍ଥାତ୍ ୧୮୫୯ ସାଲରେ ହର୍ବାର୍ଟ୍ ସ୍ପେନସାର (Herbert Spencer) ନାମକ ଶିକ୍ଷାଗୁରୁ ଉକ୍ତ ସମସ୍ୟାର ସମାଧାନ ପାଇଁ "କେଉଁ ଜ୍ଞାନ ସର୍ବାଧିକ ଉପାଦେୟ ? " (What knowledge is most worth ?) ଶୀର୍ଷକ ପ୍ରବନ୍ଧ ରଚନା କଲେ । ସେ ବିଶେଷ ଭାବରେ ଡ଼ାରଉଇନ୍ଙ୍କ ତଥ୍ୟଦ୍ୱାରା ପ୍ରଭାବିତ ହୋଇଥିଲେ । ଜ୍ଞାନର୍ଜ୍ଜନର ଲକ୍ଷ୍ୟରୂପେ ସ୍ପେନ୍ସାର (୧୮୨୦-୧୯୦୩) (୧) ଆତ୍ମରକ୍ଷା, (୨) ଜୀବିକାର୍ଜ୍ଜନ, (୩) ସନ୍ତାନପାଳନ, (୪) ରାଜନୈତିକ ଓ ସାମାଜିକ ଜୀବନଯାପନ ଓ ପରିଶେଷରେ (୫) ସାଂସ୍କୃତିକ ଜୀବନର ଉପଭୋଗ ସ୍ଥିରକଲେ । ତଦନୁସାରେ (୧) ସ୍ୱାସ୍ଥ୍ୟଶିକ୍ଷା, (୨) ବୈଷୟିକ ଶିକ୍ଷା, (୩) ଶିକ୍ଷା-ବିଜ୍ଞାନ, (୪) ସମାଜ-ବିଜ୍ଞାନ ଓ (୫) ସାହିତ୍ୟ ଓ ସଂସ୍କୃତି ନାମରେ ଜ୍ଞାନ ବିଭାଗ କରାଗଲା । ଏରିଷ୍ଟୋଟଲ (Aristotle)ଙ୍କ ଅମଳରୁ ସାହିତ୍ୟ ଓ ସଂସ୍କୃତି ଅବସର ବିନୋଦନ ପାଇଁ ଉଚ୍ଚସ୍ଥାନ ଲାଭ କରିଥିଲା । କିନ୍ତୁ ସ୍ପେନ୍ସାରଙ୍କ ମତରେ ଏହାର ଉପାଦେୟତା କମିଗଲା । ବଂଶରକ୍ଷାପାଇଁ ଶିଶୁଙ୍କର ଲାଳନପାଳନକୁ ଏକ ମୁଖ୍ୟସ୍ଥାନ ସେ ଦେଲେ । ଆଜିର ଶିଶୁ ଭବିଷ୍ୟତର ନାଗରିକ । ସମାଜର ରକ୍ଷା ଓ ଅଭିବୃଦ୍ଧି ପାଇଁ ଶିଶୁର ଶିକ୍ଷା ଓ

ଶୃଙ୍ଖଳା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବିବର୍ତ୍ତିତ ସମାଜରେ ଶିଶୁର ଶିକ୍ଷା ସମସ୍ତଙ୍କ ପାଇଁ ସବୁ କାଳରେ ଓ ସର୍ବତ୍ର ମହତ୍ତ୍ୱପୂର୍ଣ୍ଣ । ପରିବାରରେ ଶିଶୁର ଲାଳନପାଳନ ପାରିବାରିକ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ଓ ଅବଶ୍ୟ କର୍ତ୍ତବ୍ୟ । ଏହି ବିଷୟର ଶିକ୍ଷା-ବିଜ୍ଞାନର ଶାଶ୍ୱତିକ ମୂଲ୍ୟ ଓ ମୌଳିକତା ସମ୍ବନ୍ଧରେ ପ୍ରମାଣ ଦିଏ ।

ବ୍ରୁବେକାର (Brubacher) ତାଙ୍କ ପ୍ରଣୀତ ଆଧୁନିକ ଶିକ୍ଷାଦର୍ଶନରେ (Modern Philosophies of Education) ଏହି ବିଷୟରେ ସୁବିସ୍ତୃତ ଆଲୋଚନା କରିଅଛନ୍ତି । ବହୁଳ ଦୃଷ୍ଟାନ୍ତ ଦ୍ୱାରା ସେ ପ୍ରମାଣ କରନ୍ତି ଯେ ରାଜନୈତିକ ଓ ଆର୍ଥନୀତିକ ପ୍ରଭାବରେ ଶିକ୍ଷାର ମାନବିକ ଓ ଆତ୍ମୋତ୍କର୍ଷକାରୀ ଦୃଷ୍ଟି କ୍ରମେ ବିକୃତ ହୋଇ-ଯାଇଅଛି । ଶିକ୍ଷା-ବିଜ୍ଞାନ ଯେ କେବଳ ଶିକ୍ଷକ ହେବାରେ ସାହାଯ୍ୟ କରେ, ତାହା ନୁହେଁ, ଏହା ମନୁଷ୍ୟକୁ ମହତ୍ତର ଗୁଣଲାଭ କରିବାର ସୁଯୋଗ ଦିଏ । ନୂତନ ମୂଲ୍ୟବୋଧର ରୂପାୟନ କରେ । ସାମର୍ଥ୍ୟ ଲାଭ ଓ ଶକ୍ତିର ବିକାଶ ପାଇଁ ମନୁଷ୍ୟକୁ ସୁଯୋଗ ମିଳେ । ଚାର୍ଲସ୍ ଡାରଇନ୍‌ଙ୍କ (୧୮୫୯) "ବିବର୍ତ୍ତନବାଦ" ଦ୍ୱାରା ପ୍ରଭାବିତ ହୋଇ ଜନ ଡ୍ୟୁଇ (John Dewey) ପ୍ରତିପାଦନ କରିଥିଲେ ଯେ ଶିକ୍ଷା ଦ୍ୱାରା ମନୁଷ୍ୟର ବୃଦ୍ଧିକୁ ବିକଶିତ କରିବାକୁ ହେବ । ବୃଦ୍ଧି ଓ ବିକାଶର ସହଗାମୀ ଶିକ୍ଷା । ବିକାଶର କୌଣସି ଅନ୍ତିମ ଅବସ୍ଥା ନ ଥିବାରୁ ବିକାଶର ଲକ୍ଷ୍ୟ ଅଧିକ ବିକାଶ । ସେହିପରି ଅଧିକ ଶିକ୍ଷାଛଡ଼ା ଶିକ୍ଷାର ଅନ୍ୟ କୌଣସି ଲକ୍ଷ୍ୟ ହୋଇ ନ ପାରେ ।

ମନସ୍ତାତ୍ତ୍ୱିକ ଓ ସମାଜତାତ୍ତ୍ୱିକ ବିଶ୍ଳେଷଣ ଫଳରେ ଜଣା ଯାଇଛି ଯେ (୧) ପାଠନ-ପଠନ (Teaching-learning) ପ୍ରକ୍ରିୟା ମାନବିକ ଅଟେ । ଏଥିରେ ଶିକ୍ଷକ ଓ ଶିକ୍ଷାର୍ଥୀ ଏକ ଜଟିଳ ପ୍ରକ୍ରିୟାରେ ଅଭିନିବିଷ୍ଟ ଥାନ୍ତି । ଆତ୍ମବିକାଶ ସଙ୍ଗେ ସଙ୍ଗେ ଅନ୍ୟର ବିକାଶ ସାଧନ କରାଯାଏ । ପରୀକ୍ଷା, ପ୍ରୟୋଗ, ତଥ୍ୟ ନିରୂପଣ ଓ ଯୋଜନା ଦ୍ୱାରା ପରସ୍ପରର ଆବଶ୍ୟକତା ବୁଝି ଶିକ୍ଷା ଓ ପରିବର୍ତ୍ତନର ଅଭିମୁଖୀ ଶିକ୍ଷକ ଓ ଶିକ୍ଷାର୍ଥୀ ହୁଅନ୍ତି । ସେମାନଙ୍କ ମଧ୍ୟରେ ଓ ସେମାନଙ୍କର ପାରସ୍ପରିକ ସମ୍ପର୍କ ଏ ଦିଗରେ ସହାୟକ ହୁଏ । (୨) ଶିକ୍ଷାଦ୍ୱାରା ବ୍ୟକ୍ତିର ବିକାଶ ଓ ପରିବର୍ତ୍ତନ ସାଧିତ ହୁଏ । କେତେକ ବିଷୟ କଣ୍ଠସ୍ଥ କରିବା ଶିକ୍ଷାପଦବାଚ୍ୟ ନୁହେଁ । ଶିକ୍ଷା ଆତ୍ମା ଓ ହୃଦୟର ପରିବର୍ତ୍ତନ କରେ ।

ଏ ଦୃଷ୍ଟିରୁ ପାଶ୍ଚାତ୍ୟ ଦେଶରେ ଶିକ୍ଷା-ବିଜ୍ଞାନ ସ୍କୁଲ, କଲେଜର ସାଧାରଣ ପାଠ୍ୟ । ଗଣିତ, ସାହିତ୍ୟ, ଇତିହାସ ପ୍ରଭୃତି ପାଠ୍ୟ ବିଷୟ ସହିତ ଏହାକୁ ପାଠ୍ୟକ୍ରମରେ ସ୍ଥାନ ଦିଆଯାଇଛି । ସାଧାରଣ ଶିକ୍ଷାର ସମାପ୍ତି ପରେ ଶିକ୍ଷା-ବିଜ୍ଞାନ ଅଧ୍ୟୟନ କରି ଶିକ୍ଷକ ହେବାର ପ୍ରବେଶ ପତ୍ର ଲାଭ କରିବାର ମନୋଭାବ ଓ ପ୍ରଥା କ୍ରମେ ବଦଳି ଯାଉଛି । ସାଧାରଣ ଶିକ୍ଷା ସହିତ ଶିକ୍ଷା-ବିଜ୍ଞାନ ଶିକ୍ଷା ଦିଆଯାଉଛି । ଆମ ଦେଶରେ ମଧ୍ୟ ଏହାର ପରୀକ୍ଷା କେତେକ ସ୍ଥାନରେ କରଯାଉଛି ।

ଭାରତୀୟ ଦର୍ଶନରେ ଶିକ୍ଷାର ସୀମିତ ଓ ସଙ୍କୀର୍ଣ୍ଣ ଅର୍ଥ କରଯାଏ ନାହିଁ । ଜନକ, ବ୍ୟାସଦେବ ଆଦି ମହର୍ଷି ଜୀବନଶିକ୍ଷା ଉପରେ ଜୋର ଦେଉଥିଲେ । ଆଶ୍ରମ ଓ ତପୋବନର ଶିକ୍ଷା ଏହି ଆଦର୍ଶର ଅନୁଗାମୀ । ଆତ୍ମାକୁ ଚିହ୍ନିବା ଓ ଉପଲବ୍ଧି କରିବା ହେଉଛି ଅସଲ ଶିକ୍ଷା । ବ୍ରହ୍ମଜ୍ଞାନ ଲାଭହିଁ ଶିକ୍ଷାର ଚରମ ଓ ପରମ ଲକ୍ଷ୍ୟ । ଜୀବନ ପାଇଁ ଜୀବନବ୍ୟାପୀ ଶିକ୍ଷା ଉପରେ ଗାନ୍ଧୀ ଜୋର ଦେଉଥିଲେ । ତାଙ୍କ ମତରେ ସାକ୍ଷରତା କେବେହେଁ ଶିକ୍ଷା ନୁହେଁ । ଏହା ଜୀବନ-ଶିକ୍ଷା ଅଟେ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ମନୀଷୀ ଶିକ୍ଷାର ଏହି ଅର୍ଥକୁ ପ୍ରତିପାଦନ କରନ୍ତି । ଜୀବନଯାପନ କରି ଜୀବନବ୍ୟାପୀ ଶିକ୍ଷା ଚାଲିବ ।

ଅତଏବ ଶିକ୍ଷା କେବଳ ଜୀବିକା ନୁହେଁ । ଏହା ଜୀବନ-ଶିକ୍ଷା । ଏହା ଜୀବନଯାପନ ପ୍ରଣାଳୀ । ସା ବିଦ୍ୟା ଯା ବିମୁକ୍ତୟେ । ଶିକ୍ଷା ଫଳରେ ମନୁଷ୍ୟ ବିକଶିତ ବ୍ୟକ୍ତିତ୍ୱ ଲାଭ କରେ । ତା'ର ଦେହ ଅଛି । ତେଣୁ ସେ ଦୈହିକ ବଳର ଅଧିକାରୀ ହୁଏ, ସେତିକି ନୁହେଁ, ତା'ର ବୁଦ୍ଧି ଅଛି ଓ ବୁଦ୍ଧି ତାକୁ ବଳ ମଧ୍ୟ ଦିଏ । ବୁଦ୍ଧି ବଳରେ ସେ ଦେହ-ବଳର ସଦୁପଯୋଗ କରେ । ତା'ର ଆତ୍ମା ଅଛି ଓ ସେ ଆତ୍ମବଳ ଲାଭ କରେ । ସେ ଅନ୍ୟମାନଙ୍କ ସହିତ ଶାନ୍ତି ସୁଖରେ ଚଳିପାରେ । ସମସ୍ତଙ୍କ ସହିତ ମିଳିମିଶି ନିଜର ତଥା ସାରା ବିଶ୍ୱର ସୁଖ ସମୃଦ୍ଧି ପାଇଁ କାମକରେ । ନିଜକୁ ସାରା ବିଶ୍ୱଠାରୁ ଅଭିନ୍ନ ଭାବରେ ଦେଖେ । ବସ୍ତୁତଃ ତା'ର ବ୍ୟକ୍ତିସତ୍ତାକୁ ସେ ଏକ ସମଗ୍ର ସତ୍ତାର ଅଂଶଭାବରେ ବିବେଚନା କରେ । କାମନା, ବାସନା ଆଦିର ବନ୍ଧନରୁ ସେ ମୁକ୍ତ ହୋଇଯାଏ । ବିଶ୍ୱଭାବନା ନିଜର ନିତିଦିନିକିଆ ଜୀବନରେ ଅନୁଭବ କରେ ।

●

# ଅନୌପଗ୍ଚାରିକ ଶିକ୍ଷା

ଅନ୍ତରର ଅଫୁରନ୍ତ ଉତ୍ସକୁ ରୂପାୟିତ କରିବାହିଁ ଶିକ୍ଷା । ଏହା ହେଉଛି ସମ୍ଭାବନାର ଉତ୍ସ । ଶକ୍ତିର ଆଧାର । ପିଲାକାଳରେ ଏହା ସୀମିତ ଜଣାପଡ଼ିଲେହେଁ ଏହାର ସୀମା ନାହିଁ । କେଉଁ ଦିଗରେ ଏହା କେତେଦୂର ପ୍ରକାଶ ପାଇବ ତାହା କୌଣସି କାଳରେ କଳ୍ପନା କରିହୁଏ ନାହିଁ । କିନ୍ତୁ ଏହା ସର୍ବଦା ପ୍ରକାଶୋନ୍ମୁଖ । ଅଭିବ୍ୟକ୍ତି ହେଉଛି ଏହାର ଲକ୍ଷଣ । ଜନ୍ମଠାରୁ ଜରା, ଏପରିକି ମୃତ୍ୟୁ ଏହା ମାନେ ନାହିଁ । ଅସ୍ପଷ୍ଟକୁ ସ୍ପଷ୍ଟ କରିଦେବା ହେଉଛି ଶିକ୍ଷାର ପ୍ରକ୍ରିୟା । ଏହି ପ୍ରକ୍ରିୟାରେ ସମ୍ଭାବନାହିଁ ବସ୍ତୁତଃ ବାସ୍ତବ ହୁଏ । ପରିବେଶର ପବିତ୍ର ସ୍ପର୍ଶ ଓ ଅଭିଜ୍ଞତାର କୁହୁକ ଏହି ଉତ୍ସକୁ ଆଲୋଡ଼ିତ କରେ । ଏହା ଅଧିକରୁ ଅଧିକ ପ୍ରକାଶମାନ ହୁଏ । ଏହାହିଁ ଶିକ୍ଷା, ଜୀବର ଜୀବନ । ତେଣୁ ଏହା ଏକ ଜୀବନବ୍ୟାପୀ ପ୍ରକ୍ରିୟା । ସର୍ବତ୍ର, ସର୍ବଦା ଓ ସର୍ବାବସ୍ଥାରେ ପ୍ରକାଶଶୀଳ । ଅତଏବ ଶିକ୍ଷାକୁ ପାଠପଢ଼ା ବୟସର ସୀମା ଭିତରେ ସୀମିତ କରି ହେବ କି ? ଶ୍ରେଣୀ କକ୍ଷର ସୁବିନ୍ୟସ୍ତ ଶିକ୍ଷାଦାନରେ ଏହା ଆବଦ୍ଧ ହୋଇପାରେ କି ? ଯେଉଁ ମୁଷ୍ଟିମେୟ ଶିକ୍ଷାର୍ଥୀ ଶିକ୍ଷାଳୟରେ ପ୍ରବେଶ କରିବାର ସୌଭାଗ୍ୟ ଲାଭ କରିଛନ୍ତି ଓ ଗୋଟିଏ ଶ୍ରେଣୀରୁ ଅନ୍ୟ ଶ୍ରେଣୀକୁ ଉଠି ଯାଉଛନ୍ତି, ଏହା କଅଣ କେବଳ ସେମାନଙ୍କର ଏକଚାଟିଆ ଅଧିକାର ହୋଇ ରହିବ ? ଯେଉଁମାନେ ତାଲିମ୍ ପାଇ ଶିକ୍ଷକ ନାମରେ ନାମିତ, କେବଳ ସେମାନଙ୍କଠାରୁ କଅଣ ଶିକ୍ଷା ଗ୍ରହଣ କରାଯିବ ?

ଏହିପରି ଅନେକ ପ୍ରଶ୍ନ । ଏସବୁ ପ୍ରଶ୍ନ ଆନୁଷ୍ଠାନିକ ଶିକ୍ଷା ପଦ୍ଧତି ସହିତ ଜଡ଼ିତ । ପାରମ୍ପରିକ ରୀତିରେ ଏହା ଚାଲିଛି । ପୂର୍ବ ନିର୍ଦ୍ଧାରିତ ପାଠ୍ୟତାଲିକା ଅଧ୍ୟୟନର ବିଷୟ ହୋଇଛି । ଶିକ୍ଷକ ନିଯୁକ୍ତି ଓ ଶିକ୍ଷାର୍ଥୀ ଗ୍ରହଣ କେତେକ ନିର୍ଦ୍ଦିଷ୍ଟ ସମୟରେ କରାଯାଉଛି । ଶିକ୍ଷାର ସ୍ଥାନ, ସମୟ ଓ ସୋପାନ ସ୍ଥିରୀକୃତ ହୋଇଅଛି । ପାଠ୍ୟପୁସ୍ତକ, ପ୍ରଣାଳୀ, ପରୀକ୍ଷା ଓ ପ୍ରମାଣପତ୍ର ବିଷୟରେ ନିର୍ଦ୍ଦିଷ୍ଟ ବିଧିବିଧାନ ରହିଛି । ଏହା ଏପରି ଏକ ଧରାବନ୍ଧା ଗତିରେ ପଡ଼ିଛି ଯେ ଏସବୁକୁ ନିଶ୍ଚୟ ମାନିନେବାକୁ ହେବ ।

ଏହାହିଁ ଆନୁଷ୍ଠାନିକ ଶିକ୍ଷା—ଶିକ୍ଷାର ଆନୁଷ୍ଠାନିକ ପଦ୍ଧତି ମାଧ୍ୟମରେ ଏହା ଛାତ୍ରମାନଙ୍କୁ ଦିଆଯାଏ । ବସ୍ତୁତଃ ଏହା ଶିକ୍ଷାୟତନ-ଅନ୍ତର୍ଗତ-ଶିକ୍ଷା (In-school-Education) । ନାମଲେଖା, ବହିବସ୍ତାନି, ଘଣ୍ଟାବଜା, ବେଶଭୂଷା, ପାଠ ପିରିଅଡ଼ ଆଦି ଦେଶ, କାଳ, ପାତ୍ରର ସୀମାସରହଦ୍ ଓ ଉପଗ୍ରର ମଧ୍ୟରେ ଅତଳସ୍ପର୍ଶୀ ଜ୍ଞାନକୁ ସୀମିତ କରି ଦିଆଯାଇଛି । ଏହା ଅନୁଷ୍ଠାନକୁ ଆଶ୍ରୟ କରିଛି । ଅନୁଷ୍ଠାନ ଛଡା ଅନ୍ୟତ୍ର ଏହା ମିଳିବ ନାହିଁ । ଏହିପରି ଭବରେ ଔପଗ୍ରରିକ ଶିକ୍ଷାର ବର୍ଣ୍ଣନା କରିହେବ । ଆମ୍ଭେମାନେ ଏଥିସହିତ ସୁପରିଚିତ ।

ଏହା କାହାରିକୁ ଅବିଦିତ ନୁହେଁ ଯେ ଏହି ଔପଗ୍ରରିକ ଶିକ୍ଷା ସମାଜର ସବୁ ଶ୍ରେଣୀର ଲୋକମାନଙ୍କ ଶିକ୍ଷାଗତ ଆବଶ୍ୟକତା ମେଣ୍ଟାଇ ପାରୁନାହିଁ । ଯେଉଁମାନେ କୌଣସି କାରଣରୁ ବିଦ୍ୟାଳୟରେ ପଶିପାରିଲେ ନାହିଁ, ସେମାନେ ଆଜୀବନ ଖଡ଼ି ଛୁଇଁ ପାରୁନାହାନ୍ତି । ଆହୁରି କେତେ ପିଲା ବିଦ୍ୟାଳୟରେ ନାମ ଲେଖାଇ ପାଠ ପଢୁ ପଢୁ ପାଠପଢ଼ା ଛାଡ଼ିଦେଉଛନ୍ତି । ସେମାନେ କାଳକାଳକୁ ନିରକ୍ଷର ହୋଇ ରହୁଛନ୍ତି । କଳକାରଖାନା ଓ ବିଲବାଡ଼ିରେ କାମଧନ୍ଦାର ଲୋକମାନେ ସ୍କୁଲକୁ ଯାଇପାରୁନାହାନ୍ତି । ଶ୍ରମିକ ଓ ମଜୁରିଆ ମଧ୍ୟ ଶିକ୍ଷା ସୁଯୋଗରୁ ବଞ୍ଚିତ ହେଉଛନ୍ତି । ଗୃହିଣୀ ଘର ଛାଡ଼ି ପାରୁନାହାନ୍ତି ଓ ଅପାଠୋଇ ହୋଇ ରହୁଛନ୍ତି । ଏହିପରି ବିଭିନ୍ନ ବୟସରେ ଅନେକ ପ୍ରକାରର ଲୋକ ରହିଛନ୍ତି । ଦସ୍ତଖତ ପାଇଟି ସେମାନେ କରିବେ । ଖେତ ଖମାରର ହିସାବ ରଖାଯିବ ! ଗୀତା ଭଗବତ ବୋଲି ମନକୁ ଅମୃତ ରସରେ ବୁଡୁବୁଡୁ କରିବାକୁ ହେବ । ହଳିଆ ଓ ଶଗଡ଼ିଆ ନିତିଦିନର ଖବର ଜାଣି ରାଜନୀତିର ରାଜନୀତିକୁ ବଦଳାଇଦେବେ । ଗାଈଜଗା ଏକ ମାମୁଲି କାମ ହେବ ନାହିଁ । ଗାଈଗୋଠରେ ବିଜ୍ଞାନର ଆବଶ୍ୟକତା ଅଛି । ଗୋ ପାଳନ କେବଳ ଧର୍ମ ନୁହେଁ, ଏହା ଏକ ବୈଜ୍ଞାନିକ ପ୍ରକ୍ରିୟା । ଏ ପ୍ରକାରର ଆବଶ୍ୟକତା ବହୁ ଦିନରୁ ବହୁ କ୍ଷେତ୍ରରେ ଅନୁଭୂତ । ଏହା ଅଙ୍କେନିଭ ଅଭବ । ଏଥିପାଇଁ ଉପାଧି ବା ପ୍ରମାଣ ପତ୍ରର ଅପେକ୍ଷା ନାହିଁ । କର୍ମ କ୍ଷେତ୍ରରେ ଶିକ୍ଷା ଦିଆଯିବ । ବିଦ୍ୟାଳୟର ବାହାରେ ଶିକ୍ଷା ମିଳିବ (Out-of-school-Education) ଯେଉଁମାନେ ବିଦ୍ୟାଳୟଠାରୁ ବହୁ ଦୂରରେ, ସେମାନଙ୍କୁ ଶିକ୍ଷା ଦିଆଯିବ । ପତ୍ର ବିନିମୟ ମାଧ୍ୟମରେ ପାଠ୍ୟକ୍ରମ ପ୍ରସ୍ତୁତ କରିହେବ; ଧାରାବାହିକ ରେଡ଼ିଓ ଓ ଟେଲିଭିଜନର କାର୍ଯ୍ୟକ୍ରମ ଦ୍ୱାରା ଏହା ମଧ୍ୟ କରାଯାଇପାରେ । କୃଷି

ପ୍ରଦର୍ଶନ କ୍ଷେତ୍ରରେ ମଧ୍ୟ ସାଧିତ ହୋଇପାରେ । ସାମୟିକ ଆଲୋଚନା ଏହାକୁ ଦୃଢ଼ୀଭୂତ କରିପାରେ । ଶିକ୍ଷାର୍ଥୀର ସମୟ ଓ ସୁବିଧା, ତା'ର ପୂର୍ବ ଜ୍ଞାନ ତଥା ବର୍ତ୍ତମାନର ଆବଶ୍ୟକତା ଏବଂ ଭବିଷ୍ୟତର ଆଶାକୁ ଆଖି ଆଗରେ ରଖି ନିର୍ଦ୍ଦିଷ୍ଟ ପରିପ୍ରେକ୍ଷୀରେ ପାଠ୍ୟକ୍ରମକୁ ସୁନିର୍ଦ୍ଦିଷ୍ଟ କରିହେବ । ଏହାହିଁ ଅନୌପଚାରିକ ଶିକ୍ଷା । ଶିକ୍ଷା ପଦ୍ଧତିର ବାହାରେ ବହୁ ଅନୁଷ୍ଠାନ ଏହି ଦାୟିତ୍ୱ ଗ୍ରହଣ କରି ପାରିବେ । ମହିଳା ସମିତି, କ୍ରୀଡ଼ା ପରିଷଦ, ସାହିତ୍ୟ ଓ ସାଂସ୍କୃତିକ ସଂଗଠନ, ଯୁବସଂଘ ଆଦି ସ୍ୱ ସ୍ୱ ପ୍ରତିଷ୍ଠା-କ୍ଷେତ୍ରରେ ନିଜ ସମ୍ବଳ ତଥା ସ୍ଥାନୀୟ ଆବଶ୍ୟକତାକୁ ଲକ୍ଷ୍ୟ ରଖି ଛମାସିଆ, ବର୍ଷକିଆ ବା ତଦୂର୍ଦ୍ଧ୍ୱ ପାଠ୍ୟକ୍ରମ ହାତକୁ ନେଇ ପାରିବେ । ବିଭିନ୍ନ କ୍ଷେତ୍ରଜ୍ଞ ତଥା ବିଷୟ ବିଶାରଦଙ୍କ ସହଯୋଗରେ ପାଠ୍ୟକ୍ରମକୁ କାର୍ଯ୍ୟକାରୀ କରାଯାଇ ମୂଲ୍ୟାୟନ ମଧ୍ୟ କରିହେବ ।

•

ଆହୁରି ମଧ୍ୟ ମନୁଷ୍ୟ ତ ସମାଜମୁକ୍ତ ଜୀବନ ଯାପନ କରେ ନାହିଁ । ବରଂ ସମାଜ ସହିତ ସେ ସଶ୍ଳିଷ୍ଟ । ଏହା ସହିତ କ୍ରିୟା-ପ୍ରତିକ୍ରିୟା ଫଳରେ ତା'ର ଅଭିବୃଦ୍ଧି ଓ ବିକାଶ ସାଧିତ ହୁଏ । ଏହା ହିଁ ଶିକ୍ଷାର ଅନ୍ୟ ଏକ ଦିଗ । ପରିବେଶ ଦ୍ୱାରା ସେ ସତତ ପ୍ରଭାବିତ । ହାଟବଜାର, ମଜାମଉଜ, ସାଙ୍ଗସାଥି, ଯାନ ବାହନ, ବୁଲାବୁଲି,ଖେଳକସରତ ଆଦି ଏପରି ସ୍ଥାନ, ସମୟ ଓ ସମ୍ପର୍କ ନାହିଁ ଯେଉଁଠିରୁ ମନୁଷ୍ୟ କିଛି ନା କିଛି ଶିକ୍ଷା କରୁନାହିଁ । ଚୂଲିଜଳା, ଭାତରନ୍ଧା, ଘାସକଟା, ଲୁଗାକରା ଆଦି ଜୀବନର ପ୍ରତ୍ୟେକ କାର୍ଯ୍ୟରୁ ସେ ଶିକ୍ଷାପାଏ । ବସ୍ତୁତଃ ସମସ୍ତ ଘଟଣା ଓ ଅଭିଜ୍ଞତାରୁ ସବୁବେଳେ ସେ ଶିଖୁଥାଏ । ଏକ ମୁହୂର୍ତ୍ତରୁ ଅନ୍ୟମୁହୂର୍ତ୍ତକୁ ଶିକ୍ଷା ଚାଲିଥାଏ । ଏଥିପାଇଁ ଅବଶ୍ୟ ମନୁଷ୍ୟକୁ ଅନୁସନ୍ଧାନୀ ଓ ଆଗ୍ରହୀ ହେବାକୁ ପଡ଼ିବ । ସବୁ କଥାକୁ ବୁଝିସୁଝି ଲକ୍ଷ୍ୟ କରିବାକୁ ହେବ । ପ୍ରସଙ୍ଗ କ୍ରମେ ଏହି ଶିକ୍ଷା ଚାଲିଛି । ଆନୁଷଙ୍ଗିକ ( incidental ) ଭାବରେ ଜ୍ଞାନ ଅର୍ଜନ କରାଯାଏ । ଜଣେ ଜଣେ ଲୋକ ଏପରି ଘଟଣାଚକ୍ରରେ ପଡ଼ନ୍ତି ଯେ ସେମାନଙ୍କର ଜୀବନର ଗତିପଥ ବଦଳି ଯାଏ । ଏପରି ଭାବରେ ଦୈବ ଯୋଗେ କେତେକଙ୍କ ପକ୍ଷରେ ଶିକ୍ଷା ମିଳେ । ପ୍ରସଙ୍ଗ କ୍ରମେ ଏପରି ଶିକ୍ଷା ସାଧିତ ହୁଏ । ( Informal )

ଅତଏବ ଆନୁଷ୍ଠାନିକ ପଦ୍ଧତିର ବାହାରେ ଯେଉଁ ଶିକ୍ଷା ଉଦ୍ଦେଶ୍ୟମୂଳକ ଭାବରେ ସାଧିତ ହୁଏ ତାହାହିଁ ଅନୌପଚାରିକ ଶିକ୍ଷା । ଖବର କାଗଜ ପଢ଼ି, କଣ୍ଢେଇ ନାଚ

ଦେଖି, ରେଡ଼ିଓ ଶୁଣି ଇତ୍ୟାଦି ଜୀବନର ବହୁବିଧ ବାସ୍ତବ ଅନୁଭୂତି ଦ୍ୱାରା ଆନୁଷଙ୍ଗିକ ଭାବରେ ଯେଉଁ ଶିକ୍ଷା ମିଳେ ତାହାହିଁ ପ୍ରସଙ୍ଗକ୍ରମେ ଶିକ୍ଷା କରାଯାଏ । ଏକପକ୍ଷରେ ଆନୁଷ୍ଠାନିକ ଶିକ୍ଷାଠାରୁ ଅନୌପଚାରିକ ଶିକ୍ଷା ପୃଥକ୍; ଅନ୍ୟ ପକ୍ଷରେ ଏହା ପ୍ରସଙ୍ଗକ୍ରମେ ଗୃହୀତ ଶିକ୍ଷାଠାରୁ ପୃଥକ୍ । କିନ୍ତୁ ଶିକ୍ଷାର ଏହି ତିନୋଟି ଦିଗ ପରସ୍ପର ବିଚ୍ଛିନ୍ନ ନୁହେଁ । ବରଂ ସେସବୁ ପରସ୍ପର ପରିପୂରକ, ସମ୍ପୃକ୍ତ ଓ ସହାୟକ । ଯେ କୌଣସି ଦେଶର ଶିକ୍ଷାରେ ଏ ତିନି ପ୍ରକାରର ଶିକ୍ଷାକୁ ସମୃଦ୍ଧ କରିବାକୁ ହେବ । ବିଧିବଦ୍ଧ ଭାବରେ ସୁସଙ୍ଗଠିତ ଶିକ୍ଷାନୁଷ୍ଠାନ ପରିସର ମଧ୍ୟରେ ଅନୌପଚାରିକ ଶିକ୍ଷାକ୍ରମ ସାଧିତ ହୋଇ-ପାରେ । ଶିକ୍ଷା ସମ୍ପ୍ରସାରଣ କାର୍ଯ୍ୟକ୍ରମ ଏହାର ଅନ୍ତର୍ଭୁକ୍ତ । ବେଳେ ବେଳେ ଅନୌ-ପଚାରିକ ଶିକ୍ଷାର ମାଧ୍ୟମ ଓ ପଦ୍ଧତିକୁ ଅବଲମ୍ବନ କରି ଶିକ୍ଷାନୁଷ୍ଠାନ କାର୍ଯ୍ୟକ୍ରମକୁ ସୁଦୃଢ଼ ଓ ସୁସାଧିତ କରାଯାଇପାରେ । ସ୍କୁଲଶିକ୍ଷାରେ ରେଡ଼ିଓ ବା ଟେଲିଭିଜନର ବ୍ୟବହାର ଏହାର ଉଦାହରଣ ଅଟେ । ପ୍ରତ୍ୟେକ ଶିକ୍ଷାୟତନକୁ ମଧ୍ୟ ଆମ୍ଭେମାନେ ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାଭିଭାବକଙ୍କର ସମାଜରେ ପରିଣତ କରିଥାଉଁ । ତେଣୁ ଭାବର ବିନିମୟ, ଆଲୋଚନା, ସୁସମ୍ପର୍କ ଓ ସୁପରିବେଶ ମାଧ୍ୟମରେ ପ୍ରସଙ୍ଗକ୍ରମେ ଶିକ୍ଷା ଅନେକାଂଶରେ ସାଧିତ ହୁଏ । ସେ ଦୃଷ୍ଟିରୁ ଶିକ୍ଷାୟତନର ପରିସରକୁ ସମାଜର ଅନୁରୂପ କରାଯାଏ । ଏହି ପ୍ରସଙ୍ଗରେ ଏହା ସୁନିଶ୍ଚିତ ଯେ କୌଣସି ସମଗ୍ର ଶିକ୍ଷା ପଦ୍ଧତିରେ ଶିକ୍ଷାର ଏହି ତିନି ବିଭାବ, ଆନୁଷ୍ଠାନିକ, ଅଣାନୁଷ୍ଠାନିକ ଓ ଅନୁଷଙ୍ଗ ସମୁଚିତ ଭାବରେ ରହିବା ଉଚିତ । ସେହିପରି ଭାବରେ ପ୍ରତ୍ୟେକ ବ୍ୟକ୍ତିର ଶିକ୍ଷାରେ ଏହି ତିନୋଟି ବିଭାବର ଆଶ୍ରୟ ନେବା ଉଚିତ ।

ଆଜିକାଲି ଶିକ୍ଷାର ଇତିହାସ କହିଲେ ସାଧାରଣତଃ ଔପଚାରିକ ଶିକ୍ଷାର ଇତିହାସକୁ ବୁଝାଇ ଥାଏ । ଏହା ପୂର୍ବରୁ ଶିକ୍ଷାର ସ୍ୱରୂପ କିପରି ଥିଲା ? ଯେଉଁ ପ୍ରାଚୀନ ସଂସ୍କୃତିର ଅବଶେଷ ଏବେ ଦେଖିବାକୁ ମିଳେ, ସେଗୁଡ଼ିକରୁ ପ୍ରାଗ୍ ଐତିହାସିକ ସଂସ୍କୃତିର ଯଦି କିଛି ପ୍ରମାଣ ମିଳୁଥାଏ, ତେବେ ସୁଦୂର ଅତୀତ ଯୁଗରେ ଶିକ୍ଷା ନିଶ୍ଚୟ ବହୁ ଭାବରେ ଅନୌପଚାରିକ ହୋଇଥିବ । ଏହା ବୋଧହୁଏ ବୟସମାନଙ୍କ ଦୈନନ୍ଦିନ କ୍ରିୟାରୁ ପୃଥକ ହୋଇ ନ ଥିବ । ଏହାର ପୂର୍ବବର୍ତ୍ତୀ ସମୟ ପ୍ରତି ଯଦି ଆମେ ଦୃଷ୍ଟି ପକାଇବା, ତେବେ ଜୀବନଯାପନ କରିବାର ପ୍ରସଙ୍ଗ କ୍ରମରେ ଆନୁଷଙ୍ଗିକ ଶିକ୍ଷା ହିଁ ମୁଖ୍ୟ ହୋଇଥିବ । ଜୀବନଯାପନ କରି ପରିବାର ତଥା ଗୋଷ୍ଠୀର କାର୍ଯ୍ୟକଳାପରେ

ସମ୍ପୃକ୍ତ ହୋଇ ଶିକ୍ଷା କରାଯାଉଥିବ । ସାଂସ୍କୃତିକ ପରମ୍ପରାର ଅଭିବୃଦ୍ଧି ଫଳରେ ଏହା ପୁଞ୍ଜୀଭୂତ ହୋଇ ଏପରି ବ୍ୟାପକ ହେଲା ଯେ ଅନୌପଚାରିକ ରୀତିରେ ଏହାର ସଞ୍ଚାଳନ ଓ ସଂଗଠନ ସମ୍ଭବ ନୁହେଁ । ସମାଜର ଜଟିଳତା ଓ ଜ୍ଞାନର ବିସ୍ଫୋରଣ ହେତୁ ସ୍ୱତନ୍ତ୍ର ଶିକ୍ଷାନୁଷ୍ଠାନ ଏକ ସ୍ଥାୟୀ ରୂପ ନେଲା । ଏହାକୁ ସୁବିନ୍ୟସ୍ତ କରାଯାଇ ଏହାର ପ୍ରତ୍ୟେକ ବିଭାଗ ପାଇଁ ଚିନ୍ତାରେ ସ୍ୱାତନ୍ତ୍ର୍ୟ ସୁସ୍ପଷ୍ଟ ହେଲା । ଏହି ସବୁ କାରଣରୁ ଶିକ୍ଷା ଓ ଶିକ୍ଷାୟତନ ଜୀବନରୁ ବିଚ୍ଛିନ୍ନ ହେବାରେ ଲାଗିଛି ।

ଯଦି ପ୍ରତ୍ୟେକ ନାଗରିକର ଶିକ୍ଷାଗତ ବିକାଶ ଗୋଟିଏ ସର୍ବ ନିମ୍ନ ସ୍ତରରେ ନ ପହଞ୍ଚେ ଓ ନାଗରିକର ଶିକ୍ଷା ଲାଭ କରିବାର ବେଗ ଓ ଆବଶ୍ୟକତା ଅନୁଯାୟୀ ତା'ର ଶିକ୍ଷା ଓ ଅଭିବୃଦ୍ଧି ଯେପରି ନିରବଚ୍ଛିନ୍ନ ରୀତିରେ ସାରା ଜୀବନ ଅବ୍ୟାହତ ହୋଇ ରହିବାର ସୁଯୋଗ ଶିକ୍ଷା-ପଦ୍ଧତିରେ ନ ମିଳେ, ତେବେ ସମାଜ–ଆର୍ଥିକ ବିକାଶ କେବେହେଁ ସମ୍ଭବ ନୁହେଁ ।

ଉପରନ୍ତୁ ଐତିହାସିକ ବିଶ୍ଳେଷଣରୁ ଜଣାଯାଏ ଯେ ଆମ ସମାଜରେ ଜନସାଧାରଣଙ୍କର ଜୀବନ ଧାରଣର ମାନ ଓ ଶିକ୍ଷା ଆଜିର ମୁଖ୍ୟ ପ୍ରଶ୍ନ । ବଡ଼ବଡ଼ିଆଙ୍କ କଥା ଛାଡ଼ନ୍ତୁ । ସେମାନେ ସମାଜର ଉପର ସ୍ତରରେ ଅଛନ୍ତି । ସର୍ବୋତ୍ତମ ଶିକ୍ଷା ସେମାନେ ସର୍ବଦା ଉପଭୋଗକରି ଆସିଛନ୍ତି । ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସୁବିଧା ସୁଯୋଗ ମଧ୍ୟ ଭୋଗ କରିଛନ୍ତି । ଗଣଚେତନା ଦୁର୍ବଳ ହୋଇପଡ଼ିଛି । ଜୀବନ ଦରିଦ୍ର ଓ ଅବହେଳିତ ହୋଇଛି । ସେମାନଙ୍କୁ ମୁଖ୍ୟତଃ ପାରମ୍ପରିକ ରୀତିରେ ଶିକ୍ଷା ଦିଆଯାଉଛି । ଜାତୀୟ ଶିକ୍ଷା ଓ ବିକାଶର ମୌଳିକ ଆହ୍ୱାନ ହେଉଛି ଯେ ସେମାନଙ୍କ ଜୀବନର ମାନ ଉନ୍ନତ ହେବ ଓ କ୍ଷମତାର ପରିପୂରଣରେ ସେମାନଙ୍କର ଯଥାର୍ଥ ସ୍ଥାନ ରହିବ । ଏ ଦିଗରେ ସେମାନଙ୍କୁ ଶିକ୍ଷା ଦିଆଯିବ ।

ଆନୁଷ୍ଠାନିକ ଶିକ୍ଷାର ସମସ୍ତ ସଦ୍‌ଗୁଣ ଓ ସୁବିଧା ସତ୍ତ୍ୱେ ଏହାର ଦୁର୍ଗୁଣ ଓ ଅସୁବିଧା ଆଜି ସର୍ବ ସ୍ୱୀକୃତ । ଏହାର ସଂସ୍କାର ଓ ମାନୋନ୍ନତିକୁ କେବେହେଁ ଅବହେଳିତ କରି ହେବ ନାହିଁ । ଏଥି ସହିତ ଅନୌପଚାରିକ ଶିକ୍ଷାକୁ ସମଗ୍ର ଶିକ୍ଷା ପଦ୍ଧତିର ଅବିଚ୍ଛିନ୍ନ ଅଙ୍ଗ ଭାବରେ ସଂଯୁକ୍ତ କରିବାକୁ ପଡ଼ିବ ।



# ସାହିତ୍ୟ ଓ ମାନବିକ ଶିକ୍ଷା

ଶିକ୍ଷା ଓ ସାହିତ୍ୟ ସମାଜର ସମଧର୍ମୀ ବିଭବ । ସମାଜକୁ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ ଅଭିବୃଦ୍ଧି ଓ ବିକାଶର ନୂତନ ଦିଗନ୍ତ ପାଇଁ ପ୍ରସ୍ତୁତି, ପୋଷଣ ଓ ପ୍ରସାରର ଭୂମିକା ଶିକ୍ଷା ଓ ସାହିତ୍ୟର ରହିଛି । ଉଭୟେ ଜୀବନ କୈନ୍ଦ୍ରିକ । ଚିରନ୍ତନତାରେ ଶାଣିତ ହେଲେହେଁ ଉଭୟେ ନିତ୍ୟନୂତନ । ଉଭୟର ପ୍ରୟାସ ସାଧନମାର୍ଗୀ ଓ ଏହି ସାଧନାର ସନ୍ନିବେଶ ଦେଶ-କାଳ-ପାତ୍ରରେ ସୀମିତ ଥିଲେହେଁ ଏହା ସମଗ୍ର ମାନବିକତା ଓ ଶାଶ୍ୱତତାର ଉଜ୍ଜ୍ୱଳ ପ୍ରତିଛବିରେ ପ୍ରତିଭାତ । ଯୁଗେ ଯୁଗେ ସମାଜ ସହିତ ସଂଶ୍ଳିଷ୍ଟ ହୋଇ ସୁଦ୍ଧା ଶିକ୍ଷା ଓ ସାହିତ୍ୟର ଯୁଗାବତାର ଘଟିଛି ଓ ଏହି ଯୁଗାବତାରରେ ସମାଜର ସମସ୍ୟା, ଆଦର୍ଶ, ଅନୁଭୂତି, ଅଭିଳାଷ, ଆଗ୍ରହ ଓ ଅଭାବର ପ୍ରତିକ୍ରିୟା, ପ୍ରୟୋଜନ ଓ ପ୍ରମାଣ ନିଖୁଣ ଭାବରେ ଚିତ୍ରିତ ହୋଇଛି । ଫଳତଃ ସମାଜର ବଳିଷ୍ଠ ସାଧନ ହେଉଛି ଶିକ୍ଷା ଓ ସାହିତ୍ୟ ।

ବିଦ୍ୟାୟତନର ପ୍ରକ୍ରିୟା ହେଉଛି ଅଧ୍ୟାପନ—ଅଧ୍ୟୟନ । ଏହା ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱପରି । ସେଥିପାଇଁ ଆମର ଧ୍ୟେୟ "ତେଜସ୍ୱୀନାମବଧୀତମସ୍ତୁ" ଏଥିରେ ଜଣେ କେବଳ ଅଧ୍ୟୟନ କରିବେ ଓ ଅନ୍ୟ ଜଣକ ଅଧ୍ୟାପନା କରିବେ, ଏ ପ୍ରକାର ଶ୍ରମର ବିଭାଜନ ନାହିଁ । ଏହି ଦୁଇଟିର ବିକଶିତ ସଂଯୋଗ ଯେପରି ବିଦ୍ୟାର ପରାକାଷ୍ଠାର ପରିଚାୟକ, ସାରସ୍ୱତ ସାଧନାର ସେହିପରି ମୂଳମନ୍ତ୍ର । କବି-ଗୁରୁର ସମ୍ପର୍କ ଭିନ୍ନାଭିନ୍ନ ନୁହେଁ ।

ଶିକ୍ଷା ଓ ସାହିତ୍ୟ ମଧ୍ୟ ପରସ୍ପର ପରିପୂରକ । ଶିକ୍ଷିତ ସମାଜରେ ସାହିତ୍ୟର ସମାଦର ଅଧିକ । ସାହିତ୍ୟର ସେବା, ସୃଷ୍ଟି ଓ ସଂରକ୍ଷଣପାଇଁ ଶିକ୍ଷା ସମାଜରେ ଅନୁକୂଳ ପରିବେଶ ଆଣିଦିଏ । ସୁତରାଂ ଶିକ୍ଷାର ପ୍ରସାର ଓ ଗୁଣାତ୍ମକ ବିକାଶ ଯୋଗୁଁ ସାହିତ୍ୟର ସମୃଦ୍ଧି ସାଧିତ ହୁଏ । ପକ୍ଷାନ୍ତରରେ ସାହିତ୍ୟ ଶିକ୍ଷାର ପ୍ରସାରକୁ ତ୍ୱରାନ୍ୱିତ କରିବାରେ ସହାୟକ ହୁଏ । ଶିକ୍ଷାର ଆଭିମୁଖ୍ୟକୁ ଲୋକପ୍ରିୟ କରି ସେଥିପାଇଁ ସହଯୋଗ

ଗ୍ରହଣ କରିବାପାଇଁ ଅଭିଭାବକ, ଶିକ୍ଷକ, ଶିକ୍ଷାର୍ଥୀ, ଶିକ୍ଷା-ପ୍ରଶାସକ ଓ ଅନ୍ୟ ସମ୍ପୃକ୍ତ ବ୍ୟକ୍ତି ଓ ସଂସ୍ଥା ପାଇଁ ସାହିତ୍ୟର ଆବଶ୍ୟକତା ରହିଛି । ବ୍ୟାପକ ଅର୍ଥରେ ତଥା ସୀମିତ ପରିପ୍ରେକ୍ଷୀରେ ମଧ୍ୟ ସାହିତ୍ୟ ଶିକ୍ଷାର ଉପଜୀବ୍ୟ । ସେ ଦୃଷ୍ଟିରୁ ବିଭିନ୍ନ ପାଠ୍ୟପୁସ୍ତକ, ସର୍ଜନାତ୍ମକ ଓ ସହାୟକ ଗ୍ରନ୍ଥ ରଚନାର ବ୍ୟବସ୍ଥା ଅଛି ଓ ସେ ସବୁର ପ୍ରସ୍ତୁତି ଓ ପ୍ରକାଶନ ପାଇଁ ସଂଗଠିତ ଉଦ୍ୟମ କାଳେ କାଳେ କରଯାଇ ଥାଏ ।

ଅତଏବ ମାନବ ଓ ସମାଜର ରୂପାନ୍ତର ପାଇଁ ଯେଉଁ ସବୁ ବ୍ୟବସ୍ଥା କରଯାଇଛି ତନ୍ମଧ୍ୟରେ ଶିକ୍ଷା ଓ ଏହାର ସଂଗଠନ ଅନ୍ୟତମ, ଏହାର ନିର୍ଦ୍ଦିଷ୍ଟ ପରିକଳ୍ପନା ରହିଛି । ଏହା ମୂଳତଃ ଅଣଆନୁଷ୍ଠାନିକ ହେବା ସଙ୍ଗେ ସଙ୍ଗେ ଏହାର ଆନୁଷ୍ଠାନିକ ରୂପ ଅଛି । ଏହାକୁ ସକ୍ରିୟ, ଉଦ୍ଦେଶ୍ୟାଭିମୁଖୀ ଓ ଫଳପ୍ରଦ କରିବା ପାଇଁ ବିଗ୍ଭରବିମର୍ଷ ଗ୍ଭଲିଛି । ପରିବର୍ତ୍ତନ ମଧ୍ୟ କର ଯାଉଛି । ସାମାଜିକ, ଅର୍ଥନୀତିକ ଓ ରାଜନୀତିକ ଆଦର୍ଶ ଦୃଷ୍ଟିରୁ ବିଭିନ୍ନ ମନୀଷୀ ଶିକ୍ଷାର ଉଦ୍ଦେଶ୍ୟ ସମ୍ବନ୍ଧରେ ଯେଉଁସବୁ ମତ ପୋଷଣ କରି ଅଛନ୍ତି ତନ୍ମଧ୍ୟରେ ମାନବୋଚିତ ଗୁଣରେ ମନୁଷ୍ୟକୁ ଭୂଷିତ କରିବାରେ କାହାରି ମତଦ୍ୱୈଧ ନାହିଁ । ସେ ଚିନ୍ତାଶୀଳ ଓ ବିଗ୍ଭରବନ୍ତ ମନୁଷ୍ୟ । ତା'ର ସ୍ନେହ, ଦୟା, କ୍ଷମା, କରୁଣା, ପ୍ରୀତି ଆଦି ମାନବିକଗୁଣ ଭୂଷଣ ହେଉ । ହିଂସା, ଦ୍ୱେଷ, ନିଷ୍ଠୁରତା, କପଟା-ଚରଣ— ଏ ସବୁ ପାଶବିକତା, ମନୁଷ୍ୟତା ହେଉଛି ସହଯୋଗ, ସଦ୍ଭାବ ଓ ସହନଶୀଳତା —ଏ ସବୁ ସଦ୍‌ଗୁଣର ବିକାଶ ଓ ପ୍ରକାଶର ମାତ୍ରାର ଭେଦରେ ଦେବ— ଦାନବ ସମ୍ଭବ ହୁଏ । ସେଥିପାଇଁ ମନୁଷ୍ୟ ସ୍ୱଜୀବନରେ ସତ୍ୟର ସନ୍ଧାନୀ ହେଉ, ଏହା ଆମର ଆଦର୍ଶ । ସମ୍ମାନ, ସଦାଗ୍ଭର, ସଂଯମ ଓ ଶୃଙ୍ଖଳା ଆଦି ଆଧ୍ୟାତ୍ମିକ ମୂଲ୍ୟବୋଧରେ ସେ ଅନୁ-ପ୍ରାଣିତ ହେଉ । ଜୀବନର ବିଭିନ୍ନ ଅବସ୍ଥାରେ ସେ କୃଷକ, ବୈଜ୍ଞାନିକ, କାରିଗର ବା ଅନ୍ୟ କିଛି ହୋଇପାରେ । ବିଭିନ୍ନ ବୃତ୍ତି ଗ୍ରହଣ କରି ତାକୁ ଉତ୍ପାଦନକ୍ଷମ ହେବାକୁ ପଡ଼ିବ; କିନ୍ତୁ ସେ ଯେପରି ବିମଳାନନ୍ଦ ଲାଭକରି ସୁଖମୟ ଜୀବନ ଯାପନ କରି ପାରିବ, ସେଥି-ପାଇଁ ତା'କୁ ପ୍ରସ୍ତୁତ ହେବାକୁ ପଡ଼ିବ । ତା'ର ଜୀବନ ରସାପ୍ଳୁତ ଓ ସରସ ହେବ । ସେ ମାର୍ଜିତ ଓ ସୁସଭ୍ୟ ହେବ । ସେ ହୃଦୟବାନ୍ ଓ ଉଦାର ହେବ । ସଂସ୍କୃତିର ରସପାନ କରି ତା'ର ଅନ୍ତରତମ ପ୍ରଦେଶରେ ରସର ସଞ୍ଚାର ହେବ । ଏହିସବୁ ଦିଗରେ ମାନବ ଜୀବନକୁ ସଂଗଠିତ କରିବା ପାଇଁ ଶିକ୍ଷାର ଲକ୍ଷ୍ୟ ସ୍ଥିର କରଯାଉଛି ଓ

ସେ ଦିଗରେ ସାହିତ୍ୟ ଯେ ବିଶେଷ ଭବରେ ସହାୟକ ଏହା ସର୍ବତ୍ର ଓ ସର୍ବଦା ସର୍ବବାଦୀ ସ୍ୱୀକୃତ । କୋଠାରୀ କମିଶନ ରିପୋର୍ଟରେ ଗଣିତାଦି ବିଷୟ ( Numeracy ), କର୍ମାନୁଭବ ( work-experience ) ଓ ମାନବ ସେବା ( Social Service ) ସହିତ ସାହିତ୍ୟାଦି ବିଷୟକୁ ( Literacy ) ଶିକ୍ଷାପଦ୍ଧତିର ପୂର୍ଣ୍ଣାଙ୍ଗ ଚିତ୍ରରୂପେ ବର୍ଣ୍ଣନା କରଯାଇଛି । ଏହାହିଁ ଗାନ୍ଧୀଙ୍କ ଭଷାରେ ସମଗ୍ର ବ୍ୟକ୍ତିତ୍ୱର ସାକ୍ଷରତା । ଆତ୍ମାନୁଭୂତି ଉପରେ ଏହା ପ୍ରତିଷ୍ଠିତ । ସେଥିପାଇଁ ସାହିତ୍ୟର ଅଧ୍ୟୟନକୁ ଚିତ୍ତବିନୋଦନ, ଅବବୋଧ, ରସଗ୍ରାହିତା, ମାନବିକତା ଆଦିର ବିକାଶ ପାଇଁ ଜୀବନ ତଥା ଶିକ୍ଷାର ମୌଳିକ ଅଙ୍ଗ ରୂପେ ଗ୍ରହଣ କରଯାଇଅଛି । ସାହିତ୍ୟକୁ ଛାଡ଼ି କୌଣସି ପୂର୍ଣ୍ଣାଙ୍ଗ ଶିକ୍ଷା ଯୋଜନାର କଳ୍ପନା କରଯାଇ ନ ପାରେ । ଶିକ୍ଷା ଯୋଜନାର ଏକ ବଳିଷ୍ଠ ଓ ଅନିବାର୍ଯ୍ୟ ବିଭବ ହେଉଛି ସାହିତ୍ୟ । ଉଲ୍ଲିଖିତ ଆଲୋଚନାରୁ ଶିକ୍ଷାରେ ସାହିତ୍ୟର ଆବଶ୍ୟକତା ସାଧାରଣତଃ ଅନୁମିତ ହୁଏ । ଏହାର ସ୍ପଷ୍ଟୀକରଣ ଓ ବାସ୍ତବତାର ପ୍ରତିପାଦନ ନିମ୍ନୋକ୍ତ ପ୍ରକାରରେ କରଯାଇ ପାରେ ।

ପ୍ରଥମତଃ ଭବର ଆଦାନପ୍ରଦାନହିଁ ସଭ୍ୟତା ଓ ସଂସ୍କୃତିର ସୌରଭ, ମାନବ-ଜୀବନ ଓ ସମାଜର ଏହା ପରମ ଓ ଚରମ ସାର୍ଥକତା, ଏହା ବ୍ୟତୀତ ମନୁଷ୍ୟ ମନୁଷ୍ୟ ହୋଇ ନ ପାରେ । ଆଦାନପ୍ରଦାନହିଁ ଅବାଧ ଅଧିକାରପାଇଁ ମନୁଷ୍ୟ ସଂଗ୍ରାମ କରିଛି । ସମ୍ପୂର୍ଣ୍ଣ ସ୍ୱାଚ୍ଛନ୍ଦ୍ୟ ଏ ବିଷୟରେ ଲଭ କରିବା ଏବେ ବି ସଂଗ୍ରାମ-ସାପେକ୍ଷ ହୋଇ ରହିଛି । ଏହାର ଦୁଇଟି ଦିଗ- ( ୧ ) ଭବଗ୍ରହଣ ଓ ( ୨ ) ଭବପ୍ରକାଶ, କଥୋପକଥନ, ଆଲୋଚନା, ସମାଲୋଚନା, ବକ୍ତୃତା, ବ୍ୟଙ୍ଗ, ହାସ୍ୟରସ, ନାଟକାଭିନୟ, ଗ୍ରନ୍ଥପାଠ ଆଦି ସୂତ୍ରରୁ ଆମ୍ଭେମାନେ ଭବ ଗ୍ରହଣ କରୁଁ । ଶ୍ରବଣ, ଦର୍ଶନ, ମନନ, ଅଧ୍ୟୟନ ଓ ବିଚାର ଏହାର ମାଧ୍ୟମ, ଠିକ୍ ସେହିପରି କଥୋପକଥନ, ଗଳ୍ପକଥନ, ଆଲୋଚନା, ସମାଲୋଚନା, ବକ୍ତୃତା, ବିତର୍କ, ବ୍ୟଙ୍ଗ, ହାସ୍ୟରସ ଆଦି ଦ୍ୱାରା ଆମେ ଭବ ପ୍ରକାଶ କରୁଁ । ଏହା ମୌଖିକ ଭବପ୍ରକାଶ । ପ୍ରବନ୍ଧ, କାବ୍ୟକବିତା, ପ୍ରଶ୍ନୋତ୍ତର ପତ୍ରଲିଖନ, ଉପନ୍ୟାସ, ରମ୍ୟରଚନା, ନାଟକ ଲେଖା; ଟୀକା ଟିପ୍ପଣୀ ଆଦିଦ୍ୱାରା ମଧ୍ୟ ଭବପ୍ରକାଶ କରଯାଏ । ଏହା ଲିଖିତ ଭବପ୍ରକାଶ । ଭବଗ୍ରହଣ ଓ ପ୍ରକାଶଦ୍ୱାରା ଆମେ ଆମର ପରିବାର, ପରିବେଶ ଓ ପ୍ରତିବେଶୀଙ୍କ ସହିତ ସମଭବାପନ୍ନ ହେଉଁ ।

ଏହା ଶିକ୍ଷାର ମୌଳିକ ଲକ୍ଷ୍ୟ ଓ ମୁଖ୍ୟତଃ ସାହିତ୍ୟର ଆଭିମୁଖ୍ୟ । ନିଜେ ନିଜ ସହିତ, ଅନ୍ୟମାନଙ୍କ ସହିତ ଓ ଜଗତ ସହିତ ଆମ୍ଭେମାନେ ସଂପୃକ୍ତ ହେଉଁ । ବସ୍ତୁତଃ ସାହିତ୍ୟହିଁ ସମନ୍ୱେଷଣ (Exploration), କାରଣ (୧) ସାହିତ୍ୟାନୁଭୂତି ନିଷ୍କ୍ରିୟ ନୁହେଁ ଓ ଏହାଦ୍ୱାରା ତୀବ୍ର ବ୍ୟକ୍ତିଗତ ଉଦ୍ୟମର ସୂତ୍ରପାତ ହୁଏ; ତେଣୁ (୨) ସାହିତ୍ୟ ସମନ୍ୱେଷଣର ମାଧ୍ୟମ, (୩) ନିଜକୁ, ଅନ୍ୟଲୋକଙ୍କୁ ଓ ଜଗତକୁ ଅନୁସନ୍ଧାନ କରିବାପାଇଁ ସାହିତ୍ୟ ପ୍ରେରଣା ଦିଏ, (୪) ଫଳତଃ ସାହିତ୍ୟ ଉତ୍କଟ ମାନବିକ ଅନୁଭୂତି ଓ (୫) ଯେଉଁ ବିଜ୍ଞାନରେ ମାନବର ଆଚରଣର ବର୍ଣ୍ଣନା ଥାଏ ତାହା ମଧ୍ୟ ସାହିତ୍ୟ ।

ଦ୍ୱିତୀୟତଃ ମୌଳିକତା ଓ ସୃଜନଶୀଳତା ସାମାଜିକ ପ୍ରଗତିର ପ୍ରାଣ ଓ ବ୍ୟକ୍ତି ଅବ୍ୟକ୍ତତାର ପରିପ୍ରକାଶ । ମନୁଷ୍ୟର ବୁଦ୍ଧି, ଆବେଗ ଓ ଜ୍ଞାନ ଏହାର ପରିପ୍ରକାଶ । ଏହା ଜୀବନ-ଯାତ୍ରାର ଗୌରବ । ମାନବିକ ସାର୍ଥକତାର ଏହା ସମ୍ବଳ । ଶିକ୍ଷାର ଏହା ପରମ ଧ୍ୟେୟ ଓ ସାହିତ୍ୟର ଏହା କାମ୍ୟ । ମୌଖିକ ଓ ଲିଖିତ ଆତ୍ମପ୍ରକାଶରେ ଏହା ନିହିତ । ଏହା ଯେତିକି ଆତ୍ମିକ, ସେତିକି ମୌଳିକ । ଆବେଗର ଉଚ୍ଛ୍ୱାସରେ ଯେତିକି ଏହା ଉଚ୍ଛ୍ୱସିତ ସେତିକି ଅଧିକ ଏହା ମୌଳିକ । କଳ୍ପନାର ମୂର୍ଚ୍ଛନା ଓ ବାସ୍ତବତାର ତୀବ୍ରତାରେ ଏହା ଶାଣିତ । ଲେଖକ, କବି, ସାହିତ୍ୟିକ ତେଣୁ ସ୍ରଷ୍ଟା ଅଟନ୍ତି । ସୃଜନଶୀଳ ଚିନ୍ତାର ପ୍ରକାଶ ପାଇଁ ସାହିତ୍ୟରେ ଅସୀମ ସୁଯୋଗ ଥାଏ ।

ତୃତୀୟତଃ ଆତ୍ମପ୍ରକାଶ ହେଉଛି ସତ୍ୟ, ସୃଜନଶୀଳତା ଓ ଶିବ ଏବଂ ସେଥିରୁ ସୃଜନଶୀଳ ଆତ୍ମପ୍ରକାଶରେ ସୌନ୍ଦର୍ଯ୍ୟର ସ୍ଥିତି । କଳ୍ପନା-ରଞ୍ଜିତ ବାସ୍ତବତାରୁ ସୌନ୍ଦର୍ଯ୍ୟର ଉତ୍ପତ୍ତି । ସୌନ୍ଦର୍ଯ୍ୟ ହେଉଛି ମାନବ ଜୀବନର ସରସ ସୌରଭ । ଏହା ହୃଦୟର ଉପଲବ୍ଧି ଓ ସଚେତନତାର ପରିଣତି । ମାନବ ହୃଦୟରେ ସୌନ୍ଦର୍ଯ୍ୟ, ସ୍ନେହ ଓ ଶ୍ରଦ୍ଧାର ସଞ୍ଚାର ସମସ୍ତ ଶିକ୍ଷାର ମୌଳିକ କାର୍ଯ୍ୟ । ଜ୍ଞାନଲାଭର ପନ୍ଥା ଏହାଦ୍ୱାରା ସହଜ ହୋଇଯାଏ । ହୃଦୟରେ ବିମଳାନନ୍ଦ ଜାତ ହୁଏ । "ସାହିତ୍ୟର ଆବେଗମୟୀ ଭାଷା, କଳ୍ପନାର ବାସ୍ତବମୁଖୀ ପ୍ରକାଶ, ଚିନ୍ତାର ଚମତ୍କାରିତା ଓ ଭାବର ସୌଷ୍ଠବପୂର୍ଣ୍ଣ ପ୍ରକାଶ ମନରୁ ଆବିଳତା, କର୍କଶତା, ବୀଭତ୍ସତା ଓ ସଂକୀର୍ଣ୍ଣତା ଦୂର କରେ । ମନ ବିଶାଳ ଓ ପ୍ରଶସ୍ତ ହୁଏ । କବିତାର ଛନ୍ଦ, ସୂକ୍ଷ୍ମ ବୃତ୍ତି ଓ ଲେଖାର ଶୈଳୀ କେବଳ ଯେ ଚିତ୍ତ ବିନୋଦନ କରେ, ତାହା ନୁହେଁ, ସମଗ୍ର ଜଗତକୁ ସୁନ୍ଦର ଦୃଷ୍ଟିରେ ଓ ଶ୍ରଦ୍ଧାବାନ

ଚିତ୍ତରେ ଦେଖିବାକୁ ସାହାଯ୍ୟ କରେ । ସାହିତ୍ୟ ଅଧ୍ୟୟନର ଦାନ ଏଥିପାଇଁ ଅତୁଳନୀୟ, ଏହି ମୂଲ୍ୟବୋଧର ସୃଷ୍ଟି ହେଉଛି ସାହିତ୍ୟ-ଶିକ୍ଷାର ମୁଖ୍ୟ ପ୍ରଶ୍ନ । ଆନନ୍ଦାନୁଭୂତି, କଳ୍ପନା, ଆଧ୍ୟାତ୍ମିକ ଚେତନା, ଅବବୋଧ, ଅନୁସନ୍ଧାନର ପ୍ରେରଣା, ସୁରୁଚି ଓ ସୁନୀତି ପ୍ରତି ଅନୁରାଗ ହୃଦୟରେ ଜାତ ହେବା ଦ୍ୱାରା ସାହିତ୍ୟ ଶିକ୍ଷା-ଜୀବନକୁ ସମୃଦ୍ଧ କରେ । ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ସହିତ ପରିଚିତି ଗୌଣ ହୁଏ । ବିଷୟଜ୍ଞାନ ନିକୃଷ୍ଟ ହୋଇଯାଏ ।

ସାହିତ୍ୟଶିକ୍ଷାର ଅନ୍ୟତମ ଉଦ୍ଦେଶ୍ୟ ହେଉଛି ସଂସ୍କୃତିର ସୁରକ୍ଷା ଓ ବିକାଶ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ଏକ ତୁଳନାତ୍ମକ ବିଚାର କରି ରବୀନ୍ଦ୍ରନାଥ 'ଚିତ୍ତର ଐଶ୍ୱର୍ଯ୍ୟ'' ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ସେ କହନ୍ତି "ଚିତ୍ତର ଐଶ୍ୱର୍ଯ୍ୟକୁ ଅବଜ୍ଞାକରି ଆମ୍ଭେମାନେ ଜୀବନଯାତ୍ରାର ସିଦ୍ଧିଲାଭକୁ ଏକମାତ୍ର ପ୍ରାଧାନ୍ୟ ଦେଉଛୁଁ । କିନ୍ତୁ ସଂସ୍କୃତିକୁ ବାଦ୍‌ଦେଇ ଏହି ସିଦ୍ଧିଲାଭ କି କେବେ ଯଥାର୍ଥ ଭାବେ ପୂର୍ଣ୍ଣ ହୋଇପାରେ ?" ଏହାହିଁ ମାନବିକ ଶିକ୍ଷା—ପରିପୂର୍ଣ୍ଣ ମାନବ ହେବା ପାଇଁ ମାନବର ଶିକ୍ଷା, ଏକ ସମ୍ପୂର୍ଣ୍ଣ ମାନବିକ ପ୍ରକ୍ରିୟାରେ ।

ଶିକ୍ଷାରେ, ସାହିତ୍ୟର ପ୍ରୟୋଜନୀୟତା ସର୍ବଦା ସ୍ୱୀକାର୍ଯ୍ୟ । ବିଶେଷକରି ସାମ୍ପ୍ରତିକ ଜୀବନ ଯେପରି ଭାବରେ ସମସ୍ୟାବହୁଳ, ଛନ୍ଦହୀନ ଓ ଭୋଗ-ସର୍ବସ୍ୱ ଗତିରେ ଚାଲିଛି ସେପରି କ୍ଷେତ୍ରରେ ସାହିତ୍ୟ ଏକାନ୍ତ ପ୍ରୟୋଜନୀୟ । ବିଜ୍ଞାନ, କାରିଗରି ବିଦ୍ୟା ଓ ଶିଳ୍ପୋନ୍ନତିର ଆକର୍ଷଣ ଜୀବନକୁ ପରିପୁଷ୍ଟ କରି ଜୀବନର ମହିମା ଓ ସ୍ୱାତନ୍ତ୍ର୍ୟର ପ୍ରତିପାଦନ ପାଇଁ ସାହିତ୍ୟ-ଶିକ୍ଷାକୁ ବଳିଷ୍ଠ କରିବା ସପକ୍ଷରେ ପରିବେଶ ସୃଷ୍ଟି କରିଅଛି । ଏହା ସତ୍ତ୍ୱେ ଏ ଦିଗରେ ବହୁ ଅନ୍ତରାୟ ରହିଅଛି ।

ସେ ଯୁଗର ସଂସ୍କୃତ-ଆଧାରିତ ବ୍ୟାକରଣ-ଭିତ୍ତିକ ଶିକ୍ଷାପଦ୍ଧତି ଏବେ ବି ସାହିତ୍ୟ ଶିକ୍ଷାରେ କୁଠାରଘାତ କରେ । ଫକୀରମୋହନଙ୍କ ବାଲ୍ୟ-ଜୀବନର ସ୍ମୃତି ବର୍ତ୍ତମାନର ମଧ୍ୟ ଅନୁଭୂତି, 'କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟିଏ ବୃକ୍ଷଡାଳରେ ବସିଥିଲା ।" ଏହାର ଅର୍ଥ ଫକୀରମୋହନଙ୍କ ଅନୁଭୂତିରେ "କୌଣସି ଦିନରେ କି କେହି ଅହ୍ନରେ, ଗୋଟିଏ କାକ କି ଏକଗୋଟି ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପଳ, ମୁଖରେଧରି କି ବଦନରେ ଧାରଣ କରି, ଗୋଟିଏ ବୃକ୍ଷ କି ଏକ ଗୋଟା ମହୀରୁହ, ଡ଼ାଳରେ କି ଶାଖାରେ, ବସିଥିଲା କି ଉପବେଶନ କରିଥିଲା ।" ଏବେ ବି ଆମର ଯେଉଁ ଶବ୍ଦାର୍ଥୀକରଣର ମାନ୍ୟତା ଶିକ୍ଷା ଶାସ୍ତ୍ରରେ ଅଛି, ତାହାର

ଅବମାନନାର ସ୍ୱୀକାରୋକ୍ତି ହେଉଛି ଫକୀରମୋହନଙ୍କର ଉଲ୍ଲିଖିତ ଉଦାହରଣ । ଶବ୍ଦଟି ଅମୂର୍ତ୍ତ ଓ ଏହାର ପ୍ରତିଛବି ଓ ସମ୍ୟକ୍ ପରିଚିତି ଅନ୍ୟ ଗୋଟିଏ ଶବ୍ଦ ଯାହାକି ଅମୂର୍ତ୍ତ ତଦ୍ୱାରା ହୋଇପାରିବ ନାହିଁ । କାକ ସହିତ ଶିଶୁର ସ୍ନେହ ସମ୍ପର୍କ ବା ଭୟ ସମ୍ପର୍କ କାହିଁ ? ତା'ର କର୍କଶ ସ୍ୱର ଶିଶୁ ମନରେ କି ଭାବ ଜାତ କରିଛି ? "କାଉତ କଳା, କୋଇଲି କଳା," ଏଥିରେ ଶିଶୁ ଅନୁପ୍ରାଣିତ ହୋଇଛି କି ? ବହିର ବର୍ଣ୍ଣନା, ଶ୍ରେଣୀର ଆଲୋଚନା ଓ ଶିକ୍ଷକଙ୍କ ପରିବେଷଣ ଦ୍ୱାରା କାଉର ଛବି ମନରେ ଜାଗି ଉଠିଛି କି ? ଗଛ ଡ଼ାଳରେ କାଉ ବସିଥିବା ଛାତ୍ର ପକ୍ଷରେ ପ୍ରତିଦିନର ଅନୁଭୂତି । ମୁହଁରେ ରୋଟି, ପିଠା, ମାଛ, ମାଂସର ଅନୁଭୂତି ଅତି ଜଣାଶୁଣା । ସେପରି ସ୍ଥାନରେ କାକ ସ୍ଥଳରେ ବାୟସ, ମାଂସ ସ୍ଥାନରେ ପଳ ଇତ୍ୟାଦି ଦ୍ୱାରା ଆବେଗାନୁଭୂତି, କଳ୍ପନାର ଝଲକ, ସୃଜନଶୀଳତାର ସ୍ପର୍ଶ, ଭାବଗ୍ରହଣ ଓ ପ୍ରକାଶ ଆସିବ କେଉଁଠି ? ରସପାନ, ସୌନ୍ଦର୍ଯ୍ୟାନୁଭବ ତଥା ସରସତା- ଏ ସବୁ ଆସିବ କିପରି ? ସେହିପରି ବ୍ୟାକରଣ-ଭିତ୍ତିକ ଶିକ୍ଷାଦାନ ପଦ୍ଧତି ଦ୍ୱାରା ସାହିତ୍ୟ ସଙ୍ଗେ ଯାହାର ଭାବ ହେବାର କଥା ଅର୍ଥାତ୍ ଶିକ୍ଷାର୍ଥୀର ସମୂଳେ ବିନାଶ ହେଉଛି । ଅଧ୍ୟୟନ-ଅଧ୍ୟାପନା ନୀତି ସାହିତ୍ୟ ଶିକ୍ଷାର ଉଦ୍ଦେଶ୍ୟାନୁସାରୀ ନ ହେଲେ ସମସ୍ତ ଚେଷ୍ଟା ପଣ୍ଡ ହେବ । ଅନୁରାଗ ସ୍ଥାନରେ ବିରାଗହିଁ ସାର ହେଉଛି । ଶିକ୍ଷା ଅନୁରାଗ–ସୃଷ୍ଟିକାରୀ, ପ୍ରେରଣାଦାୟକ ଓ ଶ୍ରଦ୍ଧାକାରକ ଏବଂ ଏହା ମୁଖ୍ୟତଃ ସାହିତ୍ୟର ଅଧିକାର । ଏଥିପାଇଁ ଯଥାର୍ଥ ପରିବେଶ ଓ ପଦ୍ଧତି ରହିବା ଆବଶ୍ୟକ ।

କଣ୍ଠସ୍ଥୀକରଣ ଅନ୍ୟ ଏକ ଶତ୍ରୁ । ଭୋଜନର ଅର୍ଥ ଗଳାଧଃକରଣ ହେଲେ ଭୋଜନର ଉଦ୍ଦେଶ୍ୟ ଆଦୌ ସାଧିତ ହୁଏନାହିଁ । ସେହିପରି କଣ୍ଠସ୍ଥୀକରଣ ଦ୍ୱାରା ଶିକ୍ଷାର ଉଦ୍ଦେଶ୍ୟ ସୁଦୂରପରାହତ ହୁଏ । ଫଳ ହୁଏ, "ଯଦ୍ ପଠିତଂ ତଦ୍ ଶ୍ରୀଗୁରବେ ନିବେଦିତମ୍" । ଅଧ୍ୟୟନର ସମାପନ ପରେ ଯାହା ଅବଶିଷ୍ଟ ରହେ, ତାହା ତେବେ ଘୋଷିନେବା ଦ୍ୱାରା ହେବ କିପରି ? ଏହା କଅଣ ଶିକ୍ଷାର ଅର୍ଥ କି ? ଘୋଷିବା ଦ୍ୱାରା ମୌଳିକତା ଆସିବ କେଉଁଠୁ ? ଘୋଷିବାତ ଆଦୌ ରୀତି ନୁହେଁ । ତଥାପି କେତେକ ପାଠକୁ ଘୋଷି ଦିଆଯାଇପାରେ; କିନ୍ତୁ ସାହିତ୍ୟକୁ ଘୋଷି ହେବ କି ? ମନଦେଇ ଶିକ୍ଷା କରାଯାଏ । ସେଥିରେ ହୃଦୟ ଓ ଆତ୍ମା ଥାଏ । ଦୃଷ୍ଟି, ଶ୍ରବଣ, ସ୍ପର୍ଶ ପ୍ରଭୃତି ଇନ୍ଦ୍ରିୟକୁ ସାହିତ୍ୟ ଶିକ୍ଷାରେ ବ୍ୟବହାର କରାଯାଏ । ପାଠ, ପୁସ୍ତକ କେନ୍ଦ୍ରିକ; ପ୍ରଣାଳୀ ପୁନରାବୃତ୍ତିମୂଳକ ଓ ପରିବେଶ, ସଙ୍କୀର୍ଣ୍ଣ ଓ ସଙ୍କୁଚିତ ହେଉଥିବାରୁ ପ୍ରତ୍ୟକ୍ଷ ଜ୍ଞାନର ଆବଶ୍ୟକତା

ଏକାନ୍ତ ଅନୁଭୂତ ହୁଏ । କିନ୍ତୁ ପରିବାର ଓ ପାଠଶାଳା ଏ ଦିଗରେ ସହାୟକ ହେଉନାହିଁ । ଜୀବନର ଅନୁଭୂତି ଶିକ୍ଷା ଓ ସାହିତ୍ୟର ସାମଗ୍ରୀ ହେବା ଉଚିତ । ଯେଉଁ ଶିକ୍ଷା ଯେତେ ଜୀବନ ଆଧାରିତ ହୋଇଛି ତାହା ସେତେ ଫଳପ୍ରଦ । ଜୀବନ ପାଇଁ ଜୀବନଯାପନ ମାଧ୍ୟମରେ ଜୀବନବ୍ୟାପୀ ଶିକ୍ଷାଦେବା ଏକ ପ୍ରତିଷ୍ଠିତ ଶିକ୍ଷାନୀତି । ଏହା ସାହିତ୍ୟ, କଳା ଓ ଜୀବନର ବିକାଶପାଇଁ ସାମର୍ଥ୍ୟଦାୟକ । ହଡ୍‌ସନ୍‌ଙ୍କ ବିଶ୍ଳେଷଣ ହେଉଛି (୧) ଆତ୍ମପ୍ରକାଶ ପାଇଁ ଆମ ଅନ୍ତରର ବାସନା, (୨) ଜନସମୂହ ଓ ସେମାନଙ୍କର ଜୀବନଯାପନକ୍ରିୟା କଳାପରେ ଆମର ଆଗ୍ରହ, (୩) ଯେଉଁ ବାସ୍ତବ ଦୁନିଆରେ ଆମେ ଜୀବନଯାତ୍ରା କରୁ ଓ ଯେଉଁ ଦୁନିଆର କଳ୍ପନା ଆମେ କରୁ ସେଥିରେ ଆଗ୍ରହ ଓ ପରିଶେଷରେ (୪) ବର୍ଣ୍ଣନାରୂପରେ ଆମର ଆନନ୍ଦ—ଏସବୁ ସାହିତ୍ୟ ସୃଷ୍ଟିପାଇଁ ଅଙ୍କୁରୋଦ୍‌ଗମର କାର୍ଯ୍ୟ କରେ । ଏହାହିଁ ଶିକ୍ଷାର ସହାୟକ । ଗାନ୍ଧି, ରବୀନ୍ଦ୍ର, ହ୍ୱାଇଟ୍‌ହେଡ, ନନ୍ ପ୍ରଭୃତି ପ୍ରାଚ୍ୟ ଓ ପାଶ୍ଚାତ୍ୟର ଶିକ୍ଷାଗୁରୁ ପ୍ରତ୍ୟକ୍ଷ ଜ୍ଞାନର ପାଣିପାଗହିଁ ଶିକ୍ଷା ଓ ସାହିତ୍ୟର ଅନୁକୂଳ ବୋଲି ପ୍ରତିପାଦନ କରି ଅଛନ୍ତି ।

ପରୀକ୍ଷା ଅନ୍ୟ ଏକ ଅନ୍ତରାୟ । ଦୁର୍ଭାଗ୍ୟର କଥା ଯେ ପରୀକ୍ଷା ଆମ ସୁକୃତିର ପ୍ରକାଶକ ନ ହୋଇ ଆମ ଦୁଷ୍କୃତିର ପରିଚାୟକ ହୋଇଛି । ସମଗ୍ର ପ୍ରଚେଷ୍ଟାର ବିଷମୟ ପରିଣତି ହେଉଛି ପରୀକ୍ଷା । ସାହିତ୍ୟ ଶିକ୍ଷାରେ ଅନୁରୂପ ପଦ୍ଧତିର ଅବଲମ୍ବନର ଅଭାବ ହେତୁରୁ ଶିକ୍ଷାର ସବୁ କ୍ଷେତ୍ରରେ ଯେପରି ସାହିତ୍ୟରେ ସେହିପରି, ସାହିତ୍ୟ—ଶିକ୍ଷା ମାତ୍ର ଆନୁଷ୍ଠାନିକ ହୋଇ ଯାଇଛି । ପ୍ରୟୋଜନୀୟତାର ତୀବ୍ର ଅନୁଭୂତି ସତ୍ତ୍ୱେ ପରୀକ୍ଷାର ପରିଣତି ସ୍ୱରୂପ ସାହିତ୍ୟ ଶିକ୍ଷା ନିଷ୍ପ୍ରୟୋଜନୀୟ ହୋଇ ପଡ଼ିଛି । କୌଣସି ଗୋଟିଏ ପ୍ରଶ୍ନପତ୍ରରେ ସୌନ୍ଦର୍ଯ୍ୟର ଉପଭୋଗ ପାଇଁ ଗ୍ରାହକତା, ଶୈଳୀ ଓ ପ୍ରକାଶ ଭଙ୍ଗୀର ତୁଳନାତ୍ମକ ବିଚାର, ପ୍ରଗତିଶୀଳ ମନୋଭାବର ଅଧିକାରିତା, ଆଗ୍ରହ, ଅନୁରାଗ, ଶ୍ରଦ୍ଧା, ସୌନ୍ଦର୍ଯ୍ୟର ଉତ୍ସର ସନ୍ଧାନ ଆଦି ସମ୍ବନ୍ଧରେ ପ୍ରଶ୍ନ ନ ଥାଏ । ପ୍ରଶ୍ନ (ପରୀକ୍ଷା) ଯେନି ପାଠ, ତଦନୁସାରେ ପାଠକ, ପଠନ, ପାଠ-ଶିକ୍ଷକ ଓ ପାଠୋପକରଣ ଆମର ସର୍ବନାଶ କରିଛନ୍ତି । ଉଚ୍ଚାରଣ, ସ୍ୱରବିଜ୍ଞାନ, ଲିଖନ ପଦ୍ଧତି, ଶବ୍ଦଜ୍ଞାନ, ବାକ୍ୟଗଠନ ପଦ୍ଧତି ଆଦି ଭାଷାଜ୍ଞାନର ଉପାଦାନ : ସାଂସ୍କୃତିକ ଚେତନା, ଜୀବନାନୁଭୂତି, କଳ୍ପନା ଓ ବାସ୍ତବତାର ଭେଦଜ୍ଞାନ ଆଦି ସାହିତ୍ୟିକ ଉପାଦାନ । ସାହିତ୍ୟିକ ଆଙ୍ଗିକ ଭେଦ, ବିଭିନ୍ନ ମୌଖିକ ପ୍ରକାଶଭଙ୍ଗୀ ଓ ଲିଖିତ ପ୍ରକାଶଭଙ୍ଗୀ ସମ୍ବନ୍ଧରେ ଶିକ୍ଷା ଦିଆଯିବ ଓ ପରୀକ୍ଷା କରାଯିବ ।

ଶିକ୍ଷାରେ ସାହିତ୍ୟର ପ୍ରୟୋଜନୀୟତା ଓ ସେ ସମ୍ବନ୍ଧରେ ଯେଉଁ ତ୍ରୁଟିର ଆଲୋଚନା କରାଗଲା ସେ ଦୃଷ୍ଟିରୁ ଅବସ୍ଥାର ଉନ୍ନତି ପାଇଁ ନିମ୍ନ କେତୋଟି ସୂଚନାର ବିଚାର କରାଯାଇପାରେ ।

(୧) ପଠନପାଇଁ ସାମାଜିକ ପରିବେଶର ସୃଷ୍ଟି । ୧୯୫୫ ସାଲରେ ଆମେରିକାର ଏଲିଜାବେଥ ରୋଜ, ସାହିତ୍ୟ-ଶିକ୍ଷା ସମ୍ବନ୍ଧରେ ହାଇସ୍କୁଲର ଛାତ୍ରମାନଙ୍କୁ ନେଇ ଯେଉଁ ଅଧ୍ୟୟନ କରିଥିଲେ ସେଥିରୁ ଜଣାଯାଏ ଯେ ଶତକଡ଼ା ୭୫ ଭାଗ ଆଦୌ ବହି ପଢ଼ନ୍ତି ନାହିଁ, ଶତକଡା ୨୫ ଭାଗ ବର୍ଷକୁ ଖଣ୍ଡେ ବହି ପଢ଼ନ୍ତି ଓ ଶତକଡ଼ା ୧ ଭାଗ ମାତ୍ର ବର୍ଷକୁ ୫ ଖଣ୍ଡ ଯାଏଁ ବହି ପଢ଼ନ୍ତି । ସେଥିପାଇଁ ପଠନାନୁକୂଳ ସାମାଜିକ ପରିବେଶ ସୃଷ୍ଟି କରିବାର ପ୍ରସ୍ତାବ ଦିଅନ୍ତି । ବର୍ଟନ ଅନ୍ୟ ଏକ ଅଧ୍ୟୟନର ସିଦ୍ଧାନ୍ତରେ କହନ୍ତି ଯେ ଶିକ୍ଷକଙ୍କ ଦୃଷ୍ଟାନ୍ତ ଓ ବିଦ୍ୟାଳୟର ପଠନ ପ୍ରତି ମନୋଭାବ ଦ୍ୱାରା ପଠନର ଅଭ୍ୟାସ ବିଦ୍ୟାଳୟରେ ସୃଷ୍ଟି କରାଯିବ ଓ ସେଥିପାଇଁ ଉପଯୁକ୍ତ ବହି ଯୋଗାଇ ଦିଆଯିବ । ପୁସ୍ତକାଗାରର ଆନ୍ଦୋଳନ ଚାଲୁକରିବା ଉଚିତ । ଏକ ପରିବାର—ଏକ ପାଠାଗାର, ଆମର ଧ୍ୟେୟ ହେବା ଉଚିତ । ଉପଯୁକ୍ତ ପୁସ୍ତକ ସେଥିରେ ରହିବ । ପିଲାଙ୍କ ମନଲାଖି ବହି ରହିବ । ପଠନର ଦୃଷ୍ଟାନ୍ତ ଶିକ୍ଷକ ଓ ଅଭିଭାବକଙ୍କଠାରୁ ପିଲାଏ ଦେଖୁଥିବେ । ପ୍ରାଣବନ୍ତ ଓ ରସୋତ୍ତୀର୍ଣ୍ଣ ଆବୃତ୍ତି ତଥା ଅଭିନୟ ପ୍ରତି ଆଦର ରହିବ ।

(୨) ଭାବ ବିନିମୟର ଅସରନ୍ତି ସୁଯୋଗ ! ସାହିତ୍ୟ ସନ୍ଧ୍ୟା, ଆସର, ପାଠୋତ୍ସବ ଆଦି ନିୟମିତ କରାଯିବ । କବି, ଲେଖକମାନଙ୍କ ଜୟନ୍ତୀ, ଶ୍ରାଦ୍ଧ ଆଉ ପର୍ବପର୍ବାଣୀ ମାଧ୍ୟମରେ କୃତୀ ସାହିତ୍ୟିକମାନଙ୍କ ସମ୍ପର୍କରେ ପିଲାମାନେ ଆସିବେ । ପିଲାମାନଙ୍କ ପାଇଁ ଉପଯୁକ୍ତ ପୁସ୍ତକ, ପତ୍ରପତ୍ରିକା ଆଦି ପ୍ରକାଶନ କରାଯିବ । ପ୍ରତ୍ୟେକ ବିଦ୍ୟାଳୟରେ ଅନ୍ତତଃ ଖଣ୍ଡେ ହାତଲେଖା ପତ୍ରିକା ରହିବ । ପିଲାଙ୍କ ଲେଖାକୁ ସୁଧାରି ଦେବାର ସାଧୁ ଉଦ୍ୟମ ଏଠି ଚଳିବ ନାହିଁ । କେବଳ ପ୍ରୋତ୍ସାହନ, ସୂଚନା ଓ ପରାମର୍ଶର ଦୃଷ୍ଟାନ୍ତ ଏ ଦିଗରେ ସାହାଯ୍ୟ କରିବ । ପିଲାଙ୍କ ଦ୍ୱାରା ନାଟକାଭିନୟ ଓ ନାଟକ ରଚନା ଆଦି ମଧ୍ୟ ବିଶେଷ ଆବଶ୍ୟକ । ବିଦ୍ୟାଳୟ ବାହାରେ ଉପଯୋଗୀ ପତ୍ରପତ୍ରିକାରେ ପିଲାଙ୍କ ଲେଖା ସ୍ଥାନ ପାଇବ ।

(୩) ଲେଖା ସଙ୍କଳନ ! ଦକ୍ଷତା ସହକାରେ ଏହା କରଯିବ । କେଉଁ ଲେଖା ପିଲମାନଙ୍କ ମନଲଖି ହେବ ତାହା ବାଛିବା ଅସଲ ପ୍ରଶ୍ନ । ଏଠି ଅନେକ ସମୟରେ ପ୍ରୌଢ଼ ଆଦର୍ଶ ଓ ବିଗ୍ରର ଦ୍ୱାରା ଆମ୍ଭେମାନେ ପରିଗ୍ରଳିତ ହୋଇଥାଉଁ, ଫଳରେ ପୁରୁଣାକାଳିଆ ପାରମ୍ପରିକ ଲେଖାକୁ ଆମ୍ଭେମାନେ ଅଗ୍ରାଧିକାର ଦେଉଁ । ପିଲଙ୍କ ଲେଖାର ସଙ୍କଳନ ମଧ୍ୟ କରଯିବ ।

(୪) ପାଠ, ପଦ୍ଧତି ଓ ପରୀକ୍ଷା ! ଏସବୁ ଉଦ୍ଦେଶ୍ୟାନୁସାରୀ ହେବ । ଯଦି "ରସାତ୍ମକ ବାକ୍ୟଂ କାବ୍ୟଂ"ହୁଏ, ତେବେ କେଉଁ ପାଠରୁ ଆମେ ବାଛିବା ଓ ତାହାର ଆଲୋଚନା ଆମେ କିପରି କରିବା ? ଭଷା ଭବର ବାହକ, ଭଷାର ଏହି ଭୂମିକାକୁ ଅଗ୍ରାଧିକାର ଦେବାଦ୍ୱାର ଆମେ ସାହିତ୍ୟ-ଶିକ୍ଷାରେ ଶବ୍ଦ-ଭଣ୍ଡାରର ଅଭିବୃଦ୍ଧି ଉପରେ ଅଧିକ ଗୁରୁତ୍ୱ ଦେଇଛୁ । ଶବ୍ଦ ଓ ବାକ୍ୟାବଳୀ ଛାତ୍ରମାନଙ୍କୁ ମୁଖସ୍ଥ • କରିଦେଇ ବଳଦିଆ ଢଙ୍ଗରେ ପୁନଗବୃତ୍ତି କରିବାକୁ କହିଛୁ । ଫଳରେ ସାହିତ୍ୟର ସାମାଜିକ ଓ ସୌନ୍ଦର୍ଯ୍ୟବୋଧର ଦିଗ ଅବହେଳିତ ହୋଇଅଛି । ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ଅପେକ୍ଷା ମୂଲ୍ୟବୋଧହିଁ ମହୀୟାନ୍, ଏକଥା ପାଠରଚନା ଓ ପାଠପଦ୍ଧତିରେ ଉପେକ୍ଷା କରଯାଇଅଛି । ଭଷା କେବଳ ଭବର ବାହକ ନୁହେଁ, ଏହା ଚିନ୍ତାକୁ କ୍ଷିପ୍ରତର କରେ । ଅନ୍ୟମାନଙ୍କୁ ବୁଝିବା, ପ୍ରଭବିତ ଓ ପରିବର୍ତ୍ତିତ କରିହୁଏ । ନିଜର ମନୋଭବକୁ ବ୍ୟକ୍ତ କରଯାଏ ଓ ଆବଶ୍ୟକ ପଡ଼ିଲେ ଲୁଗ୍ଇ ଦିଆଯାଏ । ଏହି ଦୃଷ୍ଟିରୁ ସାହିତ୍ୟ ଶିକ୍ଷାପଦ୍ଧତି ବ୍ୟାକରଣ-ଭିତ୍ତିକ ଓ ସଂସ୍କୃତ-ଆଧାରିତ ହୋଇପାରିବ ନାହିଁ । ଶିକ୍ଷକ ପ୍ରସ୍ତୁତିରେ ଅନୁରୂପ ପନ୍ଥା ଅବଲମ୍ବନ କରଯିବ ।

(୫) ସାହିତ୍ୟ ଶିକ୍ଷାରେ ଗବେଷଣା : ଭରତରେ କାହିଁକି ପାଶ୍ଚାତ୍ୟ ଦେଶରେ ଏ ଦିଗରେ ଗବେଷଣା ସୀମିତ ହୋଇଅଛି । ପଠନ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଅଛି । କାରଣ ପଠନର ବେଗ ମାପି ହେବ, ବୋଧର ବିଗ୍ରର କରିହେବ, ପଠନ କୌଶଳରେ ମୂଲ୍ୟାୟନ କରିହେବ; କିନ୍ତୁ ସାହିତ୍ୟର ଲକ୍ଷ୍ୟ ବୈୟକ୍ତିକ ହୋଇଥିବାରୁ ଗବେଷଣାର ପରିସରଭୁକ୍ତ କରିବା କଷ୍ଟକର ହୋଇଛି । ରସାସ୍ୱାଦନ, ରୁଚିର ଉନ୍ନତି, ବୌଦ୍ଧିକ ଓ ଆଧ୍ୟାତ୍ମିକ ଦିଗ୍‌ବଳୟର ସଂପ୍ରସାରଣ, ଜୀବନର ସମୃଦ୍ଧୀକରଣ ଆଦି ବିଷୟର ମୂଲ୍ୟାୟନ ସହଜ ନୁହେଁ । ମାନବିକ ଶିକ୍ଷାର ବିକାଶରେ ସାହିତ୍ୟର ଭୂମିକା ଏକାନ୍ତ ଆବଶ୍ୟକ । କିନ୍ତୁ ଏହାର ମୂଲ୍ୟାୟନ ଶିକ୍ଷକଙ୍କର ସ୍ୱାତନ୍ତ୍ର୍ୟ ଉପରେ ନିର୍ଭର କରେ । ବହୁ

ଗ୍ରନ୍ଥର ସୁବିସ୍ତୀର୍ଣ୍ଣ ଅଧ୍ୟୟନ ଉପାଦେୟ କିମ୍ବା ଅଳ୍ପ କେତେଖଣ୍ଡି ଗ୍ରନ୍ଥର ଗଭୀର ଅଧ୍ୟୟନ ଅଧିକ ଉପାଦେୟ ବୁଝିବା ଦରକାର ।

ଗଣିତ, ବିଜ୍ଞାନ, କାରିଗରି ବିଦ୍ୟା ପ୍ରଭୃତି ପାଠ୍ୟକ୍ରମରେ ଯେଉଁସବୁ ବିଷୟ ସ୍ଥାନ ପାଇଛି ସେଗୁଡ଼ିକ ଅର୍ଥକରୀ ଓ ଉପଯୋଗୀ । ଦୈନନ୍ଦିନ ଜୀବନରୁ ସେ ସବୁର କାର୍ଯ୍ୟକାରିତା ସହଜରେ ଜଣା ପଡ଼େ । ମନୁଷ୍ୟ ଉତ୍ପାଦନକ୍ଷମ ହୋଇ ସାଂସାରିକ ଫଳ ପାଇବାରେ ସମର୍ଥ ହୁଏ । ଏହା ଫଳରେ ସାହିତ୍ୟ ଓ ଏହି ପ୍ରକାର ମାନବିକ ବିଷୟଗୁଡ଼ିକ ଅବହେଳିତ ହୁଏ । ଏସବୁ ପୋଥିଗତ ଓ ଏସବୁ ଛାଡ଼ିଦେଲେ ଚଳିବ ବୋଲି ଧରି ନିଆଯାଏ । ଏହି ପରିସ୍ଥିତିରେ ପଣ୍ଡିତ ନେହେରୁଙ୍କ ଉକ୍ତି ଅବଶ୍ୟ ସ୍ମରଣୀୟ । "ଆମର ସମସ୍ତ ଶକ୍ତି ଓ ସମ୍ବଳକୁ ଖଟାଇ ଆମେ ଶିଳ୍ପ ସମୃଦ୍ଧି ପାଇଁ ଲାଗିପଡ଼ିବା ଏବଂ ଏହା ସହିତ ସ୍ମରଣ ରଖିବା ଯେ ସହନଶୀଳତା, କରୁଣା ଓ ପ୍ରଜ୍ଞା ବ୍ୟତିରେକେ ଆମର ସମସ୍ତ ଧନ-ଦୌଲତ ଧୂଳିସାତ୍ ହୋଇଯିବ ।" ଜୀବନ ପାଇଁ ଭୌତିକ ବିଭବ ଏକାନ୍ତ ଆବଶ୍ୟକ । କିନ୍ତୁ ବିଷୟଭୋଗରୁ ଆନନ୍ଦ ମିଳେ ନାହିଁ । ସେଥିରେ ଶାନ୍ତି ନଥାଏ । 'ଜଞ୍ଜାଳ ଜଳଦଜଳେ ପଙ୍କିଳ ଉଦର'ପରି ବିଷୟୀର ବିଷୟ ଭାବନା ନୈରାଶ୍ୟରେ ଜର୍ଜରିତ ହୋଇଥାଏ । ତଦ୍ୱାରା ମାନବିକ ଶିକ୍ଷାର ଉଦ୍ଦେଶ୍ୟ ବ୍ୟାହତ ହୁଏ । ବିଜ୍ଞାନ ସହିତ ସାହିତ୍ୟ ଓ ଅଧ୍ୟାତ୍ମଜ୍ଞାନର ପର୍ଯ୍ୟାୟକ୍ରମିକ ସମ୍ମିଶ୍ରଣ ଓ ସହଯୋଗ ଫଳରେ ଆସିଯାଏ ବିଜ୍ଞାନ ଆଧାରିତ ମାନବବାଦ । ଏହାହିଁ ନବଜୀବନର ଆବଶ୍ୟକତା ।



# ଶିକ୍ଷାର ଆଭିମୁଖ୍ୟ, ଶିକ୍ଷକ ଓ ଶିକ୍ଷକସଂଗଠନ

ଏବେବି ଶିକ୍ଷାର ଆଭିମୁଖ୍ୟ କଥା ଶୁଣିଲେ ଅନେକେ ନାକ ଟେକନ୍ତି ଓ କହନ୍ତି "ରଖ, ରଖ, ଏସବୁ ଟ୍ରେନିଂ କଲେଜରେ କହିବ"। ଆଉ ଯେତେଜଣ କାନ ଡେ଼ରନ୍ତି, ସେମାନଙ୍କୁ ଆଇମା' କାହାଣୀ-ପରୀଗଇଳ କଥାପରି ଲଗେ ଓ ସେମାନେ ଶୁଣୁ ଶୁଣୁ ଶୋଇ ପଡ଼ନ୍ତି। ବାସ୍ତବରେ ଶିକ୍ଷାର ଆଭିମୁଖ୍ୟ ସମ୍ବନ୍ଧୀୟ ବର୍ଣ୍ଣନା ଆଡମ୍ବରପୂର୍ଣ୍ଣ। ସେସବୁ ଆମ କମିଟି ଓ କମିସନଙ୍କ ନଥିପତ୍ରରେ ଶୋଭା ପାଉଛି। ସେଥିରେ ବିଦ୍‌ବତ୍ତା ଏପରି ପୂରି ଯାଇଛି ଯେ ସେଥିରୁ କିଛି କିଛି ରପ୍ତାନୀ କରିବାର ବେଳ ଆସିଛି। ସେଥିରେ ଟ୍ରେନିଂ ସ୍କୁଲ ଓ କଲେଜରେ ବଢ଼ିଆ ପ୍ରଶ୍ନ କରଯାଏ। ତେଣୁ ଗୁରୁଛାତ୍ରମାନେ ସେଗୁଡ଼ିକୁ ଅକ୍ଷରେ ଅକ୍ଷରେ ଘୋଷିଦେଇ ପରୀକ୍ଷାରେ ବାନ୍ତି କରି ଦିଅନ୍ତି। କାର୍ଯ୍ୟତଃ କିଛି ରହେ।

ଶିକ୍ଷାରେ ପରୀକ୍ଷାର ପ୍ରଭୁତ୍ୱ, ଜୀବନରେ ପରମୁଖାପେକ୍ଷିତା, ସମାଜ ପ୍ରତି ବିମୁଖତା ଓ ଅଧ୍ୟୟନର ଜଗତ୍ ତଥା ଜୀବନ-ଜୀବିକା ଜଗତ୍ ମଧ୍ୟରେ ବିଚ୍ଛିନ୍ନତା ସବୁକୁ ସତ୍ୟାନାଶ କରିଛି। ଶିକ୍ଷାର ଆଭିମୁଖ୍ୟ ମୂଳରେ କୁଠାରଘାତ କରିଛି। ଉଦ୍ଦେଶ୍ୟବିହୀନ ହୋଇ ପାଠ୍ୟତାଲିକା କେବଳ କେତେକ ବିଷୟସୂଚୀରେ ପରିଣତ ହୋଇଛି। ଏତକ ବି ଯଦି ସବୁ ଶିକ୍ଷାୟତନରେ ଶିକ୍ଷାର୍ଥୀ, ଶିକ୍ଷାଭିଭାବକ, ଶିକ୍ଷକ ଆଦି ସମ୍ପୃକ୍ତ ସମସ୍ତଙ୍କ ପାଇଁ ମିଳି ଯାଆନ୍ତା, ତେବେ ବିଭିନ୍ନ ବିଷୟର ପରିସର ଓ ଆନୁପାତିକ ଗୁରୁତ୍ୱ ଜଣାପଡ଼ନ୍ତା। ଗୋଟିଏ ବିଷୟାନ୍ତର୍ଗତ ଓ ବିଭିନ୍ନ ବିଷୟର ସମ୍ପୃକ୍ତ ପାଠ୍ୟ ଏକକ ମଧ୍ୟରେ ସମ୍ପର୍କ ଜାଣିହୁଅନ୍ତା। ଏହାହିଁ ବସ୍ତୁତଃ ହୁଅନ୍ତା Courses of Studies, କାରଣ ଏହା Course ଅର୍ଥାତ୍ ଗତିପଥ ନିର୍ଦ୍ଦେଶିତ କରନ୍ତା। ଅବଶ୍ୟ ଏଥିରେ ଗତି କେଉଁଠାକୁ ଏହା ନାହିଁ। ତେଣୁ ଏହା ପାଠ୍ୟକ୍ରମ (Curriculum) ନୁହେଁ, କାରଣ ଏହା ସଂଗଠିତ, ସହଜ ଓ ସୁପରିକଳ୍ପିତ ଶିକ୍ଷଣ ଅଭିଜ୍ଞତା ନୁହେଁ। ସେଥିରେ ଶିକ୍ଷାର ଉଦ୍ଦେଶ୍ୟ ନଥାଏ। ଆମେ ଏମିତି ଘାଣ୍ଟି ହେଉଛୁ ଓ ଏସବୁକୁ ଛାଡ଼ି ପାଠ୍ୟ ପୁସ୍ତକକୁ ଜାବୁଡ଼ି ଧରିଛୁ। ଆମେ ଶିକ୍ଷାର୍ଥୀଙ୍କ ଶିକ୍ଷକ ନୋହୁଁ। ଆମେ ହେଉଛୁଁ ପାଠ୍ୟ ପୁସ୍ତକର

ଶିକ୍ଷକ । "ପଳାଇ ପସିଲି ମାଉସି ଘରେ, ମାଉସୀ ମାଇଲେ ଦ୍ୱି-ପ୍ରହରେ" ପରି ପାଠ୍ୟ ପୁସ୍ତକ ମଧ୍ୟ ଉଦ୍ଦେଶ୍ୟ ସିଦ୍ଧିର ଉପଯୁକ୍ତ ଓ ପର୍ଯ୍ୟାପ୍ତ ସାଧନ ନୁହେଁ, କାରଣ ଏହା ଉଦ୍ଦେଶ୍ୟ—ପ୍ରଧାନ ନୁହେଁ । ଏହାର ପ୍ରସ୍ତୁତି ପରୀକ୍ଷିତ ନୁହେଁ । ଏହା ଅନେକାଂଶରେ କେବଳ ପ୍ରତିଷ୍ଠିତ ବୟସ୍କ ଲୋକଙ୍କର ପ୍ରତିଭାର ପ୍ରତିଫଳନ । ଉଦ୍ଦେଶ୍ୟ ଆଧାରିତ ବ୍ୟବହାର ପାଇଁ ପରାମର୍ଶ ପୁସ୍ତକ ସହିତ ହେଉ ବା ସ୍ୱତନ୍ତ୍ର ହେଉ ଦିଆଯାଇ ନଥାଏ । ଶିକ୍ଷାର ସ୍ତର ଅନୁସାରେ ଓ ପ୍ରତ୍ୟେକ ସ୍ତରର ବିଭିନ୍ନ ବିଷୟ ଅନୁସାରେ ଉଦ୍ଦେଶ୍ୟ ସୂଚୀତ ହୋଇନଥାଏ । ଉଭୟ ପ୍ରକାର ଉଦ୍ଦେଶ୍ୟର ବିଶ୍ଳେଷଣ କରାଯାଇ ପାଠ୍ୟପୁସ୍ତକର ରଚନା କରାଯାଏ ନାହିଁ । ଫଳରେ ଏହାର ପ୍ରୟୋଗ ବଳଦିଆ ହୋଇଯାଏ । ଶେଷରେ ପରୀକ୍ଷା ପାଖେଇ ଆସିଲେ ଏହାର ଭରସା ଛାଡ଼ି ପତିତପାବନ ହୋଇପଡ଼େ "ପ୍ରଶ୍ନୋତ୍ତର" । ସାର ହୁଏ "ସହଜ ସାଫଲ୍ୟର ସାରଣୀ" । ଛାତ୍ର, ଶିକ୍ଷକ, ଅଭିଭାବକ, ପ୍ରଭୃତି ସମସ୍ତଙ୍କ ଆଖିରେ ଏହାହିଁ ହୁଏ "ଚତୁର୍ବର୍ଗମୂର୍ତ୍ତୀ ।" ବେଶ୍ ଶସ୍ତା, ସହଜ, ସୁନ୍ଦର ଓ ମଜ୍‌ବୁତ୍ ।

ତେବେ ଶିକ୍ଷାର କାହିଁକି କାହିଁ ? ଶିକ୍ଷାର ଆଭିମୁଖ୍ୟକୁ କିଏ ରଖିଛି ? ଶିକ୍ଷକ, ଶିକ୍ଷାର୍ଥୀ, ଅଭିଭାବକ, ପ୍ରଶାସକ, ନୀତିନିର୍ଦ୍ଧାରକ ଆଦି ସମସ୍ତଙ୍କୁ ଏହି ପ୍ରଶ୍ନ ଗୋଟି ଗୋଟି କରି ପଚାରିଲେ ପରସ୍ପର ଠାରଠାରି ହୁଅନ୍ତି । ଜଣେ ହୁଏତ ଅନ୍ୟଜଣଙ୍କୁ ବତାଇ ଦିଅନ୍ତି । କିଛିଟା ଅସ୍ପଷ୍ଟ ଉତ୍ତର ମିଳେ । ଯଦି କେହି ଜିଦ୍‌ଖୋରିଆ ଲୋକ କାହିଁକିର କାହିଁ ପାଇବାକୁ ଲାଗିପଡ଼ନ୍ତି, ତେବେ ଅତୀତରେ ଯାହା ଘଟିଥିଲା ଏବେ ତାହା ଘଟିପାରେ—ଶିକ୍ଷାର ଆଭିମୁଖ୍ୟ ଫାଇଲରେ ବନ୍ଧାହୋଇ ପଡ଼ିଥିବ । ଅବୋଧ ଫାଇଲ ରକ୍ଷକର ଏ ବିଷୟରେ ଚିନ୍ତା ଓ ଚେତନା ନଥିବ, ଏହାତ ସ୍ୱାଭାବିକ କଥା । ସବୁଠାରୁ ବେଶୀ ଅସ୍ୱାଭାବିକ ଓ ଅସମ୍ଭବ କଥା ହେଉଛି, ଆମ ସମସ୍ତଙ୍କର ଚେତା ନାହିଁ । ଆମ ଗାଢ଼ ନିଦ ଭାଙ୍ଗିଯାଉଛି ଯେତେବେଳେ ଆସୁଛି : ସଙ୍କଟ; ଗୁଣର, ପରିମାଣର, ଚରିତ୍ରର, ଆସୁଛି ବିଭ୍ରାଟ । ଆମେ ସେତେବେଳେ ଉଠିପଡ଼ି, ପ୍ରଶ୍ନକରୁଛ, ଶିକ୍ଷା କାହିଁକି ? ପୁଣି ଖୋଜାଖୋଜିଛି ସେ ଫାଇଲ ରକ୍ଷକଙ୍କୁ, ସେ କିନ୍ତୁ ଧରାପଡ଼ୁ ନାହାନ୍ତି । ଆଲୋଚନା ହେଉଛି, ଶିକ୍ଷାର ଫଳ କଣ ? ଫଳ ହେଉଛି ଆଭିମୁଖ୍ୟର ଆଚରଣଗତ ପରିବର୍ତ୍ତନ । ବ୍ୟକ୍ତିର ପରିବର୍ତ୍ତନ ଓ ସମାଜର ପରିବର୍ତ୍ତନ, ବ୍ୟକ୍ତି ସମାଜକୁ ଓ ସମାଜ ବ୍ୟକ୍ତିକୁ ପରିବର୍ତ୍ତିତ କରୁଛି । ଶିକ୍ଷା ଫଳରେ ଓ ଶିକ୍ଷା ସମଗ୍ର ବିକାଶର ସାଧ୍ୟ ଓ ସାଧନ ହେବା ଫଳରେ ଏହା ହେଉଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଏହି କାହିଁକିର କାହିଁକି ? ଆଭିମୁଖ୍ୟର ଆବଶ୍ୟକତା କ'ଣ ? ଏ ବିଷୟରେ ପୂର୍ବରୁ ପରୋକ୍ଷ ଆଲୋଚନା କରାଯାଇଛି । ପ୍ରତ୍ୟକ୍ଷ ଭାବରେ କହିବାକୁ ଗଲେ ଶିକ୍ଷା ଓ ସାମାଜିକ ପ୍ରଗତି ଅଙ୍ଗାଙ୍ଗୀ ଜଡ଼ିତ ଓ ଦୁହେଁ ଉଦ୍ଦେଶ୍ୟ-ପ୍ରଧାନ । ଉଦ୍ଦେଶ୍ୟକୁ ବିଶ୍ଳେଷଣ କରି ଛାତ୍ରମାନଙ୍କ ଆଚରଣରେ କେଉଁ ପ୍ରକାର ପରିବର୍ତ୍ତନ ଆଶାକରିବାର କଥା ଏହା ସ୍ଥିର କରାଯାଇ ଅନୁରୂପ ଶିକ୍ଷଣ ଅଭିଜ୍ଞତା ପ୍ରସ୍ତୁତ କରାଯାଏ । ଏହା ପାଠ୍ୟକ୍ରମ ନାମରେ ଅଭିହିତ । ଶିକ୍ଷାର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ମୂଲ୍ୟାୟନ । ଉଦ୍ଦେଶ୍ୟାନୁକୂଳ ମୂଲ୍ୟାୟନ ପଦ୍ଧତି ସୂଚିତ ହୁଏ । ବହୁ ଶିକ୍ଷା-ଶାସ୍ତ୍ରୀ ଏପରି ମତ ପ୍ରଦାନ କରିଛନ୍ତି । ସେମାନଙ୍କ ମଧ୍ୟରେ B.S. Bloom ତାଙ୍କ ପ୍ରଣୀତ The Taxonomy of Educational Objectives ଶୀର୍ଷକ ପୁସ୍ତକରେ ଶିକ୍ଷାର ଉଦ୍ଦେଶ୍ୟକୁ (1) Cognitive, (2) Affective ଓ (3) Psy-chomotor domain ରେ ବିଭକ୍ତ କରିଛନ୍ତି । ଉଦ୍ଦେଶ୍ୟ, ଶିକ୍ଷଣ ଅଭିଜ୍ଞତା ଓ ମୂଲ୍ୟାୟନକୁ ଗୋଟିଏ ସମବାହୁ ତ୍ରିଭୁଜର ଗୋଟିଏ ଗୋଟିଏ ଶୀର୍ଷବିନ୍ଦୁରେ ଅବସ୍ଥାପିତ କରି ଏମାନଙ୍କ ମଧ୍ୟରେ ସଂପର୍କ ସୂଚିତ କରାଯାଇଛି । ଏହା ଅବଶ୍ୟ ସର୍ବସ୍ୱୀକୃତ ଯେ




ଶିକ୍ଷାର ଆଭିମୁଖ୍ୟ ଶିକ୍ଷକଙ୍କ ପକ୍ଷରେ ଧ୍ରୁବତାରା ସଦୃଶ ଦିଗନିୟାମକ । ଶିକ୍ଷା ବିଷୟରେ ଲୋକମାନେ କେଉଁ ଆଶାପୋଷଣ କରନ୍ତି ଏହା ସେଥିରୁ ସୂଚିତ ହୁଏ । ଶିକ୍ଷକ ତଥା ଶିକ୍ଷାୟତନର କାର୍ଯ୍ୟ କେଉଁ ଦିଗରୁ ମୂଲ୍ୟାୟନ କରାଯିବ ଏହା ମଧ୍ୟ

ଜଣାପଡେ । ଶିକ୍ଷାର୍ଥୀମାନଙ୍କ କାର୍ଯ୍ୟ ଓ କୃତିର ମୂଲ୍ୟାୟନ ମଧ୍ୟ ସେଥିରୁ କରଯାଇ ପାରିବ । ପୁନଶ୍ଚ ଆଭିମୁଖ୍ୟ, ଅଭିଜ୍ଞତା ଓ ମୂଲ୍ୟାୟନ ପରସ୍ପର ସମ୍ପର୍କୀକୃତ ।

ଶିକ୍ଷାର ଉଦ୍ଦେଶ୍ୟାବଳିକୁ ଶିକ୍ଷକ, ଶିକ୍ଷାର୍ଥୀ ଓ ଅଭିଭାବକ ମଧ୍ୟ ଜାଣିବାର କଥା । ସେ ସବୁ ନବୁଝିଲେ ଆବଶ୍ୟକ ପ୍ରେରଣା ଆସିବ ନାହିଁ । ଜଣେ ଶିକ୍ଷାବିତ୍‌ଙ୍କ ମତରେ "ଉତ୍ତମ ଶିକ୍ଷକ ହେଉଛନ୍ତି ସେ ଯେ ପିଲମାନଙ୍କୁ ସର୍ବାଧିକ କୁଶଳତା ଓ ଶିକ୍ଷଣର ସ୍ଥାୟିତ୍ୱ ସହକାରେ ଶିକ୍ଷାର ଆଭିମୁଖ୍ୟ ସାଧନ କରିପାରନ୍ତି" । ଏହା ଫଳରେ ତାଙ୍କ ବ୍ୟକ୍ତିଗତ ଆତ୍ମସନ୍ତୋଷ ସଙ୍ଗେ ସଙ୍ଗେ ସାମାଜିକ ନିପୁଣତା ବଢ଼ିବ । ଶିକ୍ଷାଗତ ସମସ୍ତ ସୁପରାମର୍ଶ ଓ ସୁପାରିଶ୍ ପଛରେ ଆଦର୍ଶ ଓ ଆଭିମୁଖ୍ୟ ରହିଛି । ଆଦର୍ଶକୁ ଛାଡ଼ିଦେବା ଓ ସମାଜକୁ ନ ସଜାଡ଼ିବା ଫଳରେ ସୁପାରିଶ୍ ଧରିବା ଦ୍ୱାରା ଏହା କାର୍ଯ୍ୟତଃ ବଳଦିଆ ହୋଇଯାଉଛି । ଏହି ପ୍ରସଙ୍ଗରେ ଏକ ଜ୍ୱଳନ୍ତ ଉଦାହରଣ ମୌଳିକ ଶିକ୍ଷା । ଏହାର ବିପର୍ଯ୍ୟୟ କାହାକୁ ଅଜଣା ନୁହଁ । ମୂଲ୍ୟାୟନ, ମାର୍ଗଦର୍ଶନ, ବିଦ୍ୟାଳୟ–ସଙ୍ଗମ ଆଦି ଯୋଜନା ତ୍ରୁଟିମୁକ୍ତ ନୁହେଁ । ଆହୁରି ମଧ୍ୟ କୁହାଯାଇପାରେ ଯେ ଦଶ ଯୁକ୍ତ ଦୁଇ ଯୁକ୍ତ ତିନି (୧୦+୨+୩) ଶିକ୍ଷାଯୋଜନା କେବେହେଁ ଗଣିତର ବିଷୟ ନୁହଁ । ଏହା ପଛରେ ବୈପ୍ଳବିକ ଆଭିମୁଖ୍ୟ ରହିଛି ଓ ଆଭିମୁଖ୍ୟକୁ ଛାଡ଼ିଦେଲେ ବିପ୍ଳବ ବିଫଳ ହେବାର ଆଶଙ୍କା ଜଳଜଳ ଦିଶୁଛି ।

ଶିକ୍ଷକ କାୟମନବାକ୍ୟରେ ଶିକ୍ଷାର ଉଦ୍ଦେଶ୍ୟ ଦ୍ୱାରା ଅନୁପ୍ରାଣିତ ହେବା ଉଚିତ । ସେଥିପାଇଁ ଶିକ୍ଷକ ଓ ଶିକ୍ଷାୟତନ ଏ ଦିଗରେ ଯଥେଷ୍ଟ ପ୍ରେରଣା, ପ୍ରଣାଳୀ ଓ କୌଶଳ ଯୋଗାଇଦେବା ଦରକାର । ସେବାକାଳୀନ ଶିକ୍ଷା ଓ ପ୍ରାକ୍‌ସେବାକାଳୀନ ଶିକ୍ଷା ଏହି ଆଭିମୁଖ୍ୟରେ ରଞ୍ଜିତ ହେବା ଆବଶ୍ୟକ । କିନ୍ତୁ ଶିକ୍ଷକ-ଶିକ୍ଷାୟତନଗୁଡ଼ିକରେ ଶିକ୍ଷାର ଆଭିମୁଖ୍ୟ ସମ୍ପର୍କରେ ଯେତେ ତତ୍ତ୍ୱ ବିନିମୟ ଓ ଶାସ୍ତ୍ର ଉଦ୍ଧାର କରଯାଏ କାର୍ଯ୍ୟରେ ତାହା ହୁଏ ନାହିଁ । ପାଠଟୀକାଗୁଡ଼ିକର ନିଶ୍ଚିତ ଅଙ୍ଗ ହେଉଛି ସାଧାରଣ ଓ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟର କଥନ । ଏହି ଅନୁସାରେ ଶିକ୍ଷଣ ଅଭିଜ୍ଞତା, ଶିକ୍ଷାପ୍ରଣାଳୀ, ଓ ମୂଲ୍ୟାୟନ କିପରି ସୁସଂହତ ହୋଇ ରହିବ ଏଥିପାଇଁ ମୁହୂର୍ତ୍ତକର ଚିନ୍ତା ପ୍ରକାଶ କରଯାଏ ନାହିଁ କହିଲେ ଚଳେ । ଏହି ବ୍ୟତିକ୍ରମ ଅନେକଙ୍କୁ ବିଚଳିତ କରେ । ଶାସ୍ତ୍ରନିଷ୍ଠ ଅନ୍ତ କେତେଜଣ ଗୁରୁଛାତ୍ର ଶିକ୍ଷକ-ନିଯୁକ୍ତି ପରେ ଛାତ୍ରଙ୍କୁ ପୁସ୍ତକ-କୀଟ କରି ଗଠନ

କରିବାର ସହଜ, ସରଳ ଓ ସିଧା ସିଧା ଆଦର୍ଶର ଲୋଭ ଛାଡ଼ି କିପରି ସମସ୍ତ ଶିକ୍ଷାର ପାଠକୁ "ଯତ୍ ପଠିତଂ ତତ୍ ଶିକ୍ଷକ-ଶିକ୍ଷାୟତନ ଗରବେ ନିବେଦିତଂ" କରି ରହି ଯାଆନ୍ତି । ଏହି ଦୁରବସ୍ଥା, ବିପର୍ଯ୍ୟୟ ଓ ଅପଚୟକୁ ସୁଧାରିନେବା ପାଇଁ ଶିକ୍ଷା ପ୍ରଶାସନରେ ସମୟ, ଶକ୍ତି, ସ୍ୱତନ୍ତ୍ର ଟ୍ରେନିଂ ବା ଦୃଷ୍ଟିକୋଣ ନଥାଏ ।

ଏପରି ସ୍ଥଳରେ ଶିକ୍ଷକ–ସଂଗଠନ କରିବେ ବା କ'ଣ ? ସେମାନେ ତ ଅପାଂକ୍ତେୟ । ଏହି ଅର୍ଥରେ ଏହା କୁହାଯାଇଛି ଯେ ଶିକ୍ଷା ସମ୍ବନ୍ଧୀୟ ନୀତି ନିର୍ଦ୍ଧାରଣ, ଆଇନ୍ ପ୍ରଣୟନ, ଯୋଜନାପ୍ରସ୍ତୁତି, ମୂଲ୍ୟାୟନ, ନବପ୍ରବର୍ତ୍ତନ ଆଦି ବିଷୟରେ ସେମାନେ କେବେ ନିମନ୍ତ୍ରିତ ହେବା ଆମଦେଶର ଶିକ୍ଷା ଇତିହାସରେ ବିରଳ । ସେମାନେ ଅଖୋଜା ଓ ଅଲୋଡ଼ା, ଯଦିଓ ଶିକ୍ଷକ ଶିକ୍ଷାର ମୂଳ ସମ୍ବଳ ହୋଇଥିବାରୁ ସେହି ସମ୍ଭାବନା ଭରପୂର ହୋଇଛି ଶିକ୍ଷକ-ସଙ୍ଗଠନର । ଯଦି କେହି ଶିକ୍ଷକ-ସଙ୍ଗଠନରେ ଜନ୍ମଜାତକ ଦେଖନ୍ତି ତେବେ ଗ୍ରହାଧିପତି ନୀଚସ୍ଥ ହୋଇଥିବାରୁ ଦୁଇଟି ଭୁଲ ବୁଝାମଣା ସେମାନଙ୍କ ଜାତକରେ ସୁସ୍ପଷ୍ଟ । ଏହା କେତେକାଳ ରହିବ ପୁଣି ଜାତକ ଦେଖିଲେ ଜଣାପଡ଼ିବ । ଯାହାହେଉ ସେ ଦୁଇ ଭୁଲ୍‌ବୁଝାମଣା ମଧ୍ୟରୁ ଗୋଟିଏ ହେଉଛି ବିରୋଧ କରିବା ଏମାନଙ୍କର କାମ । ଲଢ଼ିବା ହେଉଛି ଏମାନଙ୍କର ଧର୍ମ । ଅବୁଝା ହେବା ମର୍ମ । ଦ୍ୱିତୀୟଟି ହେଉଛି ଦାୟିତ୍ୱ ନ ସମ୍ଭାଳି ଦାବୀ ଉପସ୍ଥାପନ କରିବା ଏମାନଙ୍କର ନୀତିଦିନିଆ କାରବାର ।

ଶିକ୍ଷା ତ ସମସ୍ତଙ୍କ ହାଣ୍ଡିଶାଳର କଥା । ପୋଖତ ଗନ୍ଧୁଣିଆ ଯେଉଁ ବା ଯେତେ ମନ୍ତବ୍ୟ ଦିଅନ୍ତି ହାଣ୍ଡିଶାଳକୁ ବିଲ୍‌କୁଲ ପଶିନଥିବା ଲୋକ ବି ସେହି ବା ସେତେ ମନ୍ତବ୍ୟ ଦିଅନ୍ତି । ଶିକ୍ଷା ସମସ୍ତଙ୍କ ଚରଭୂଇଁ । ସେପରି ସ୍ଥଳରେ ଶିକ୍ଷକ–ସଙ୍ଗଠନକୁ ଶିକ୍ଷାର ଏକ ବଳିଷ୍ଠ ସଙ୍ଗଠନ କରିବାକୁ ହେବ । ଶିକ୍ଷା ଗବେଷଣା ଉପରେ ଶିକ୍ଷକଙ୍କ ଦାବିକୁ ଅଧାରିତ୍ କରାଯିବ ।

ଯାହାହେଉ, ଆଲୋଚ୍ୟ ପ୍ରସଙ୍ଗରେ ଶିକ୍ଷାର ସଂସ୍କାର କରି ସମସ୍ତ ଶିକ୍ଷାର କ୍ରମକୁ ଉଦ୍ଦେଶ୍ୟ ଆଧାରିତ କରିବା ପାଇଁ କେତେକ ସୂଚନା ଦିଆଯାଇପାରେ । ଗୋଟିଏ ସୂଚନା ହେଉଛି (୧) ଶିକ୍ଷକ–ସଂଗଠନ ସହିତ କାର୍ଯ୍ୟକରିବାର ଷ୍ଟ୍ରାଟେଜି ବାହାର କରିବାକୁ ହେବ । ସଂଗଠିତ ଶିକ୍ଷକ ସଂସ୍ଥାର ସଦୁପଯୋଗ କରାଯିବା ଉଚିତ । ଶିକ୍ଷା ଏକ

ବ୍ୟାପକ ଓ ଜଟିଳ ପ୍ରକ୍ରିୟା, ତେଣୁ ଏହାର ସଫଳତା ପାଇଁ ସମସ୍ତଙ୍କ ସହଯୋଗ ଏକାନ୍ତ ଆବଶ୍ୟକ । ଜଣେ ପ୍ରଶାସକଙ୍କ କର୍ତ୍ତୃତ୍ୱ ତାହିର ଅପେକ୍ଷା ଶତଗୁଣ ଫଳପ୍ରଦ ଓ ପ୍ରେରଣାଦାୟକ ହେଉଛି ସମୂହ ଆଦର୍ଶ । ରାଜ୍ୟ ଶିକ୍ଷାପ୍ରତିଷ୍ଠାନର ପ୍ରତିଷ୍ଠା କାଳରେ ପ୍ରତିଟି ବ୍ଲକରେ ଶିକ୍ଷକ–ସଙ୍ଗଠନର ସହଯୋଗରେ ଅନେକ ସୁବିସ୍ତର ଓ ଶିକ୍ଷାର ଗୁଣାତ୍ମକ-ବିକାଶ ଦୃଷ୍ଟିରୁ କାର୍ଯ୍ୟକ୍ରମ ସହଜରେ କରଯାଇ ପାରିଥିଲା । ଗ୍ରୁପ୍ ଡାଇନାମିକ୍ସ ( Group Dynamics ) ସଂକ୍ରାନ୍ତରେ ଅନେକ ଗବେଷଣା-ଲବ୍ଧ ସିଦ୍ଧାନ୍ତ ରହିଛି । ଶିକ୍ଷକ-ସଙ୍ଗଠନର ସଂଗ୍ରାମୀ ଭୂମିକା ସହିତ ବର୍ତ୍ତମାନ ପରିସ୍ଥିତିରେ ସହଯୋଗର ସେତୁ ମଧ୍ୟ ଉଦ୍‌ଭବନ କରାଯିବା ଉଚିତ । ଶିକ୍ଷକଙ୍କ ସଂଖ୍ୟା ବଢ଼ିଛି ଓ ବଢିବ । ପରିବର୍ତ୍ତନର ପ୍ରବାହ ବେଶ ପ୍ରବଳ ହୋଇଛି ଓ ପ୍ରବଳତର ହେବ । ପ୍ରତି ଶିକ୍ଷକଙ୍କୁ ହାତଧରି ବୁଝାଇ ଦେବାର ସମ୍ଭାବନା ଓ ସମ୍ବଳ କମିଯାଇଛି ଓ କମିବ । ସଙ୍ଗଠନର ଶକ୍ତି ମଧ୍ୟ ସୁଦୃଢ଼ ହେଉଛି ଓ ହେବ । ଏପରି ସ୍ଥଳରେ ଶିକ୍ଷକ-ସଂଗଠନକୁ ସାଥିକରି ପାରିଲେ ଶିକ୍ଷାର ଆମୂଳଚୂଳ ପରିବର୍ତ୍ତନ ସହଜରେ କରଯାଇ ପାରନ୍ତା ।

(୨) ଶିକ୍ଷକ ଓ ଶିକ୍ଷକ-ସଙ୍ଗଠନ ଉଦ୍ଦେଶ୍ୟର ଫର୍ମୁଲେସନ ଓ ବିକାଶରେ ଭାଗନେବା ଉଚିତ । ଉଦ୍ଦେଶ୍ୟଗୁଡ଼ିକର ରୂପାୟନ ଓ ଛାତ୍ର ଜୀବନର ଆଚରଣଗତ ପରିବର୍ତ୍ତନ ଶୀର୍ଷକ ବିଶ୍ଳେଷଣରେ ସେମାନେ ଅଂଶ ଗ୍ରହଣ କରିବେ । ଏହା ଏକ ସମ୍ମିଳିତ ପ୍ରକ୍ରିୟା ହେବ ଓ ଏଥିରେ ଉଦ୍ଦେଶ୍ୟାବଳି ସ୍ଥିରୀକରଣର ବିଶାରଦ, ଶିକ୍ଷା-ଶାସ୍ତ୍ରୀ, ସମ୍ବିଧାନ-ଶାସ୍ତ୍ରଜ୍ଞ, ରାଜନୈତିକ ମନସ୍ୱୀ, ଶିକ୍ଷକ ଓ ଶିକ୍ଷା-ସଂଗଠନ ସହଯୋଗ କରିବେ ।

(୩) ଉଦ୍ଦେଶ୍ୟ ଆଧାରିତ ବିଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ କରଯିବ । ସେସବୁ ହେଉଛି ଜାତୀୟ ସଂହତି, ଜାତୀୟ ଚରିତ୍ର, ଗଣତନ୍ତ୍ର, ଅବୈତନିକ ବାଧ୍ୟତାମୂଳକ ଶିକ୍ଷା, ପ୍ରୌଢ଼ଶିକ୍ଷା, ସମାଜବାଦୀ ଶିକ୍ଷା ଓ ସମାଜ ଇତ୍ୟାଦି । ଜାତୀୟ ସ୍ତରରେ ସ୍ଥିରୀକୃତ ଲକ୍ଷ୍ୟଗୁଡ଼ିକର ପରିସୀମା ମଧ୍ୟରେ ପ୍ରତ୍ୟେକ ଶିକ୍ଷାୟତନ ନିଜର ଶକ୍ତି ଓ ସମ୍ବଳ ଅନୁସାରେ କାର୍ଯ୍ୟକାରୀ କରିବେ । ଏହାର ପ୍ରତ୍ୟନୁଭବ ଯୋଗୁଁ ସାଧ୍ୟ ତଥା ଅସାଧ୍ୟ ସାଧ୍ୟ ଲକ୍ଷ୍ୟଗୁଡ଼ିକୁ ଚିହ୍ନଟ କରଯାଇ ପାରିବ । ଲକ୍ଷ୍ୟର ପୁନଃ ନିରୀକରଣରେ ମଧ୍ୟ ସାହାଯ୍ୟ ମିଳିବ ।

(୪) ସ୍କୁଲ ସ୍ତରରେ ଶିକ୍ଷକମାନେ ସ୍ୱାଧୀନ ହୋଇ ବ୍ୟକ୍ତିଗତ ଦାୟିତ୍ୱ ଓ ଅଭିକ୍ରମ ପ୍ରକାଶ କରିବାର ସୁଯୋଗ ପାଇବେ । ଆମର ସମୂହ ନିଷ୍ପତ୍ତି ଓ ସହଯୋଗ

ସୂତ୍ରରେ ଯୋଜନା କରାଯିବ । କିନ୍ତୁ ସ୍କୁଲ ସ୍ତରରେ ଶିକ୍ଷକମାନେ ନିଜ ନିଜ ଶକ୍ତି ଅନୁସାରେ କାର୍ଯ୍ୟକରିବେ । ପ୍ରଣାଳୀ, ପାଠ୍ୟକ୍ରମ, ପାଠ୍ୟପୁସ୍ତକ ଆଦି ଉଦ୍ଦେଶ୍ୟ ସାଧନ ସହାୟକ ଉପାଦାନଗୁଡ଼ିକର ବିକଳ୍ପ ସେଟ୍‌ଗୁଡ଼ିକୁ ନେଇ ଶିକ୍ଷାୟତନର ପରିବେଶ ଓ ଶିକ୍ଷାର୍ଥୀମାନଙ୍କ ପୃଷ୍ଠଭୂମିର ବିଭିନ୍ନତା ଦୃଷ୍ଟିରୁ ପ୍ରୟୋଗ କରାଯିବ । ଏ ସବୁଥିର ଅନମନୀୟତା (Rigidity) ହେତୁ ଉଦ୍ଦେଶ୍ୟ ସାଧିତ ହୋଇପାରୁ ନାହିଁ । ଶିକ୍ଷାୟତନ, ଶିକ୍ଷକ ଓ ଶିକ୍ଷାର୍ଥିଙ୍କ ସୃଜନାତ୍ମକ ବିକାଶ କରାଯାଇ ପାରୁନାହିଁ । କେଉଁଝର ଠାରୁ କୋରାପୁଟ ଯାଏଁ ଆଜି ସର୍ବତ୍ର ସମାନ ।

(୫) ଉଲ୍ଲିଖିତ ଶିକ୍ଷା-ଉଦ୍ଦେଶ୍ୟ ସହାୟକ ବିକଳ୍ପ ଉପାଦାନଗୁଡ଼ିକର ପ୍ରୟୋଗ ବିଭିନ୍ନ ଶିକ୍ଷାୟତନରେ ଶିକ୍ଷକ ଓ ଶିକ୍ଷକ-ସଂଗଠନ ଦ୍ୱାରା କରାଯାଇ ପାରିଲେ ରାଜ୍ୟ ଓ ରାଜ୍ୟାନ୍ତର ମଧ୍ୟରେ ସେସବୁର ଆଦାନ ପ୍ରଦାନ କରାଯାଇ ପାରିବ । ଶିକ୍ଷା ବିଭାଗ ନିଜର ସୀମିତ ସମ୍ବଳ ହେତୁ ଏହି ବିରାଟ କାର୍ଯ୍ୟ ସମ୍ଭାଳି ପାରିବେ ନାହିଁ । ବରଂ ଶିକ୍ଷକ ଓ ଶିକ୍ଷକ-ସଂଗଠନ ଉଦ୍ଦେଶ୍ୟ ଦ୍ୱାରା ସମୃଦ୍ଧ ହେବେ । ଏହା ଫଳରେ ଶିକ୍ଷକ ଓ ଶିକ୍ଷକ-ସଂଗଠନ କେବଳ ଦାବୀ ପତ୍ର ଉପସ୍ଥାପନର ଅନୁଷ୍ଠାନ ନ ହୋଇ ଶିକ୍ଷାର ଗୁଣାତ୍ମକ ବିକାଶର ସୁଦୃଢ଼ ସ୍ତମ୍ଭ ହୋଇ ପାରିବେ । ରାଜ୍ୟ ଓ ରାଜ୍ୟାନ୍ତରରେ ଏ ପ୍ରକାର ଆଦାନ ପ୍ରଦାନ ଦ୍ୱାରା ସହତି ଓ ସମ୍ପର୍କ ବୃଦ୍ଧି ପାଇବ ଓ ଶିକ୍ଷାର ମାନ ଉନ୍ନତ ହେବ । ଏହାହିଁ ହେଉଛି ନୂତନ ଶିକ୍ଷା ପଦ୍ଧତିର ଉଦ୍ଦେଶ୍ୟ ।

(୬) ଶିକ୍ଷାର ଉଦ୍ଦେଶ୍ୟକୁ, ଯେପରି ଗୋଟିଏ ଭଜନରେ କୁହାଯାଇଛି "ବାନା ଉପରେ ଅବନା" କରି ଛାଡ଼ିଦେଲେ ଚଳିବ ନାହିଁ । କିମ୍ବା ଏହାକୁ ସେହି ଫାଇଲ... ରକ୍ଷକଙ୍କ ଫାଇଲର ନାଲିଫିତାରେ ବାନ୍ଧି ଦିଆଯିବ ନାହିଁ । ଶିକ୍ଷାର୍ଥୀ ଓ ଅଭିଭାବକଙ୍କ ହାତ ପାହାନ୍ତିରେ ଏହା ରହିବ । ସେ ଦୃଷ୍ଟିରୁ ସଚେତନ ଶିକ୍ଷକ ଓ ଶିକ୍ଷକ-ସଂଗଠନ ବଳିଷ୍ଠ ଭୂମିକା ଗ୍ରହଣ କରିପାରିବେ । ଜାତୀୟ ଓ ସାମ୍ବିଧାନିକ ଲକ୍ଷ୍ୟ ଗୁଡ଼ିକୁ ଶିକ୍ଷାୟତନ ସ୍ତରରେ ବାସ୍ତବ ରୂପ ଦିଆଯିବ । ଏପରିକି ଅଭିଭାବକ, ଶିକ୍ଷକ ଓ ଶିକ୍ଷାର୍ଥୀ, ବିଶେଷ କରି ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ସହଯୋଗରେ ଲକ୍ଷ୍ୟ-ସ୍ଥିରୀକରଣର ଅଭ୍ୟୁଦୟ କରାଯାଇ ପାରିବ । ଶିକ୍ଷକ-ଅଭିଭାବକ ସମିତି ମଧ୍ୟ କାର୍ଯ୍ୟ କରିବ ।



# ମାନବିକ ମୂଲ୍ୟବୋଧ ପ୍ରତିଷ୍ଠାରେ ଶିକ୍ଷା ଓ ସମାଜ

ମାନବିକ ମୂଲ୍ୟବୋଧକୁ ପୁନଃ ପ୍ରତିଷ୍ଠିତ କରିବା ଦିଗରେ ଆଜିର ପ୍ରୟାସ ଏକ ନିଷ୍ଫଳ ଆସ୍ଫାଳନ ପରି ମନେ ହୁଏ । "ବୁଡ଼ିଗଲା ଲୋକର ଗୋଡ଼ ତଳକୁ ତଳକୁ ଖସିଗଲା" ପରି ହିଂସା, ଲୁଟତରାଜ, ଆକ୍ରମଣ ଓ ଅତ୍ୟାଚାର କ୍ରମେ କ୍ରମେ ସମାଜକୁ କବଳିତ କରି ପକାଇବା ରୀତିରେ ଆତ୍ମପ୍ରକାଶ କରୁଛି । ବିଶୃଙ୍ଖଳାର ବେଗବୃଦ୍ଧି ପାଇଛି । ସମ୍ମାନ, ସଂଯମ, ଶାନ୍ତି, ମୈତ୍ରୀ ଓ ପ୍ରେମ କେବଳ ଅଭିଧାନର ପୃଷ୍ଠା ମଣ୍ଡନ କରିଛି, ବସ୍ତୁତଃ ଆମ ଆଚରଣକୁ ସେସବୁ ମୂଲ୍ୟ ଯେ ନିୟନ୍ତ୍ରିତ କରୁଛି, ଏ ବିଷୟରେ ଘୋର ସନ୍ଦେହ ଆସୁଛି, କାରଣ ଅନେକାଂଶରେ ଆମ ଦୈନନ୍ଦିନ ଜୀବନ ଓ ଘଟଣାବଳୀ ଏ ସବୁ ମାନଦଣ୍ଡର ବ୍ୟତିକ୍ରମ ହୋଇ ରହୁଛି । ସୌଜନ୍ୟ, ସହିଷ୍ଣୁତା, ସତ୍ୟ, ସଦ୍‌ଭାବନା, ସଦାଚାର, ସାଧୁତା ଓ ସହଯୋଗ କେବଳ ଶବ୍ଦ ପର୍ଯ୍ୟାୟରେ ରହି ଯାଇଛି । କାର୍ଯ୍ୟତଃ ଏ ସବୁ ସଦ୍‌ଗୁଣ ଦୁର୍ବଳତା ଓ ଅସାମର୍ଥ୍ୟର ପରିଚାୟକ ହେବାରେ ଲାଗିଛି । ଏ ସବୁର ମୌଳିକ ଅର୍ଥ ପ୍ରଶ୍ନବାଚୀ ହୋଇଯାଉଛି । ସେ ଦିନର ଦରଦାମ୍ ଆଜିର ସ୍ୱପ୍ନ ଓ କଳ୍ପନାବିଳାସ ଯେପରି ହୋଇଛି, ଏ ସବୁ ସଦ୍‌ଗୁଣ ଯେ ଦିନେ ଆମ ଆଚରଣକୁ ଭୂଷିତ କରିଥିଲା, ଏହା ବିଶ୍ୱାସଯୋଗ୍ୟ ହେଉନାହିଁ । "ଅଧୀତବୋଧ ଆଚରଣ ପ୍ରଚାରଣୈଃ" ପରିବର୍ତ୍ତେ ଆଜି ବହୁ ପ୍ରଚାରକ କେବଳ ବାକ୍ୟବୀର, କିନ୍ତୁ ଆଚରଣସିଦ୍ଧ ନୁହଁନ୍ତି ଓ ହେବା ଆବଶ୍ୟକ ପଡୁନାହିଁ ।

ସମାଜ ପାଇଁ ଏପରି ଏକ ସମୟ ଆସୁଛି, ଯେତେବେଳେ ଯଦି ଆମେ ଏପରି ଚାଲୁ, ମୂଲ୍ୟବୋଧର ଅବକ୍ଷୟ ସଂପୂର୍ଣ୍ଣ ହୋଇଯିବ । ନ୍ୟାୟ, ନିଷ୍ଠା, ନିୟମ ଓ ନୀତି ଦିନେ ପୂରାପୂରି ମନମାନିଲା ହାଟ ସଉଦାରେ ପରିଣତ ହେବ । ତେବେ କିଏ ଆମକୁ ମୂଲ୍ୟ ଦେବ ? ଆମ ମାନ କେଉଁଠି ରହିବ ? ଆମେ କେଉଁ ମାନଦଣ୍ଡ ଦ୍ୱାରା ପରିଚାଳିତ ହେବା ? ଆମ ମର୍ଯ୍ୟାଦା ଓ ମହତ୍ତ୍ୱ ଆମେ ପାଇବା କି ? ଏହାହିଁ ମୂଲ୍ୟବୋଧ । ଏହାର ଅଭାବରେ ବା ଅବକ୍ଷୟରେ ହୁଏ ସମାଜର ସଙ୍କଟ । ଚରିତ୍ରରେ ସଙ୍କଟ । ଆମ ଆଗରେ ଆସିଯାଏ ଘଡ଼ିସନ୍ଧି ବେଳ । ସବୁ ଅନ୍ୟାୟ, ଅତ୍ୟାଚାର ଓ ଅନାଚାର ।

ବିଶୃଂଖଳା ଓ ତେଣୁ ବିଡମ୍ବନା । ସମୃଦ୍ଧି ପରିବର୍ତ୍ତେ ଆସିଯାଏ ଅଧୋଗତି । ସମ୍ପଦ ପରିବର୍ତ୍ତେ ବିପଦ । ବିଜୟ ପରିବର୍ତ୍ତେ ବିଲୟ । ଇଷ୍ଟ ପରିବର୍ତ୍ତେ ଅନିଷ୍ଟ । ପ୍ରକୃତରେ "ଇଷ୍ଟ" ପାଇଁ ଆମେ ପ୍ରାଣପାତ କରିପାରୁଁ । "ଜଗତ ଉଦ୍ଧାର" ଭୀମଭକ୍ତଙ୍କର ଥିଲା ଇଷ୍ଟ ଓ ମୂଲ୍ୟବୋଧ । ସେଥିପାଇଁ ସେ ନର୍କବାସ ପାଇଁ ପ୍ରସ୍ତୁତ ଥିଲେ । ଇଷ୍ଟ ହେଉଛି ଶ୍ରେୟ । "ସର୍ବଜନ ହିତେରତା" ଆମର ଇଷ୍ଟ, ତାହାହିଁ ଅନ୍ୟତମ ମୂଲ୍ୟବୋଧ ଓ ଜୀବନ ପାଇଁ ଯାହାର ପଟାନ୍ତର ନାହିଁ ।

ଏହି ସ୍ୱୀକୃତିସଙ୍କଟ ବିଷୟରେ ଅନେକେ ଉଦାସୀନ । ସେମାନେ ଏହାର ଗୁରୁତ୍ୱ ଉପଲବ୍ଧି କରନ୍ତି ନାହିଁ । କଙ୍କଡ଼ାକୁ ଗୋଳିପାଣି ସୁହାଇଲା ପରି ଅନେକ ଲୋକ ଏଥିରୁ ଫାଇଦା ଉଠାଇବାକୁ ପଛାନ୍ତି ନାହିଁ । ମଜା ଦେଖନ୍ତି, ହସନ୍ତି ଓ ବେଳେ ବେଳେ ଲାଭ ମାରି ନିଅନ୍ତି । ସମାଜର ସ୍ଥିତି, ଗତି ଓ ପ୍ରଗତି ବିଷୟରେ ଚିନ୍ତା ବି କରନ୍ତି ନାହିଁ । ସେମାନେ ନିଜେ ବଞ୍ଚିଥିଲେ ସେମାନଙ୍କ ବାପର ନାଁ ବୋଲି ବୁଝି ନିଅନ୍ତି । "ଏ ଜଗତ ଜନ ହତ ହୋଇଗଲେ କାହିଁ ପ୍ରଚରିବି ମୁହିଁ" ? "କନ୍ଧକବିଙ୍କର" ଏହି ପ୍ରଶ୍ନର ଉତ୍ତର ସେମାନଙ୍କୁ ଆସେ ନାହିଁ । ସମାଜରେ ବ୍ୟକ୍ତି ସାର୍ଥକ ଓ ବ୍ୟକ୍ତି ଯୋଗୁଁ ସମାଜ ସମୃଦ୍ଧ, ଏହି ପରିପ୍ରେକ୍ଷୀରେ ନିସ୍ୱାର୍ଥସେବା, ସ୍ୱାର୍ଥତ୍ୟାଗ, ସହାନୁଭୂତି ଓ ସହଯୋଗ ଏକାନ୍ତ ଶ୍ରେୟ ହୋଇପଡ଼େ । ବ୍ୟାଥାନୁଭୂତି, ପରଦୁଃଖକାତରତା, ଭ୍ରାତୃତ୍ୱ, ପ୍ରେମ ଆଦି ମୂଲ୍ୟ ଜୀବନକୁ ମହନୀୟ କରେ । ମନୁଷ୍ୟର ମର୍ଯ୍ୟାଦା ମନୁଷ୍ୟ ଲାଭ କରେ ।

ମୂଲ୍ୟବୋଧର କ୍ଷୟିଷ୍ଣୁ ଅବନତି ଓ ଅଧୋଗତିରେ ଅନେକ ଲୋକ ଅଧୀର ହୋଇ ପଡ଼ନ୍ତି । କ୍ଷୟ, ଧ୍ୱଂସ ଓ ମୃତ୍ୟୁ ଯେ ଆସନ୍ନ, ଏଥିରେ ସେମାନେ ଆକୁଳ ଓ ବିକଳ ହୁଅନ୍ତି । ମାତ୍ର କର୍ତ୍ତବ୍ୟ କରିପାରନ୍ତି ନାହିଁ । ଅତି ଦ୍ରୁତଗତିରେ ନିଆଁରେ ପୋଡ଼ି ପାଉଁଶ ହେଉଥିବା ଘରକୁ ଦେଖି ନିଷ୍କ୍ରିୟ ସାକ୍ଷୀ ହେବାର ଅବସ୍ଥା ସଙ୍ଗେ ଏହା ସମାନ । ଏମାନଙ୍କ ମଧ୍ୟରୁ ଅନେକ ଲୋକ ମଧ୍ୟ ପାଣିରେ ବୁଡ଼ିଯାଉଥିବା ଲୋକକୁ ଦେଖି ଅନ୍ୟମାନଙ୍କୁ "ଉଠାଅ, ଉଠାଅ" ବୋଲି ଉଦ୍‌ବୋଧନ ଦେବାର ଦେଖା ଯାଇଥାଏ । କର୍ତ୍ତବ୍ୟ—ନିଷ୍ଠାର ମୂଲ୍ୟବୋଧ ଦ୍ୱାରା ଅନୁପ୍ରାଣିତ ହୋଇ ସ୍ୱକର୍ତ୍ତବ୍ୟ ଯଥା ସମୟରେ ସାଧନ କରିବାର ଦେଖାଯାଏ ନାହିଁ । ଆହୁରି ଅନ୍ୟ ଏକ ଶ୍ରେଣୀର ଲୋକ ଅଛନ୍ତି, ଯେଉଁମାନେ କେବଳ ଅଶ୍ରୁତ୍ୟାଗ କରନ୍ତି । ସେମାନଙ୍କ ଅଶ୍ରୁବିସର୍ଜନ କୁମ୍ଭୀର କାନ୍ଦଣା

ସଙ୍ଗେ ସମାନ । ସେଥିରେ ଆନ୍ତରିକତା ନ ଥାଏ । ବାହାରକୁ ସମାଜ ସେବାର ଧ୍ୱଜା ଉଡ଼ାଇ ଦେଖାଣିଆ ସମାଜ ସେବକର ଭୂମିକା ସେମାନେ ଗ୍ରହଣ କରନ୍ତି । ସେବାର ମହତ୍ ଓ ଆନନ୍ଦ କେବଳ ସେବକଙ୍କର ଅନୁଭବ, ଅନ୍ୟର ନୁହେଁ । ସେଥିପାଇଁ ଢୋଲ ବାଡେଇବା, ପ୍ରାଚୀର ପତ୍ର ମାରିବା ଓ ସ୍ୱୀକୃତି ଖୋଜିବା ନ ଥାଏ । ତେଣୁ ଏପରି କୃତ୍ରିମ ବ୍ୟଥାନୁଭୂତି ଦ୍ୱାରା ଅଧୋଗତି ପରିବର୍ତ୍ତେ ଊର୍ଦ୍ଧ୍ୱଗତି ହେବାର ଆଶା କରଯାଏ ନାହିଁ । ବରଂ ଅବନତିର ବେଗ କ୍ଷିପ୍ରତର ହୋଇପଡେ ।

ତେବେ, ବର୍ତ୍ତମାନ ବିଚାର କରିବା ଏହି ଅଧୋଗତିର କାରଣ କଅଣ ? ସାମାଜିକ ସମସ୍ୟାର ଗୋଟିଏ ନିର୍ଦ୍ଦିଷ୍ଟ କାରଣକୁ ଚିହ୍ନଟ କରିବା ସହଜ ନୁହେଁ । ଏହା ଏକ ଜଟିଳ ପ୍ରକ୍ରିୟା ଓ ଏଥିପାଇଁ ଏକାଧିକ ପରିସ୍ଥିତି ବା ଉପାଦାନ ଇନ୍ଧନ ଯୋଗାଇଥାଏ । ପୁଣି ସେଥିରେ କାର୍ଯ୍ୟ ଓ କାରଣ କୁଟିଳ ଚକ୍ରରେ କାର୍ଯ୍ୟ କରେ । ଏହା ଅବଶ୍ୟ ଅଧ୍ୟୟନର କଥା ହେଲେହେଁ ସାଧାରଣତଃ ଅନୁଭବ କରଯାଏ ଯେ ଆମ ଗ୍ରାମ୍ୟ ଜୀବନ ଏଯାଏଁ ଆଲୋଚ୍ୟ ଅମୂଲ୍ୟ ମୂଲ୍ୟବୋଧର ଗନ୍ତାଘର ହୋଇ ରହିଛି । କିନ୍ତୁ ଏ ପ୍ରସଙ୍ଗକ୍ରମେ କୁହାଯାଏ ଯେ ଦାରିଦ୍ର୍ୟ ଗ୍ରାମ୍ୟ-ଜୀବନରୁ ସହରକୁ ସିନା ରପ୍ତାନୀ କରଯାଏ । ଏଥିସହିତ ଆମଦାନୀ ମଧ୍ୟ ସଂଶ୍ଳିଷ୍ଟ ଓ ସେ ଆମଦାନୀ ହେଉଛି ସହରାଞ୍ଚଳର ଦୁଃସ୍ଥିତି । ଚରିତ୍ରହୀନତା, କଦାଚାର, ଘୁଷଚକ୍ୟ, ନୀତିହୀନତା ଆଦି ଆବର୍ଜନା ଗ୍ରାମ୍ୟଜୀବନରେ ଅନୁପ୍ରବେଶ କରେ । ଅର୍ଥନୈତିକ ଯୋଜନାର ଧ୍ୟାନ ସହରାଞ୍ଚଳ ଉପରେ ଅଧିକରୁ ଅଧିକ ଢ଼ାଳି ହେଉଥିଲେ ହେଁ ସମୁଚିତ ଓ ସ୍ୱକୀୟ ଆଦର୍ଶର ଅଭାବ ହେତୁରୁ ସହରସବୁ ବିଦେଶାଗତ ପୋତାଶ୍ରୟରେ ଭର୍ତ୍ତି ହୋଇଯାଏ । ଏହାର କାରଣ ହେଉଛି ଅନ୍ଧାନୁକରଣ । "ଜ୍ଞାନ କିପରି" (know how) କୁ ଝାଡ଼ିଝୁଡ଼ି ଆମେ ଆଣୁନାହିଁ । "ଜ୍ଞାନ କାହିଁକି" (know why) ଓ "ଜ୍ଞାନ କାହାର" (know who) ସଙ୍ଗେ ମିଶାଇ ପାରୁନାହିଁ । ସହରୀକରଣ ନାମରେ ଏହା ହୁଏ ଏକ ଅଖାଦ୍ୟ ଖିଚିଡ଼ି । ଫଳରେ ପରିବାର ଭାଙ୍ଗିପଡ଼େ, ସମ୍ପର୍କ ନିର୍ବୈୟକ୍ତିକ ହୋଇଯାଏ ଓ ଜୀବନ ନିଃସଙ୍ଗ ହୁଏ । ଆଧୁନିକୀକରଣର ମଶାଲ ଆଡକୁ ଆକୃଷ୍ଟ ହୋଇ ଆମ ମୂଲ୍ୟଗୁଡ଼ିକ ଜଳିପୋଡ଼ି ପାଉଁଶ ହୋଇଯାଏ । ବସ୍ତୁତଃ ଆଧୁନିକୀକରଣ ଏକ ସଫଳ ସୋପାନରେ ଆଗେଇ ଚାଲିବା ପାଇଁ ଏହା ଆମ ଆଧ୍ୟାତ୍ମିକ ଓ ସାମାଜିକ ମୂଲ୍ୟବୋଧରୁ ଶକ୍ତି ଗ୍ରହଣ କରିବା ଉଚିତ । ଏହା ବଦଳରେ ଆମେ ପଇସା-ସର୍ବସ୍ୱ ହୋଇପଡୁଛୁ । ତଦ୍ୱାରା ଆମ ଶିକ୍ଷା, ସଂସ୍କୃତି, ସମ୍ପର୍କ ଓ ସର୍ବବିଧ

ଯୋଜନା ଏକ ପ୍ରହସନରେ ପରିଣତ ହେଉଅଛି । ଆମ ଧର୍ମ ଓ ଧର୍ମାଗ୍ରର ଏଥିରୁ ବାଦ ପଡୁନାହିଁ । ନିଷ୍କାମ ଧର୍ମ ଓ ନିଷ୍କାମ କର୍ମର ପରଂପରା ଦୁର୍ବଳ ହୋଇପଡୁଛି । ହୋଟେଲ ଖିଆ, ସିନେମାଦେଖା ଓ ବାରବୁଲା ଛଟଗମି ସହିତ ଆନୁଷଙ୍ଗିକ ଆଗ୍ରର ଓ ବିଗ୍ରର ଆମକୁ ନିଃସ୍ୱ କରି ପକାଉଛି । ଆଦର୍ଶ କାହିଁର ଉତ୍ତର ମାତ୍ର ଅଭିଧାନରେ, ଜୀବନରେ କ୍ୱଚିତ୍ । ତଳିପାରୁ ତାଳୁ ପର୍ଯ୍ୟନ୍ତ ସମାଜର ସର୍ବତ୍ର 'ତେନ ତ୍ୟକ୍ତେନ ଭୁଞ୍ଜିଥା'ର ଅନୁସରଣ ନାହିଁ । ଅଛି ଭୋଗ, ବିଳାସ, ଆସକ୍ତି, ପ୍ରବୃତ୍ତି, କାମନା ଓ ଲାଳସା । ପ୍ରବୃତ୍ତି ଓ ନିବୃତ୍ତି ମଧ୍ୟରୁ କେଉଁଟିକୁ ବରଣ କରିବା ଏହି ଶିକ୍ଷା ନାହିଁ. ଲାଳନପାଳନର ଗୁରୁତ୍ୱ ନାହିଁ କିମ୍ବା ଅନୁସୃତ ଆଦର୍ଶ ନାହିଁ । ଯେଉଁମାନେ ଆଦର୍ଶର ଅଧିକାରୀ ହେବାକୁ ଶପଥ ନିଅନ୍ତି ସେମାନଙ୍କ ହୃଦୟରେ ଆଦର୍ଶ ଓ ଆଗ୍ରରନିଷ୍ଠାର ଅଭ୍ୟାସ ନଥାଏ କିମ୍ବା ଋଷ୍ଟ ଜାଗ୍ରତ ନଥାଏ । ବରଂ ସେମାନେ ଅନ୍ତରରେ କଦାଗ୍ରର, ବ୍ୟଭିଗ୍ରର, କୁତ୍ସିତତା ଓ କଳଙ୍କ ଢାଙ୍କୁଣି ଦେଇ ସାଇତି ରଖନ୍ତି ଓ ଲୋକ ଦେଖାଣିଆକୁ ସଦାଗ୍ରର, ଚରିତ୍ରନିଷ୍ଠା, ସୌନ୍ଦର୍ଯ୍ୟ ଓ ପବିତ୍ରତାର ବେଶ ପକାଇ ପର୍ଦାକୁ ବାହାରି ପଡ଼ନ୍ତି ଓ ତେଲ ସମଭିବ୍ୟାବହାରରେ ଯାତ୍ରା କରନ୍ତି । କ୍ଷମତାର କଳା ଥିବା ପର୍ଯ୍ୟନ୍ତ ସେମାନଙ୍କୁ ହାତବାଗିସି କରିଥାନ୍ତି । ସେପରି ସ୍ଥଳରେ ମୂଲ୍ୟବୋଧର ମୂଳରେ କୁଠାରଘାତ କରାଯାଏ । ଏହି ଜଟିଳ ପରିସ୍ଥିତିର ଅନ୍ୟ ଏକ ଦିଗ ହେଉଛି ସାମାଜିକ ପରିବର୍ତ୍ତନ । ସମାଜର ପରିବର୍ତ୍ତନ ଏକ ସ୍ୱାଭାବିକ ପ୍ରକ୍ରିୟା । ବିଶେଷକରି ଏକ ପରାଧୀନ ସମାଜ ଅହିଂସ ବିପ୍ଳବ ଦ୍ୱାରା ଶୃଙ୍ଖଳ ମୁକ୍ତ ହେବା ଫଳରେ ଏହାର ଆଶା, ଆକାଂକ୍ଷା ଓ ଅଭିଳାଷର ବିସ୍ଫୋରଣ ଘଟିଛି । ଏଥିରେ ମୂଲ୍ୟବୋଧ ଦଳାଚକଟା ହୋଇ ଚୂରମାର ହେଉଛି । ସାମାଜିକ ସମ୍ଭାବନାର ସମ୍ପୂର୍ଣ୍ଣ ଅଭିବ୍ୟକ୍ତି ପାଇଁ ବିଜ୍ଞାନ ଓ କାରିଗରି ବିଦ୍ୟାର ବ୍ୟବହାର ଅନିବାର୍ଯ୍ୟ ହୋଇପଡ଼ିଛି । ଏହାଦ୍ୱାରା କେତେକ ତଥାକଥିତ ମୂଲ୍ୟବୋଧ ଅପ୍ରାସଙ୍ଗିକ ଓ ଅଚଳନ୍ତି ହେଉଛି । ଏସବୁକୁ ଆମେ ଛାଡ଼ିପାରୁନାହିଁ । ପକ୍ଷାନ୍ତରରେ ଜଡ଼ବାଦର ଜଡ଼ତା ହେତୁ ଆମ ଚିରନ୍ତନ ମୂଲ୍ୟବୋଧଗୁଡ଼ିକ କ୍ରମେ ଶକ୍ତିହୀନ ହୋଇ ପଡୁଛି । ପୁନଶ୍ଚ ବୈଜ୍ଞାନିକ ମାନବବାଦ (Scientific humanism) ଭଳି ମୂଲ୍ୟବୋଧ ଆମ ସମାଜରେ ଚେର ଭିଡ଼ି ପାରୁନାହିଁ ।

ଏହି ବିଶ୍ଳେଷଣକୁ ସୁବିସ୍ତୃତ କରାଯାଇ ପାରେ । ମାତ୍ର ଏହି ସଂକ୍ଷିପ୍ତ ଆଲୋଚନାରୁ ଓ ଆମ୍ଭମାନଙ୍କ ଦୈନନ୍ଦିନ ଅନୁଭବରୁ ଏହା ନିଶ୍ଚିତ ହୁଏ ଯେ ଏହା ଆମ ଜୀବନ ସଙ୍କଟ । ଜୀବନ–ମୃତ୍ୟୁର ସମସ୍ୟା । ବିକାଶ-ବିନାଶର ପ୍ରଶ୍ନ । ତେଣୁ ତୁରନ୍ତ

ପଦକ୍ଷେପ ନେବାକୁ ପଡ଼ିବ । ଏହା ସମଗ୍ର ଓ ସର୍ବବ୍ୟାପକ ହେବା ଉଚିତ । ଜୀବନ-ବିକାଶ-ଯୋଜନା ହେବା ଦରକାର ଓ ଏସବୁ ମୂଲ୍ୟବୋଧ ଆଧାରିତ ହେବା ଉଚିତ । ତେଣୁ ଏହା ହେବ "ଭାରତରେ ମାନବୀୟ ବିକାଶ" । ଜୀବନର ବିଭିନ୍ନ ବିଭାବରେ ଓ ଗଠନମୂଳକ କାର୍ଯ୍ୟକ୍ରମରେ ମାନବଜୀବନର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ସବୁ ପର୍ଯ୍ୟାୟକୁ ମୂଲ୍ୟବୋଧ–ଭିତ୍ତିକ କରାଯିବା ଉଚିତ । ସାମାଜିକ ପ୍ରଗତି ସହିତ ଆଧ୍ୟାତ୍ମିକ ପ୍ରଗତିର ସମନ୍ୱୟ କରାଇବାକୁ ପଡ଼ିବ । ଏହି ଦୁଇ ମଧ୍ୟରେ ଦିନକୁ ଦିନ ବୃଦ୍ଧି ପାଉଥିବା ବ୍ୟବଧାନ ଆମ ଚରିତ୍ର ସଙ୍କଟର ଅନ୍ୟତମ କାରଣ । ତେଣୁ ବ୍ୟବଧାନ ପୂରିବାର ସୁଯୋଗ ସୃଷ୍ଟି କରିବାକୁ ହେବ । ଆମ ଯୋଜନାରେ ବ୍ୟୟବରାଦ କରୁଛୁ । ବ୍ୟୟର ଅଟକଳକୁ ବ୍ୟୟରେ ଦେଖାଇବା ଆମର ଲକ୍ଷ୍ୟ ହେଉଛି । କର୍ମନିଯୁକ୍ତିର ସଂଖ୍ୟା ସ୍ଥିର କରୁଛୁ । କାର୍ଯ୍ୟଦିବସର ସୂଚୀକୁ ଆଖି ଆଗରେ ରଖୁଛୁ । କିନ୍ତୁ ମାନବିକ ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ବିକାଶ ଓ ପ୍ରତିଷ୍ଠା କାହିଁ ? ଜୀବନରେ ଆଚରଣ ନିଷ୍ଠା ସୃଷ୍ଟି କରାଯାଉଛି କି ? ଚିରନ୍ତନ ମୂଲ୍ୟବୋଧକୁ ଅଧୁନା ତଥା ଭବିଷ୍ୟତର ଆବଶ୍ୟକତାରେ ଶାଣିତ କରିପାରିଛୁ କି ? ସ୍ୱାମୀ ବିବେକାନନ୍ଦଙ୍କ ମର୍ମସ୍ପର୍ଶୀ ଉଦ୍‌ବୋଧନହିଁ ଏସବୁ ପ୍ରଶ୍ନର ଉତ୍ତର, "ନୂତନ ଭାରତ ଜାଗିଉଠୁ । ଲଙ୍ଗଳ ଧରି ଚାଷୀର କୁଟୀର ଭେଦକରି, କେଉଟ, ମାଛି, ମୋଚି, ମେହେନ୍ତରର କୁଡ଼ିଆ ମଧ୍ୟରୁ.....ତେଲଭଜି ଦୋକାନରୁ, ଚେନାଚୁର ବାଲାର ଚୁଲି ପାଖରୁ.....,  କାରଖାନାରୁ, ହାଟରୁ, ବଜାରରୁ..... ଝାଡ଼, ଜଙ୍ଗଲ, ପାହାଡ଼, ପର୍ବତରୁ ଜାଗିଉଠୁ ।" ଏଠିରୁ ପରିବାର, ପାଠଶାଳା, ଜନପଦ, ପ୍ରାନ୍ତର, ସାମାଜିକ ସମ୍ପର୍କ ଆଦି ବାଦ ପଡ଼ିବ ନାହିଁ । ବରଂ ମୂଲ୍ୟବୋଧର ପୁନଃ ପ୍ରତିଷ୍ଠା ଦିଗରେ ଏ ସବୁର ମୌଳିକ ଓ ମର୍ଯ୍ୟାଦାପୂର୍ଣ୍ଣ ଭୂମିକା ରହିଛି । ଯେଉଁଠି ଜୀବନ ଫୁଟିଛି, ସେଠି ମୂଲ୍ୟବୋଧର ଜ୍ୟୋତି ପ୍ରକାଶିତ ହେବା ଉଚିତ ।

ପ୍ରକୃତତଃ ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ଏହି ଦୁଇବିଧ ଶିକ୍ଷାର ଲକ୍ଷ୍ୟ ମୂଲ୍ୟବୋଧର ମାନକୁ ଜ୍ୟୋତିରୂପେ ଗ୍ରହଣ କରିବା ଉଚିତ । ଆନୁଷ୍ଠାନିକ ଶିକ୍ଷାର ବିଶେଷ ଦାୟିତ୍ୱ ଅଛି । ସବୁ ସ୍ତରର ଶିକ୍ଷା ଏଥିପାଇଁ ସମ୍ମିଳିତ ସ୍ୱର ଉତ୍ତୋଳନ କରିବା ଉଚିତ । ଉଦ୍ଦେଶ୍ୟ, ଉପାୟ, ପାଠ୍ୟତାଲିକା, ପାଠ୍ୟପୁସ୍ତକ ଓ ପରୀକ୍ଷା ପଦ୍ଧତି-ଏହି ସବୁରେ ମୂଲ୍ୟବୋଧର ସୁରକ୍ଷା ଓ ଅଭିବୃଦ୍ଧି ପ୍ରତିଫଳିତ ହେବା ଆବଶ୍ୟକ । ସମାଜ ଓ ବ୍ୟକ୍ତିର ପ୍ରାଣକେନ୍ଦ୍ର ହେବ ମାନବିକ ମୂଲ୍ୟବୋଧ । ନୈତିକ ଅଧୋଗତିରୁ ଦେଶ ଓ ବ୍ୟକ୍ତିକୁ ରକ୍ଷାକରି ଉଭୟର ନୈତିକମାନକୁ ଉଚ୍ଚରୁ ଉଚ୍ଚତର କରିବା ଶିକ୍ଷାର

ଲକ୍ଷ୍ୟ ହେବା ଉଚିତ । ମାନବିକ ମୂଲ୍ୟବୋଧ ଅଭିମୁଖୀ ବ୍ୟକ୍ତିତ୍ୱର ଗଠନ ଓ ଏହା ଉପରେ ଆଧାରିତ ସମାଜର ରଚନା ହେବ ଶିକ୍ଷାର ଉଦ୍ଦେଶ୍ୟ । ଏଠାରେ ଏତିକି ସ୍ମରଣ କରିବା କଥା ଯେ ଶିକ୍ଷାୟତନ ସହିତ ସମାଜର ଅନ୍ୟାନ୍ୟ ଅନୁଷ୍ଠାନ ଓ କାର୍ଯ୍ୟକ୍ରମ ଏହି ଜଟିଳ ସମସ୍ୟାର ସମାଧାନ ପାଇଁ ସହଯୋଗ କରିବା ଉଚିତ । ସମାଜର ରଚନା ଦିଗରେ କ୍ଷମତାର ଭିତ୍ତିକୁ ପରିତ୍ୟାଗ କରି ଲୋକଶକ୍ତିର ବିକାଶ ଦିଗରେ ଧ୍ୟାନ ରହିବା ଦରକାର ।

ଯେ କୌଣସି ସ୍ତରରେ ହେଉ ପଛକେ, ଉଦାହରଣ ଓ ସଦ୍‌ଗୁଣର ପ୍ରସାର ଏ ଦିଗରେ ଏକାନ୍ତ ଆବଶ୍ୟକ । ଆଦର୍ଶ ପାଇଁ ହାହାକାର ନକରି ଏହା ମୂର୍ତ୍ତିମନ୍ତ ହେବ । ମୂଲ୍ୟବୋଧଭିତ୍ତିକ କାର୍ଯ୍ୟକ୍ରମରେ ଅଭିଜ୍ଞତା ଅର୍ଜନ କରିବା ପାଇଁ ସୁଯୋଗ ମିଳିବା ଉଚିତ । ସମସ୍ତେ ସେଥିରେ ଯେପରି ଅଂଶଗ୍ରହଣ କରିପାରିବେ ସେଥିପାଇଁ ବ୍ୟବସ୍ଥା ରହିବ । ମହାପୁରୁଷମାନଙ୍କ ଜୀବନୀରୁ ଓ ଆଚରଣ-ନିଷ୍ଠ ବ୍ୟକ୍ତିମାନଙ୍କଠାରୁ ସୂଚନା ମିଳିବା ଉଚିତ । ଆବଶ୍ୟକ ସାମାଜିକ ଜଳବାୟୁ ଏ ଦିଗରେ ସୃଷ୍ଟି କରାଯିବ ।

ଏହି ସମସ୍ୟାର ଗୁରୁତ୍ୱ ଦୃଷ୍ଟିରୁ ପ୍ରତ୍ୟେକ ବ୍ୟକ୍ତି ଓ ଅନୁଷ୍ଠାନ ସ୍ୱ ସ୍ୱ କର୍ତ୍ତବ୍ୟ ସ୍ଥିର କରିବା ଉଚିତ । ଚରିତ୍ର-ନିର୍ମାଣ ଓ ମାନବିକ ମୂଲ୍ୟବୋଧ ପରସ୍ପର ସମ୍ପୃକ୍ତ । ଏହାର ଉପଲବ୍‌ଧି ପାଇଁ ପ୍ରତ୍ୟେକ ମନୁଷ୍ୟକୁ ନିଜ ଆତ୍ମାନୁଶୀଳନ ପାଇଁ ସୁଯୋଗ ଦେବା ଉଚିତ । ତଦନୁସାରେ ତା'ର ବିକାଶ କରାଯିବା ଆବଶ୍ୟକ । ସେଥିରେ ହସ୍ତକ୍ଷେପ କରିବା ଅନୁଚିତ ।



# ଶିକ୍ଷା-ଏକ ଗଣଆନ୍ଦୋଳନ

ଏହା ଏ ଯାଏଁ ହୋଇନାହିଁ । ପ୍ରତିଦିନ ପ୍ରତ୍ୟେକର ଅନୁଭୂତିରେ ଏହା ଆସୁନାହିଁ । ସବୁଠି ସମସ୍ତେ ଏହାକୁ କରୁନାହାନ୍ତି । ବ୍ୟକ୍ତି ତଥା ସମାଜର ସବୁ ସଂସ୍ଥା ଏବଂ ସମସ୍ତ କାର୍ଯ୍ୟକଳାପ ଏହି ଲକ୍ଷ୍ୟରେ ଚାଲୁନାହିଁ । ଆମର ସମସ୍ତ ଆଚାର ଓ ବିଚାରରେ ଏହା ସ୍ଥାନ ପାଇନାହିଁ ।

ତେଣୁ ଏବେ ଆମେ କରୁଛୁ କଅଣ ? ଶିକ୍ଷାୟତନରେ ପିଲାଙ୍କ ନାମ ଲେଖାଇଦେଲେ ଆମ କାମ ଶେଷ ହେଉଛି । ଏଠୁ ବେଶୀହେଲେ, ଦରକାର ଅନୁସାରେ ବହିପତ୍ର କିଣି ଦେଉଛୁ । ଦରମା, ଚାନ୍ଦା ବି ଦେଉଛୁ । ଲୁଗାପଟା ଯୋଗାଇ ଦେଉଛୁ । ବାସ୍ ସେତିକିରେ ଶେଷ । ଏସବୁ ଭଲକଥା ଓ ଠିକ୍ ବେଳାବେଳି ଓ ଆବଶ୍ୟକତା ଅନୁସାରେ କରାଗଲେ ଆହୁରି ଭଲ ହୁଅନ୍ତା । ସବୁଠାରୁ ଭଲ ହୁଅନ୍ତା, ଯଦି ଆମେ ବୁଝନ୍ତୁ, ଯାହା ସବୁ ଦେଉଛୁ ଓ କରୁଛୁ ଏହାର ଫଳ କଅଣ ହେଉଛି ? ବହିପତ୍ର, ଲୁଗାପଟା, ଚାନ୍ଦାଭେଦା—ଏସବୁ ପାଠ ନୁହେଁ, କିମ୍ବା ପାଠ ପଢ଼େ ନାହିଁ । ଯାହାକୁ ବା ଯାହାପାଇଁ ଦିଆଯାଏ, ସେ ପଢ଼େ । ଖାଲି ପଢ଼ିବା ଉଦ୍ଦେଶ୍ୟ ନୁହେଁ, ପଢ଼ି ମଣିଷ ହେବା ହେଉଛି ଉଦ୍ଦେଶ୍ୟ । କେବଳ ମଣିଷ ହେଲେ ଚଳିବ ନାହିଁ । ଆମ ସମାଜର ମନୁଷ୍ୟ ହେବାକୁ ପଡ଼ିବ । ଏହି ସମାଜ ନୁହେଁ, ଅତୀତର ନୁହେଁ, ଆଗାମୀ ସମାଜର ମନୁଷ୍ୟ ହେବା ଦରକାର । ଛୋଟ ସମାଜ ନୁହେଁ, ବିଶ୍ୱସମାଜର ମନୁଷ୍ୟ ହେବା ଉଚିତ ।

ପାଠଶାଳା, ବିଦ୍ୟାଳୟ, କଲେଜ, ବିଶ୍ୱବିଦ୍ୟାଳୟ ଆଦି କରିଦେଲେ କାମ ଶେଷ ହେଉଛି । ଘରହେଲା, ଉପକରଣ କିଣାଗଲା, ଶିକ୍ଷକ ରହିଲେ, ଘଣ୍ଟା ବାଜିଲା, ପଢ଼ା ହେଉଛିକି ? କଷ୍ଟେ ମଷ୍ଟେ ପାଠାଗାରରେ ପାଠ ବହି ରହିଲା, କିନ୍ତୁ ବହି ଖୋଲା ଗଲାକି ? ହଉ, ବହି ପଢ଼ାଯାଉ । କିନ୍ତୁ ପାଠ କାହିଁ ? ପଢ଼ି ପଢ଼ି ପାଠ ନାହିଁ । ଖାଲି ପଢ଼ିବା ନାଁରେ ପାଠଶାଳା । ପାଠ କେବଳ ବହିରେ ଓ ବହିରେ ହୋଇରହୁଛି । ଆମ ଜୀବନରେ ପାଠ ନାହିଁ । ଜୀବନକୁ ପାଠ ଡେଇଁ ଆସୁନାହିଁ । ଜୀବନତମାମ ପଢ଼ା

ଯାଉନାହିଁ । ଜୀବନକୁ ପାଠ ଛୁଉଁ ନାହିଁ । ପାଠର ଚେର ଆମ ଜୀବନକୁ ଭେଦୁ ନାହିଁ । ଜୀବନର ସବୁ ସ୍ତରରେ ସମସ୍ତେ ପାଠ ପଢୁନାହାନ୍ତି । ପାଠର ମାପକାଠିରେ ଜୀବନର ସବୁ କାମ ମପା ଯାଉନାହିଁ ।

ପାଠଶାଳାରେ ପାଠ ଅଟକି ଯାଉଛି । ଯେଉଁଠି ପୁସ୍ତକ, ପାଠଶାଳା, ସେଇଠି ପାଠରେ ଡୋର ବନ୍ଧା ହୋଇ ରହୁଛି । ପାଠର ହାଣ୍ଡି ସେଠାରେ ଥୁଆ । ଭଲ ଢାଙ୍କୁଣି ଦିଆଯାଉଛି । ଆନ୍ଦୁଲ ହାଣ୍ଡିରେ ଢାଙ୍କୁଣି ଥାଏ । କନା ବନ୍ଧା ଯାଇଥାଏ । କେବଳ ନାଁଟା ମନରେ ପଡ଼ିଗଲେ, ଲାଳ ଗଡ଼ିପଡ଼େ । କିନ୍ତୁ ସେପରି କାମରେ ପାଠ ହୁଏ କି ? ପାଠରେ ଜୀବନ ରସାଣିତ ହୁଏ ନାହିଁ । ମନକୁ ପାଠ ଛଟପଟ କରେ ନାହିଁ । ମନ ଡେଇଁଯାଏ ନାହିଁ । ପାଠର ସୁଅ ଜୀବନରେ ଛୁଟିଯାଏ ନାହିଁ । ଥକା ମନ ପାଠ ଲାଗି ଅଥୟ ହୁଏନାହିଁ । ଅନବରତ ଗ୍ଭଲେନାହିଁ ।

ଇଟା, କାଠ, ପଟା, ମାଟି ଓ କାଛ—ଏସବୁ ପାଠକୁ ଜାବୁଡ଼ି ଧରିଚଖେ । ଏତେ ଖର୍ଚ୍ଚରେ ପାଠଘର ପାଠ ପାଇଁ ତିଆରି ହେଲା । ଏସବୁ କଅଣ କଲା ? ପାଠ ବାହାରକୁ ଗଲାନାହିଁ । ତା' ଭିତରେ ଶିକ୍ଷକ ରହିଲେ, ତାଙ୍କୁ ଟ୍ରେନିଂ ଦିଆଗଲା । ଶିକ୍ଷକଙ୍କୁ ବାଛି ଅଣାଗଲା । ପଇସା ଖର୍ଚ୍ଚ କରଗଲା । ସେ କୋଠାଘରେ ପାଠର କୋଠା କରିଦେଲେ । ଗ୍ଭବି ଖୋଲିଲେ, ଘଣ୍ଟା ବାଜିଲେ ପାଠ ଆରମ୍ଭ ହେଉଛି । ତାଲା ପକାଇ ଦେଲେ ପାଠ ସରୁଛି, ଧାନ ପାଚୁଛି, ବଢ଼ି ଆସୁଛି, କାମ ଗ୍ଭଲିଛି, ଘର ପୋଡ଼ିଯାଉଛି, ଗାଈ ଚରୁଛି, ବାଗୁଡ଼ି ଖେଳ ଗ୍ଭଲିଛି, ନାଟ ତାମସା ହେଉଛି, କାମଧନ୍ଦା ଗ୍ଭଲିଛି, ଇତ୍ୟାଦି— ଏ ସବୁ କ'ଣ ପାଠ ନୁହେଁ ?

କେବଳ ସ୍କୁଲ କଲେଜରେ ପଢ଼ିଲେ ପାଠ ହୁଏ । ପାଠୁଆ ସିଏ, ଯିଏ ନାଁ ଲେଖାଇଛନ୍ତି । ନାଁ କଟିଗଲେ ପାଠରେ ଡୋରି ବନ୍ଧାହୁଏ । ଆଉ ପାଠ ନାହିଁ । ପାଠ ସରିଯାଏ । Number, gender, person, case; ଘଣ୍ଟା ବାଜିଲା ପାଠ ଶେଷ । ଏହା ହେବ କିପରି ? ପାଠ ପରା ଅସରନ୍ତି । ପିଲାଠାରୁ ବୁଢ଼ାଯାଏ ସମସ୍ତଙ୍କର ପାଠ ଓ ସମସ୍ତଙ୍କପାଇଁ ସବୁ ବୟସରେ ପାଠ ଦରକାର । ଗାଈଜଗା, ଧାନକଟା, ରନ୍ଧାରନ୍ଧି, ଲୁଗାକଗ୍ଭ, ପରିଷ୍କାରତୋଳା, ଇତ୍ୟାଦି, ସବୁଥିପାଇଁ ପାଠ । ସମସ୍ତଙ୍କପାଇଁ ପାଠ । ସମସ୍ତେ ପାଠୁଆ ହୋଇ ପାରିବେ ।

ସମସ୍ତେ ଶିଖାଇବେ ଓ ଶିଖିବେ । ସେଠି ବର୍ଣ୍ଣ, ଜାତି, ଧନ, ଜାତି, ପୁଅଝିଅ, ବୁଢା ଟୋକା ଗାଁ ସହର ଆଦିର ଭେଦ ନାହିଁ । ଖାଲି ଶିକ୍ଷାୟତନରେ ପାଠ ଖୁନ୍ଦା ହୋଇଛି-ଏହା ଭାବିବାର ନୁହେଁ । ବଣରେ, ବିଲରେ, ଖେତ-ଖମାରରେ, ସାହୀପଡ଼ଶା ସମ୍ପର୍କରେ, କଥା ଶୁଣିବାରେ ଓ କହିବାରେ, ଗଲେ ଆସିଲେ ପାଠ ରହିଛି । ହାଟ, ଘାଟ, ନାଟ, ପାଟ—ଏ ସବୁରେ ବି ପାଠ । ଯଦି ପାଠପଢ଼ାର ଅସଲ ଉଦ୍ଦେଶ୍ୟ ହେଲା—ବ୍ୟକ୍ତିଗତ ଅଧ୍ୟୟନ, ଆତ୍ମ-ଅଧ୍ୟାପନ, ଆତ୍ମଶାସନ, ସହଯୋଗ ଓ ସମ୍ପର୍କ, ତେବେ ପାଠ ତ ସବୁଠି ଓ ସବୁ ବୟସରେ ଚାଲିଛି । ନିଜର ଆବଶ୍ୟକତା ଓ ସୁବିଧା ଅନୁସାରେ ପାଠପଢ଼ା ହେବ । କେବଳ ପିଲା, ପାଠଶାଳାର ପିଲା ଓ ପାଠଶାଳାର ପଢୁଆ ପିଲାଙ୍କର ଏହି ଉଦ୍ଦେଶ୍ୟ ସାଧିତ ହେବ ଓ ଅନ୍ୟମାନଙ୍କର ହେବ ନାହିଁ—ଏହା ବଡ଼ ଅସମ୍ଭବ କଥା ।

ପାଠ ପଢିବାକୁତ ଜଣେ ଦିଜଣ ବାହାରୁ ନାହାନ୍ତି । ପଣ ପଣ, ଶହ ଶହ, ହଜାର ହଜାର ବାହାରି ପଡ଼ିଲେଣି । ଆହୁରି ଆସିବେ ଓ ଆସିବା ଉଚିତ । ଏକବିଂଶ ଶତାବ୍ଦୀ ପାଖେଇ ଆସୁଛି । କେତେ କାହା ପାଇଁ କେଉଁଠି କିଏ ଜାଗାଦେବ ? ଶିକ୍ଷାୟତନର ସଂଖ୍ୟା ବଢି ବଢି ଚାଲିଛି । ସବୁଠି ନାହିଁର ପ୍ରଶ୍ନ, ଜାଗା ନାହିଁ, ଶିକ୍ଷକ ନାହାନ୍ତି, ବହି ନାହିଁ, ବେଳ ପାଉ ନାହିଁ, ଉପକରଣ ନାହିଁ, ପଇସା କଉଡ଼ି ନାହିଁ, ଜମିବାଡ଼ି ନାହିଁ.........ଏସବୁର ନାହିଁ ଭିତରେ କେତେ କାହାକୁ ପୂରାଇ ଦିଆଯିବ ? ପାଠଶାଳାଟିଏ ଥିବ, ତା' ଭିତରେ ଶ୍ରେଣୀ କୋଠରୀଟିଏ, ଯେଉଁଥିରେ ଜଣେ ଶିକ୍ଷକ, କଳାପଟା ଖଣ୍ଡିଏ—ଏମିତି ଏମିତି କରିହେବ କି ? ମାତୃ ଗର୍ଭରୁ ଭ୍ରୂଣ ଉପରେ ଶିକ୍ଷାର ପ୍ରଭାବ ପଡ଼ି ପଡ଼ିକା ଚାଲି ଶେଷରେ ଶେଷ ନିଃଶ୍ୱାସ ଯାଏ ରହିଛି । ଶିକ୍ଷା ଅନବରତ ଚାଲିଛି, ସବୁଠି ସବୁବେଳେ ସମସ୍ତଙ୍କ ପାଇଁ । ତେଣୁ ଆମକୁ ବୁଝିବାକୁ ହେବ, ଶିକ୍ଷାହିଁ ଜୀବନ ଓ ଜୀବନହିଁ ଶିକ୍ଷା । ଘରେ, ବାହାରେ, ଜଣା ଅଜଣାରେ, ଚେତା ଅଚେତାରେ ସବୁଠି ଓ ସବୁ ଅବସ୍ଥାରେ ଶିକ୍ଷାର ଜୀବନ ଓ ଜୀବନର ଶିକ୍ଷା ଚାଲିବ ।

ଅତଏବ ଆମର ନୀତି ହେବ, ପ୍ରତ୍ୟେକ ଲୋକ ଜୀବନର ପ୍ରତି ମୁହୂର୍ତ୍ତକୁ ଶିକ୍ଷା ଗ୍ରହଣ କରିବାରେ ଲଗାଇବେ, ପ୍ରତ୍ୟେକ ଶିକ୍ଷଣ ସମାଜରେ ଜୀବନବ୍ୟାପୀ ଶିକ୍ଷାକୁ ଆମର ମୂଳ ମନ୍ତ୍ର କରାଯିବ । (୧) ପଢିବା ଓ ଶିଖିବାର ଭାର ଛୋଟ ଛୁଆଙ୍କ ଶିକ୍ଷକଙ୍କ ଉପରେ ଲଦିଦେଇ ବଡ଼ବଡ଼ିଆ ଚୁପ୍‌ଚାପ ରହିବା ବଡ଼ବଡିଆ କଥା, ଅଜବ କଥା । ଶିକ୍ଷାହିଁ

ସମଗ୍ର ସମାଜର କାର୍ଯ୍ୟ ହେବ । (୨) ସାରା ବିଶ୍ୱରେ ଆଜି ଶିକ୍ଷାର ବିକାଶ ଏପରି ଘଟୁଅଛି ଯେ ଏହାକୁ ମୁଷ୍ଟିମେୟ ଲୋକଙ୍କ ପାଇଁ ମୁଷ୍ଟିମେୟ ଲୋକଙ୍କ ହାତରେ ଛାଡ଼ିଦେଇ ହେବନାହିଁ । ଏହା ଏକ ସମାଜବ୍ୟାପୀ ଆନ୍ଦୋଳନ ହେବ । "ବୁଦ୍ଧିର ପୁଞ୍ଜି" ଯାହା ପାଖରେ ଅଛି ସେ ଏହାକୁ ଅନ୍ୟମାନଙ୍କ ବ୍ୟବହାରରେ ଲଗାଇବ,, ଏହା ତାଙ୍କର କର୍ତ୍ତବ୍ୟ । କେବଳ ଯେ ତାଲିମ-ପ୍ରାପ୍ତ ଶିକ୍ଷକ ଏହା କରିବେ ତାହା ନୁହେଁ । ତାଙ୍କ ସହିତ ପିତାମାତା, ଅଭିଭାବକ, ନାଗରିକ ଓ ଅନ୍ୟ ବୃତ୍ତିର ଲୋକ ଓ ସଂସ୍ଥା ଏଥିରେ ସକ୍ରିୟ ସହଯୋଗ କରିବେ । ସମଗ୍ର ସମାଜ, ଏହା ଫଳରେ କେବଳ ଶିକ୍ଷା—ସହାୟକ (Educative) ହେବ, ତାହା ନୁହେଁ—ଏହା ମଧ୍ୟ ଶିକ୍ଷଣ (Learning) ହେବ । ଏହି ଜୀବନବ୍ୟାପୀ, ଜୀବନ ମାଧ୍ୟମରେ, ଜୀବନପାଇଁ ଶିକ୍ଷାର ପ୍ରକ୍ରିୟାହିଁ ହେଉଛି ବିନୋବାଙ୍କ ଭାଷାରେ ଯୋଗ, ଉଦ୍ୟୋଗ ଓ ସହଯୋଗର ପ୍ରକ୍ରିୟା ।

ଅତଏବ ସ ନବଡ଼ ଶିଳ୍ପ, ପରିବହନ, ବାଣିଜ୍ୟ, ଝଲା ଖେତ ଖମାର—ଏ ସବୁର ବ୍ୟାପକ ଶିକ୍ଷା ସହାୟକ ଭୂମିକା ରହିଛି । କୁଶଳି କାରିଗର ବି ଲାଗିପଡ଼ିବେ । ଏହା ହେଲେ ପାଠ ଭଲହେବ, କାମ ବି ଭଲହେବ । 4H's ମସ୍ତିଷ୍କ, (Head), ହୃଦୟ (Heart), ହାତ (Hand) ଓ ସ୍ୱାସ୍ଥ୍ୟ (Health)ର ବିକାଶ ବୃତ୍ତିଦକ୍ଷତା ବଢିବ । (୩) ଠିକ୍ ଯାହାକୁ ଶିକ୍ଷା ସଂସ୍ଥା ବୋଲି ନାମ ଦିଆଯାଇଛି; ଏସବୁ ସେଗୁଡ଼ିକ ସହିତ ଭଲ ଭାବରେ ଜଡ଼ିତ ହେବେ । ଯାପାନରେ ଏ ପ୍ରକାର କାର୍ଯ୍ୟକ୍ରମର ବ୍ୟାପକ ପ୍ରସାର ଦେଖିବାକୁ ମିଳେ । ସମସ୍ତେ ହାତ ମିଳାଇ ଏହାକୁ ଏକ ଗଣ ଆନ୍ଦୋଳନ କଲେଣି । ବସରେ ବନାନଭୁଲ, କାନ୍ଥରେ କଦର୍ଯ୍ୟ ଛବି, କଥାବାର୍ତ୍ତାରେ କୁରୁଚିର କଳଙ୍କ, କାରବାରରେ କଦାଗ୍ରହ, ମନରେ ମଳିନତା—ଏଥିରେ କେଉଁ ସ୍କୁଲ, କେଉଁ କଲେଜ, କଅଣ କରିବେ ? ଦେଶର ଟଙ୍କା ପଇସାତ ଅମାପ ନୁହେଁ । ଯାହା ଶିକ୍ଷାରେ ଲଗାଯାଉଛି, ସେ ବି ପଣ୍ଡ ହେଉଛି । ନାଁରେ ଖର୍ଚ୍ଚ ଏତେ ଟଙ୍କା, ଏତେ ପିଲ, ଏତେ ସ୍କୁଲ, ଏତେ ଶିକ୍ଷକ, କାମରେ କଅଣ କାହିଁ ? କେତେ ପାଠ, କେତେ ପାଠୁଆ ? ଏକ ଅସାର ପ୍ରହସନ ।

ସଭିଏଁ ସାକ୍ଷର ହେବେ । ସବୁପିଲା ପଢିବେ, ଲେଖିବେ ଓ ଭଲକାମ କରିବେ । ଭଲ ମଣିଷ ହେବେ । ଶିକ୍ଷାର ଗୁଣାତ୍ମକ ବିକାଶ ହେବ । ଏଥିପାଇଁ ଗଣଆନ୍ଦୋଳନ ଦରକାର । ଜଣକ ହାତରେ ଯେତେ କ୍ଷମତା ଥାଉ ପଛକେ, ଏହି ଗଣତନ୍ତ୍ରର କାମ କରିହେବ କି ?

ଯେଉଁମାନେ ଶିକ୍ଷାୟତନରେ ନାଁ ଲେଖାଇଲେ, ଖଣ୍ଡେ ଖଣ୍ଡେ ସାର୍ଟିଫିକେଟ୍, ଡ଼ିଗ୍ରୀ, ଡ଼ିପ୍ଲୋମା ଧଇଲେ– ସେ ହେଲେ ପାଠୁଆ । ଅନ୍ୟମାନେ ଅପାଠଆ । ଶିକ୍ଷିତ ଓ ଅଶିକ୍ଷିତ, ପଣ୍ଡିତ ଓ ମୂର୍ଖ, ସାକ୍ଷର ଓ ନିରକ୍ଷର । କି ମସ୍ତବଡ ପାଚେରୀ । କେତେ ବିପଦ ସେଥିରେ ଅଛି । ସମାଜଟା ତଳିତଳାନ୍ତ ହୋଇ ଯାଉଛି । ଏହି ଜାତି ଭେଦରୁ ଆଉ ରକ୍ଷା ନାହିଁ । କିଏ ବଞ୍ଚାଇବ ଆମକୁ ? ପାଠ ନାଁରେ ଲୋକ ଲୋକ ଭିତରେ ନାକ ଟେକା, ହତାଦର ଓ ହିନସ୍ତା ।

ଏହି ପରିପ୍ରେକ୍ଷୀରେ ଶିକ୍ଷାର ଦୁଇଟି ବିଭଗ ଅଛି । ପରିବର୍ତ୍ତନ ପାଇଁ ଏହା ପ୍ରସ୍ତୁତ କରିବ । ପରିବର୍ତ୍ତନକୁ ଗ୍ରହଣ କରିବାକୁ ଲୋକ ମୁହାଁଇବେ, ସେଥିରୁ ଲାଭ ଉଠାଇବେ, ମନର ମୁନ ଗତିଶୀଳ, ଅମାନିଆ ଓ ଆଗୁଆ ହେବ । ଏହା ସଙ୍ଗେ ସଙ୍ଗେ ସମାଜ ଓ ବ୍ୟକ୍ତିର ଅଭ୍ୟନ୍ତରରେ ଥିବା ଅଡୁଆ ଓ ବିକୃତି ବିଷପରି ହେବ । ଆମ ସମୟର ବଡ଼ କଥା ହେଲା ପରିବର୍ତ୍ତନ । ଦ୍ରୁତ ପରିବର୍ତ୍ତନର ଯୁଗ, ମସ୍ତବଡ଼ ପରିବର୍ତ୍ତନ ହେଉଛି । ଅତି ଜଟିଳ ପରିବର୍ତ୍ତନ । ଆମର ସ୍କୁଲ, କଲେଜ ଅଛି । ଖାଲି ଗର୍ବକଲେ ହେବନାହିଁ । ଏହି ପରିବର୍ତ୍ତନ ସଙ୍ଗେ ତାଳଦେଇ ଅଧିକ ପରିବର୍ତ୍ତନ ପାଇଁ ମୁହେଁଇ ପାରିଛୁ କି ? ଜୀବନଯାକ ଶିଖିଶିଖିକା ଚାଲିଛୁ କି ?

ସମଗ୍ର ଜୀବନ ପାଇଁ ଜୀବନବ୍ୟାପୀ ଶିକ୍ଷା ହେଉଛି ଏକ ଐତିହାସିକ ସମସ୍ୟା ଓ ଠିକ୍ ଆମ ସଭ୍ୟତାର ସମସ୍ୟା । (୪) ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଆସନ୍ତା କାଲିର ଶିକ୍ଷା ଏକ ସୁସଂହତ ସମଗ୍ରତାରେ ପରିଣତ ହେବ ଓ ସେଥିରେ ସମାଜର ସମସ୍ତ ଅଙ୍ଗର ସମନ୍ୱୟ ଘଟିବ । ଏହା ସମସ୍ତଙ୍କ ପାଇଁ ହେବ ଓ ଅନବରତ ଚାଲିବ । ବ୍ୟକ୍ତି ବିଶେଷଙ୍କ ଦୃଷ୍ଟିରୁ ଏହା ସମଗ୍ର ଓ ସୃଜନାତ୍ମକ ହେବ । ଫଳରେ ଏହା ବ୍ୟକ୍ତି ଆଧାରିତ ହେବ ଓ ଆତ୍ମ–ନିର୍ଦ୍ଦେଶକ ହେବ । ଏହି ଆନ୍ଦୋଳନକୁ ବାଧା ଦେଇ ହେବ ନାହିଁ ଓ ଏହାକୁ ପଛକୁ ହଟାଇ ହେବନାହିଁ । ଏହା ଆମ ସମୟର ସାଂସ୍କୃତିକ ବିପ୍ଳବ ।

(୫) ଅତଏବ ଶିକ୍ଷା ଯେ ଏକ ନିର୍ଦ୍ଦିଷ୍ଟ ସମୟରେ (ସ୍କୁଲ ପଢିବା ସମୟ) ସୀମିତ– ଆମର ଏହି ଧାରଣାକୁ ଫିଙ୍ଗି ଦେବାକୁ ପଡ଼ିବ । ଆହୁରି ମଧ୍ୟ ଶିକ୍ଷା ଯେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ (ସ୍କୁଲଘର) ଆବଦ୍ଧ–ଆମର ଏ ଧାରଣାକୁ ପୋଛି ଦେବାକୁ ହେବ । ଯେକୌଣସି ପରିସ୍ଥିତିରୁ ଓ ଲୋକଙ୍କଠାରୁ ଆମେ ଶିକ୍ଷା ପାଇପାରିବା, ଏହି ଧାରଣାକୁ ସ୍ଥାନ ଦେବାକୁ ହେବ । ସ୍କୁଲ ଶିକ୍ଷାକୁ ଏକ ଉଦ୍ଦେଶ୍ୟରୂପେ ବିବେଚନା ନକରି ସମଗ୍ର ଶିକ୍ଷାସହାୟକ କାର୍ଯ୍ୟକଳାପର ମୌଳିକ ଅଙ୍ଗ ବୋଲି ଧରିନିଆଯିବ । ଆନୁଷ୍ଠାନିକ ଶିକ୍ଷା ଓ ଅନୁଷ୍ଠାନ ବହିର୍ଭୂତ ଶିକ୍ଷା ଏହାର ଅନ୍ତର୍ଭୁକ୍ତ ହେବ । ମୋଟାମୋଟି ଭାବରେ ଶିକ୍ଷାକୁ ଜୀବନର ସହଚର ବୋଲି ଧରି ନେବାକୁ ପଡ଼ିବ । (୬)

---

୧ ରୁ ୬ ସୂଚିତ ବାକ୍ୟ ବା ବାକ୍ୟାବଳୀ UNESCO, Paris 1972 ଓ Sterling, Delhi 1973 ପ୍ରକାଶିତ Learning To Be ଶୀର୍ଷକ ପୁସ୍ତକରୁ ଗୃହୀତ ।

# ପରୀକ୍ଷାର ପରୀକ୍ଷା

ଏବେ ଆଉ ପରୀକ୍ଷା ନାହିଁ, କିନ୍ତୁ ଚାଲିଛି ଖୁବ୍ ନିର୍ମମ ଓ ନିଷ୍ଠୁରଭାବରେ ସର୍ବତ୍ର ପରୀକ୍ଷାର ପରୀକ୍ଷା । ପରୀକ୍ଷାର ପଦ୍ଧତି ଓ ମାପକାଠି ଯେତେଦୂର ତ୍ରୁଟିଯୁକ୍ତ ଓ ବ୍ୟକ୍ତିସାପେକ୍ଷ ହେଉ ପଛକେ ଶିକ୍ଷା, ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାୟତନର ପରୀକ୍ଷା ହେବାର କଥା; କିନ୍ତୁ ତା ବଦଳରେ ଶିକ୍ଷା ସୋପାନର ତଳରୁ ତାଳୁପର୍ଯ୍ୟନ୍ତ ପରୀକ୍ଷାର ପରୀକ୍ଷା ଚାଲିଛି । କି ଭୀଷଣ ଓ ଭୟାବହ ପରିସ୍ଥିତି । କି ତାଣ୍ଡବଲୀଳା !

ପରୀକ୍ଷାର ଭସ୍ମାସୁର "ଆପଣା ଆୟତ୍ତ ପରକୁ ଦେଇ, ଶିବ ପଳାଇଲେ ଲଙ୍ଗଳା ହୋଇ ।" ପରୀକ୍ଷା ହେଉଛି ଶିକ୍ଷା-ପ୍ରଣାଳୀର ସହଚର ଓ ସହାୟକ । ଯେଉଁଠି ପାଠ ସେଇଠି ପରୀକ୍ଷା, ପାଠ ଓ ପରୀକ୍ଷା ଅଙ୍ଗାଙ୍ଗୀ ଜଡ଼ିତ—ଏହା ଥିଲା ଓ ରହିବ । ପାଠ କିପରି ଚାଲିଛି, କେତେ ଦୂର ସଫଳ ହେଲା, ପାଠକୁ ପିଲାଏ କିପରି ଗ୍ରହଣ କଲେ ଓ ତଦ୍ଦ୍ୱାରା ପିଲାଙ୍କର କି ପରିବର୍ତ୍ତନ ହେଲା, ଏସବୁ ପରୀକ୍ଷାରୁ ଜାଣିବାର କଥା ? କିନ୍ତୁ ପରୀକ୍ଷା ଏଥିରେ ସହାୟକ ନ ହୋଇ ଏବେ ଏହା ଆମକୁ ଧକା ମାରୁଛି । ସହାୟକ ନ ହୋଇ ସଇତାନ ହୋଇଛି । (A good servant but a bad master) ପରୀକ୍ଷା-ଭସ୍ମାସୁର ଆମ ଆୟତ୍ତରେ ନାହିଁ । ସତ୍ୟ ଶିବ ସୁନ୍ଦର ଆଜି ଶିକ୍ଷାୟତନ ଓ ସମାଜକୁ ଛାଡ଼ିଦେବାର ଦେଖାଯାଉଛି । ବରଂ ସମାଜରେ ଯାହା କିଛି ଅସତ୍ୟ, ଅଶିବ ଓ ଅସୁନ୍ଦର, ତାହା କ୍ରମେ ଶିକ୍ଷାୟତନକୁ ଗ୍ରାସ କରୁଛି ।

ହାଟଙ୍ଗ୍ କମିଟି (୧୯୧୭) An Examination of examination (ପରୀକ୍ଷାର ପରୀକ୍ଷା) ପ୍ରସଙ୍ଗରେ ପରୀକ୍ଷକଙ୍କର ମନମୁଖୀ କାରବାର ବିଷୟ ଉତ୍‌ଥାପନ କରିଥିଲେ । ଗୋଟିଏ ପ୍ରଶ୍ନର ଉତ୍ତରର ମାନ ନିରୂପଣ କଲାବେଳେ ଦୁଇ ପରୀକ୍ଷକଙ୍କ ମଧ୍ୟରେ ଓ ଜଣେ ପରୀକ୍ଷକଙ୍କର ବିଭିନ୍ନ ସମୟର ମୂଲ୍ୟାଙ୍କନ ମଧ୍ୟରେ ଆକାଶ-ପାତାଳ ପ୍ରଭେଦ ଲକ୍ଷ୍ୟ କରି ମାନ ନିରୂପଣ କିପରି ବ୍ୟକ୍ତିନିରପେକ୍ଷ (objective) ହେବ ସେ ପରାମର୍ଶ ଦେଇଥିଲେ । ସେ ପରାମର୍ଶ ଘେନିଲୁ ତ ନାହିଁ, ଏହା ସଙ୍ଗେ "ସାରସ୍ୱତ ପାଶୋରିଲୁ, ସାରିଲୁ ଆୟୁଷ ।" ବର୍ତ୍ତମାନ ଅବସ୍ଥାରେ ପରୀକ୍ଷାର ପରୀକ୍ଷା ପରୀକ୍ଷକ, ପରୀକ୍ଷା ପରିଚାଳକ, ନିର୍ଦ୍ଦେଶକ ଓ ନୀରିକ୍ଷକ, ଅଭିଭାବକ, ଶିକ୍ଷକ—ସମସ୍ତଙ୍କ ପାଇଁ ଭୟାବହ ପରିସ୍ଥିତି ସୃଷ୍ଟି କରିଛି । ସମସ୍ତେ ବ୍ୟଥିତ ଓ ଅସହାୟ । ଔଷଧ ରଗରେ ବେଳେବେଳେ ତାଟିଆ ବି କାମୁଡ଼ା ଯାଉଛି । ପିଲାଏ ଖରାପ ହେଲେଣି, ମାଷ୍ଟରମାନେ ମାଇଚ୍ଛା ହେଲେଣି, ଶାସକ ଦୁର୍ବଳ, ପରୀକ୍ଷା ହଟିଯାଉ ଇତ୍ୟାଦି । ଯାହା ବି ଯେଉଁଠି ଅଧ୍ୟୟନ-ଅନୁରାଗ, ଶ୍ରମନିଷ୍ଠା ଆଦି ଥିଲା ତାହାର ସ୍ୱୀକୃତି ନାହିଁ । ତାହା ବର୍ତ୍ତମାନ ସନ୍ଦେହର ବସ୍ତୁ । ମାତ୍ର ବିରାଡ଼ି ବେକରେ ଘଣ୍ଟା ବାନ୍ଧୁଛି କିଏ ?

ଏହି ବ୍ୟର୍ଥତା ଓ ବ୍ୟଥାର କାରଣ କେତୋଟିର ଆଲୋଚନା କରଯାଉ । ଆଜି ନୁହେଁ, କେତେ କାଳର ଉଦାସୀନତା, ରୂଢ଼ୀବାଦିତା ଆଦି ବହୁ କାରଣରୁ ଅବସ୍ଥା ଏପରି ଜଟିଳ ଓ ସାଂଘାତିକ ହୋଇଛି ।

## (୧) ପରୀକ୍ଷା ଏକ କକ୍ଷଚ୍ୟୁତ ଧୂମକେତୁ ହେଲା

ଉଦ୍ଦେଶ୍ୟ, ଉପାୟ ଓ ମୂଲ୍ୟାଙ୍କନ–ଶିକ୍ଷାର ଏହି ତିନୋଟି ବିଭବ ମଧ୍ୟରେ ଏକ ଆପେକ୍ଷିକ ଓ କ୍ରିୟା–ପ୍ରତିକ୍ରିୟାତ୍ମକ ସମ୍ପର୍କ (interaction) ରହିଛି । ପ୍ରଥମେ ଉଦ୍ଦେଶ୍ୟ ନିଅନ୍ତୁ, ଶିକ୍ଷାର ସାଧାରଣ ଉଦ୍ଦେଶ୍ୟ ରହିଛି; ଭଲ ମଣିଷ ଗଢିବା, ଉପାର୍ଜନକ୍ଷମ ନାଗରିକ ପ୍ରସ୍ତୁତ କରିବା, କୌଶଳୀ କାରିଗର ସୃଷ୍ଟି କରିବା, ଜୀବନର ସର୍ବାଙ୍ଗୀନ ବିକାଶ ସାଧନ କରିବା ଇତ୍ୟାଦି । ଏସବୁ ଉଦ୍ଦେଶ୍ୟ ପରସ୍ପର ପୃଥକ୍ ନୁହେଁ, ପୁଣି ଶିକ୍ଷାର ସ୍ତର ଅନୁସାରେ ଉଦ୍ଦେଶ୍ୟର ତାରତମ୍ୟ ଥାଏ । ଏହା ଛଡା ବିଦ୍ୟାଳୟର ପ୍ରତ୍ୟେକ ବିଷୟ ଓ କାର୍ଯ୍ୟକଳାପର ମଧ୍ୟ ସ୍ୱତନ୍ତ୍ର ଓ ସାଧାରଣ ଲକ୍ଷ୍ୟର ପରିପୂରକ ଉଦ୍ଦେଶ୍ୟ ଥାଏ । ମୋଟ ଉପରେ ଶିକ୍ଷାର ଉଦ୍ଦେଶ୍ୟ ଅନୁସାରେ ଆମକୁ ପାଠ, ପ୍ରଣାଳୀ, ପରିବେଶ, ପାଠ ସହାୟକ ସାମଗ୍ରୀ, ସଂଗଠନ, ଶାସନ ଇତ୍ୟାଦିକୁ ସ୍ଥିର କରିବାକୁ ପଡେ । ଏସବୁ ଉପାୟ ନାମରେ ଅଭିହିତ । ଯେଉଁସବୁ ଦ୍ୱାରା ଏପରିକି ଶିକ୍ଷକଙ୍କ ବ୍ୟକ୍ତିତ୍ୱ, ଅଭିରୁଚି, ଆଦର୍ଶ, ଆଭିମୁଖ୍ୟ–ଆମ୍ଭେମାନେ ଛାତ୍ର ଜୀବନକୁ ପରିବର୍ତ୍ତିତ ଓ ପ୍ରଭାବିତ କରିପାରିବା ସେସବୁ ହେଲା ଉପାୟ । ଉପାୟକୁ ନିଶ୍ଚୟ ଉଦ୍ଦେଶ୍ୟମାର୍ଗୀ କରିବାକୁ ହେବ । ଗଣତାନ୍ତ୍ରିକ ମନୋଭାବ ସୃଷ୍ଟି କରିବା ଉଦ୍ଦେଶ୍ୟ ରଖି ଆମେ ଯଦି ପିଲାମାନଙ୍କୁ ନିଷ୍ଠୁର ପ୍ରହାର କରିବା, ଏକଚ୍ଛତ୍ର ଶାସନର ସୁଫଳ ବିଷୟରେ ପାଠପଢାଇବା, ବକ୍ତୃତା କରି ପାଠର ବୋଝ ଲଦିଦେବା, ତେବେ ଉଦ୍ଦେଶ୍ୟ ନିଶ୍ଚୟ ପଣ୍ଡ ହେବ । ତେବେ ଉଦ୍ଦେଶ୍ୟ ଅନୁରୂପ ଉପାୟ ଠିକ୍ କଲାପରେ ବର୍ତ୍ତମାନ ପ୍ରଶ୍ନ ହେଉଛି ଆମ ଉଦ୍ଦେଶ୍ୟ ସଫଳ ହେଲାକି ? ପରୀକ୍ଷାର ପ୍ରଶ୍ନ ଆସିଲା । ସେଥିରେ ବିଗ୍ରହ ହେଉଛି, ପରୀକ୍ଷା ଲିଖିତ ହେବ ନାଁ ମୌଖିକ ହେବ, କାଗଜରେ ଲେଖିବେ ନାଁ ହାତରେ କରିବେ, କାମଟି ଜଣିକିଆ ହେବ ନାଁ ଦଳଗତ ହେବ, ଇତ୍ୟାଦି । ଆଚ୍ଛା, ସୁଚିନ୍ତିତ ପରୀକ୍ଷା ପଦ୍ଧତି ଓ ପରୀକ୍ଷାର କୌଶଳ ପ୍ରୟୋଗ କରି ଯେଉଁଫଳ ପାଇଲେ ତାକୁ ବିଶ୍ଳେଷଣ କରିବାର କଥା । ଯଦି ପରୀକ୍ଷାର ଫଳ ଆଶାନୁରୂପ ନୁହେଁ, ତେବେ ଉପାୟର ପରିବର୍ତ୍ତନ ଆବଶ୍ୟକ କି ? ଉଦ୍ଦେଶ୍ୟର କୌଣସି ପରିବର୍ତ୍ତନ ଆବଶ୍ୟକ କି ? ଏହି ସମ୍ପର୍କକୁ Dr. B.S. Bloom ପରବର୍ତ୍ତୀ ପୃଷ୍ଠାର ଚିତ୍ରରେ ବ୍ୟକ୍ତ କରନ୍ତି । ବାସ୍ତବ କ୍ଷେତ୍ରରେ ଆମ




ପରୀକ୍ଷାର ପ୍ରସ୍ତୁତି, ପ୍ରଣାଳୀ ଓ ଫଳର ବିଶ୍ଳେଷଣ ଏହି ପରିପ୍ରେକ୍ଷୀରେ ଆଦୌ କରାଗଲା ନାହିଁ । ପରୀକ୍ଷା ଏକ ଗୋଠଖଣ୍ଡିଆ ବା କକ୍ଷଚ୍ୟୁତ ଧୂମକେତୁ ହୋଇଗଲା । ଛୁଞ୍ଚିଦ୍ୱାରା ଶାବଳର କାମକରି ହେବ ନାହିଁ, କିମ୍ବା ଶାବଳ ଛୁଞ୍ଚିର କାମ କରିପାରିବ ନାହିଁ । ଉଦ୍ଦେଶ୍ୟର ଅନୁରୂପ ଉପାୟ ଓ ମୂଲ୍ୟାଙ୍କନ ବିଧି ପ୍ରୟୋଗ କରି ଏହି ତିନି ବିଭବ ମଧ୍ୟରେ ଥିବା ସମ୍ପର୍କକୁ ମନେ ରଖିବାକୁ ହେବ ।

## (୭) ପରୀକ୍ଷା ଏକ ବିଡ଼ମ୍ବନାରେ ପରିଣତ ହେଲା

ବିଦ୍ୟାଳୟରେ ସମୂହ ଜୀବନଯାପନ, ଧନ୍ଦା ଆଦି ବୈଷୟିକ ବିଷୟର ପ୍ରବର୍ତ୍ତନ, ନୀତିଶିକ୍ଷା, ସାମାଜିକ ଶିକ୍ଷା, ଆନ୍ତର୍ଜାତିକ ମନୋଭବ ସୃଷ୍ଟି ପାଇଁ ଶିକ୍ଷା ଆଦି କାର୍ଯ୍ୟକ୍ରମ ଓ ବିଭବ ଯେତେଦୂର ପ୍ରଗତିଶୀଳ ଚିନ୍ତାର ପରିଚାୟକ ହେଲେହେଁ ପରୀକ୍ଷାନ୍ତର୍ଭୁକ୍ତ ନ ହେଲେ ନିରର୍ଥକ ହେବବୋଲି ସାଧାରଣ ଧାରଣା ଦୃଢ଼ହେଲା । ଏହାଦ୍ୱାରା ପରୀକ୍ଷାର ପ୍ରାଧାନ୍ୟ ବଢିଲା । ଭଲକଥା । ବସ୍ତୁତଃ ପରୀକ୍ଷା ଯେପରି କରାଗଲା ତଦ୍ୱାରା ପ୍ରଗତିଶୀଳ ଚିନ୍ତାର ପ୍ରବର୍ତ୍ତନ ପାଇଁ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରାଗଲା । ମୌଳିକ ବିଦ୍ୟାଳୟର ପିଲାଙ୍କୁ ମୁହୂର୍ତ୍ତ, ଶୁଶ୍ରୂଷା, ମୂଷା ଆଦି ଶବ୍ଦର ବନାନ ପଚାରି ମୌଳିକ ଶିକ୍ଷାର ମୂଲ୍ୟାଙ୍କନ କରାଗଲା । ବହୁମୁଖୀ ଶିକ୍ଷା ଯୋଜନା, ଏନ. ସି. ସି. ବିଜ୍ଞାନ ଶିକ୍ଷା, ନୂତନ ଶିକ୍ଷା ଯୋଜନାର ପ୍ରବର୍ତ୍ତନ ଆଦି ସୁଦୂର ପ୍ରସାରୀ ଯୋଜନା ହେଲେ ସୁଦ୍ଧା ମାନଧାତିଆ ପରୀକ୍ଷା ଦ୍ୱାରା ଏସବୁକୁ ମାରି ଦିଆଯାଉଛି । ଶିକ୍ଷାର କଷଟିପଥର ପରୀକ୍ଷା, କିନ୍ତୁ ପରୀକ୍ଷା ମାଙ୍କଡା ପଥର ହେଲେ କେଉଁ ଶିକ୍ଷା ସୁନାକୁ ପରଖି ପାରିବ ? ଲୁହାକୁ ଲିଟରରେ ମାପି ହେବକି ? ପରୀକ୍ଷାକୁ ଛାଡ଼ି ପାରୁନାହୁଁ, କିନ୍ତୁ ଶିକ୍ଷାରେ କେତେ କଅଣ ପରିବର୍ତ୍ତନ ହେବା ସତ୍ତ୍ୱେ ପରୀକ୍ଷା କେଉଁ ପୁରୁଣା ଓ ପୁରାଣ ଯୁଗରୁ ରହିଛି । ଏହା ଏକ ବିଡ଼ମ୍ବନା ନୁହେଁକି ? ଏହାର ଯୁଗୋପଯୋଗୀ ପରିବର୍ତ୍ତନ ଆମେ କାର୍ଯ୍ୟତଃ କରିପାରୁଛୁ କି ?

## (୩) ପରୀକ୍ଷା ଏକ ବ୍ୟବସାୟ ହେଲା

ପ୍ରାଶ୍ନିକ, ପରୀକ୍ଷକ, ତତ୍ତ୍ୱାବଧାରକ ପ୍ରମୁଖ ଯେଉଁସବୁ ବ୍ୟକ୍ତି ଓ ଅନୁଷ୍ଠାନ ଏଥିରେ ସମ୍ପୃକ୍ତ ହେଲେ ସେମାନଙ୍କର ଏହା ହେଲା ବ୍ୟବସାୟ । ଖାତା ଖଣ୍ଡିକ ଭଲକରି ଦେଖାଗଲା ନାହିଁ । କିଏ ଉତ୍ତର କାଗଜର ପୃଷ୍ଠା ସଂଖ୍ୟା ଗଣି ବା ଅନ୍ଧାରରେ ଟିକ୍‌ମାରି ଖାତା ଦେଖିବାର ଶୁଣାଯାଏ । ୭ମ ଶ୍ରେଣୀ ବୋର୍ଡ ପରୀକ୍ଷାରେ ସମ୍ବାଦପତ୍ର ପ୍ରବନ୍ଧ ୧୯୬୬, ୧୯୬୮ ଓ ୧୯୭୦ ମସିହାରେ, ବ୍ୟାୟାମ ୧୯୬୬ ଓ ୧୯୭୦ ମସିହାରେ ଇତ୍ୟାଦି ବିଷୟର ପୁନରାବୃତ୍ତି କରାଗଲା । ଟେଷ୍ଟ ପେପର, ପାଠ୍ୟପୁସ୍ତକ, ମାନେବହି, ସମ୍ଭାବିତ ପ୍ରଶ୍ନୋତ୍ତରରୁ ପ୍ରଶ୍ନ ଅବିକଳ ଉଠାଇ ଦେବାର ବହୁ ଦୃଷ୍ଟାନ୍ତ ଅଛି । ଫଳରେ ଏହି ପ୍ରବଳ ବ୍ୟବସାୟର ବନ୍ୟାରେ ଶିକ୍ଷକ ତାଙ୍କର ନିଜତ୍ୱ ହରାଇ ଦେଲେ । ଶିକ୍ଷକ, ପ୍ରକାଶକ, ଅଭିଭାବକ ଆଦି ସମ୍ପୃକ୍ତ କର୍ମକର୍ତ୍ତା ଭଲ ଛାଡ଼ି ଭେଲରେ ମାତିଗଲେ । ସାର୍‌ଙ୍କ ପାଖରେ ଟିଉସନ ନ କଲେ, ସାର୍‌ଙ୍କ "ଗଣିତ ଶିକ୍ଷକ" ନ ପଢ଼ିଲେ ପାଠ ହେବନାହିଁ, ଏହି ଧାରଣା ପ୍ରବଳ ହେଲା । ବିନା ମାଡ଼ରେ ପାଠ ନାହିଁ ଯେପରି ପୁରୁଣା କଥାଟି ଆଜି ବି ନୂଆ, ସେହିପରି ବିନା ଟିଉସନରେ ପାଠ ନାହିଁ କଥାଟି ନଆ ହେଲେ ବି ସମସ୍ତଙ୍କର ଆଦର ଓ ଆବଶ୍ୟକତା । ପରୀକ୍ଷକଙ୍କୁ ଧରାଧରି କରିବା ଏକ ବିଧିବଦ୍ଧ ବ୍ୟବସାୟ ହେଲାଣି । ଏହି କୌଶଳ ଶିକ୍ଷା କରାଯାଉଛି ଓ ଏହା ପରୀକ୍ଷାର କୌଶଳକୁ ଟପିଗଲାଣି । ପରୀକ୍ଷା—ବ୍ୟବସାୟରେ କଞ୍ଚା କଉଡ଼ି ପଖାଳ ଭାତ ।

## (୪) ପରୀକ୍ଷା ପଥଭ୍ରଷ୍ଟ ପାପାଗ୍ରଣୀ ହେଲା

ପରୀକ୍ଷାର ପ୍ରକୃତି ଓ ପ୍ରତିଶ୍ରୁତି ଯାହାବଳରେ ଏହା ପରୀକ୍ଷାରୁ ମୂଲ୍ୟାୟନ (From examination to evaluation) ହେଲା, ତାହା ବସ୍ତୁତଃ ଶବ୍ଦାଡ଼ମ୍ବର ମାତ୍ର ! ଏହାର ତାତ୍ତ୍ୱିକ ବିଗ୍ରହରେ ଆମେ ଆକୃଷ୍ଟ ହେଲୁ ନାହିଁ । ସେ ସବୁ କଅଣ ?

(କ) ପୂର୍ବରୁ ସୂଚିତ ହୋଇଅଛି ଯେ ଶିକ୍ଷାନୁଭୂତି ଶିକ୍ଷାର ଉଦ୍ଦେଶ୍ୟ ଅନୁସାରେ ନିରୂପିତ ହୁଏ । ତେଣୁ ଏହି ଉଦ୍ଦେଶ୍ୟହିଁ ମୂଲ୍ୟାୟନର ବିଷୟବସ୍ତୁ ହେବ । ଛାତ୍ରର ବୁଦ୍ଧି, ଚରିତ୍ର ବା ସାଧାରଣ ସାମର୍ଥ୍ୟ ପ୍ରତି ଦୃଷ୍ଟି ଦିଆଗଲା ନାହିଁ । ଜ୍ଞାନ (Cognition), କର୍ମ (Conation) ଓ ଆବେଗ (affection) ସ୍ତରରେ ଛାତ୍ରର ବୃଦ୍ଧି ଓ ବିକାଶର ମୂଲ୍ୟାୟନ ପାଇଁ ସୁଯୋଗ ରହିଲା ନାହିଁ । ଏହା ଫଳରେ ମୁଖସ୍ଥୀକରଣର ପ୍ରାବଲ୍ୟ, ବୈଫଲ୍ୟର ମାତ୍ରାଧିକ୍ୟ ଓ ଅସଦାଚରଣରେ ପ୍ରବୃତ୍ତି ବଢ଼ିବାକୁ ଲାଗିଲା ।

(ଖ) ଶିକ୍ଷାପ୍ରକ୍ରିୟା ପରି ମୂଲ୍ୟାୟନ ଏକ ନିରବଚ୍ଛିନ୍ନ କାର୍ଯ୍ୟକ୍ରମ ଅଟେ । ଯେ ଶିକ୍ଷକ ସେହି ପରୀକ୍ଷକ ଓ ଯେଉଁଠି ଶିକ୍ଷା ସେଇଠି ପରୀକ୍ଷା ଏହା ବରାବର ଚାଲିବ ।

ସପ୍ତମ ବା ଦଶମ ବା ତତ୍ତୁଲ୍ୟ ଶ୍ରେଣୀପରେ ପରୀକ୍ଷାଟିଏ କରିଦେଲେ ଆମ କାମ ହେବ ନାହିଁ । ସେଥିପାଇଁ ଅସାଧୁତା ଓ ଅସଦାଚରଣ । ସେଥିପାଇଁ ୩୫ରେ ଫେଲ୍ ଓ ୩୬ରେ ପାଶ । ଏଇଥି ଯୋଗୁଁ ମଧ୍ୟ ବିଦ୍ୟାଳୟରେ ଉପସ୍ଥାନ ଓ ଅନୁପସ୍ଥାନ ମଧ୍ୟରେ ପାର୍ଥକ୍ୟ ରହୁନାହିଁ । ଆଉ ମଧ୍ୟ ଶିକ୍ଷକ ଓ ଶିକ୍ଷାର୍ଥୀଙ୍କର ଶିକ୍ଷାପ୍ରକ୍ରିୟାରେ ଦାୟିତ୍ୱ ଓ ସହଯୋଗ ରହୁ ନାହିଁ । ମୂଲ୍ୟାୟନ ପାଇଁ ବିବରଣୀ (Evidence) ସଂଗ୍ରହ କରଯାଉଥିବ । ମୁଦାଲିଅର କମିଶନ୍ ଏଥିପାଇଁ Cumulative Record କଥା କହିଗଲେ । ମାଧ୍ୟମିକ ଶିକ୍ଷାନୁଷ୍ଠାନ ପାଇଁ Card ପ୍ରସ୍ତୁତ ହୋଇ ଅଛି । ପ୍ରାଥମିକ ବିଦ୍ୟାଳୟକୁ ମୌଳିକ ଶିକ୍ଷାଭିମୁଖୀ କରିବା ଦୃଷ୍ଟିରୁ ଗୋଟିଏ Record cardର ନମୁନା ପ୍ରାଥମିକ ବିଦ୍ୟାଳୟରେ ପ୍ରଚଳନ କରିବା ପାଇଁ ଦିଆଯାଇଥିଲା । ଏଇ କେତେବର୍ଷ ତଳେ ଆମ ରାଜ୍ୟର ବୃତ୍ତି, ଶିକ୍ଷାନିର୍ଦ୍ଦେଶନା ସଂସ୍ଥା (State Bureau of Educational and Vocational Guidance) ସମଗ୍ର ସ୍କୁଲ ଶିକ୍ଷା ପାଇଁ ଗୋଟିଏ ବିଧିବଦ୍ଧ ରେକର୍ଡ କାର୍ଡ ପ୍ରଣୟନ କରିଥିଲେ । ସେସବୁ ବି କାଗଜଗୁଚ୍ଛ ଓ ସେଥିରେ ଭରି ଚାଲିଛି ।

(ଗ) ମୂଲ୍ୟାୟନ ପ୍ରକ୍ରିୟା ତେଣୁ କେବଳ ନିରବଚ୍ଛିନ୍ନ ହେବ ନାହିଁ, ଏହା ମଧ୍ୟ ବ୍ୟାପକ ହେବ । ପର୍ଯ୍ୟାପ୍ତ ହେବ । ଶିକ୍ଷାର ପ୍ରସ୍ତାବନା, ପ୍ରକ୍ରିୟା ଓ ପରିଣତି ପ୍ରତି ଦୃଷ୍ଟି ଦିଆଯିବ । ଶରୀର, ମନ ଓ ଆବେଗରେ ପରିବର୍ତ୍ତନ ସେଥିରେ ପ୍ରତିଫଳିତ ହେବ । ପାଠ ଓ ପାଠେତର ବିଷୟର ପରୀକ୍ଷା କରଯିବ । ସେବେଳର ସପ୍ତମ ଶ୍ରେଣୀ ସାହିତ୍ୟ ବହିରେ ୧୧ଟି ଗଦ୍ୟ ଓ ୧୦ଟି ପଦ୍ୟ ଥିଲେ ସୁଦ୍ଧା ପ୍ରଶ୍ନରେ ନମ୍ବର ବିଭାଜନ ଯଥାକ୍ରମେ ୩୪ ଓ ୨୬ । କାହିଁକି ? ପୁଣି ୧୧ଟି ଗଦ୍ୟରୁ ବାଛି ସରଳାର୍ଥ ପାଇଁ ତିନୋଟି ଗଦ୍ୟ, ପ୍ରଶ୍ନୋତ୍ତର ପାଇଁ ୪ଟି ଗଦ୍ୟ ପଢିଦେଲେ ଚଳିବ । ବାସ୍ତବରେ ଦୁଇଟି ସରଳାର୍ଥ ଓ ଗୋଟିଏ ପ୍ରଶ୍ନୋତ୍ତର କରିବାକୁ ପଡ଼େ । ଫଳରେ ୧୧ଟିରୁ ୩ଗୋଟି ଗଦ୍ୟ ପଢିଦେଲେ କାମ ଚଳିବ । ଏଥିପାଇଁ ଶିକ୍ଷା, ଶିକ୍ଷାୟତନ ଓ ଶିକ୍ଷକ ଦରକାର ନାହିଁ । ୧୧ଟିରୁ ୩ଟି ବାଛିବା ପାଇଁ ଦରକାର ଚତୁରତା, ଶଠତା, ନୋହିଲେ ଜ୍ୟୋତିଷ ବିଦ୍ୟା । ତେଣୁ ମୂଲ୍ୟାୟନ ପର୍ଯ୍ୟାପ୍ତ ହେବା ପରିବର୍ତ୍ତେ ପରୀକ୍ଷାରେ ପାଠ୍ୟକ୍ରମ ପୁରାପୁରି ପ୍ରତିଫଳିତ ହେଉ ନାହିଁ । ପ୍ରଶ୍ନ ବି ଏପରି ମାମୁଲି ଯେ ପାଠ ପଢିବାର ଆବଶ୍ୟକତା ନାହିଁ । "ଏହି ଗଦ୍ୟାଂଶଟି ଭୀମ ଭୋଇରୁ ଉଦ୍ଧୃତ ।" "ଆତ୍ମିକ ଶିକ୍ଷା ବଡ଼ କଠିନ ପାଠ"—ଇତ୍ୟାଦି ଉତ୍ତର ଦେବା ପାଇଁ ସ୍କୁଲ, କଲେଜର ଆବଶ୍ୟକତା ନାହିଁ । ଆବେଗ, ଆତ୍ମା, ମନୋଭବ, ସୌନ୍ଦର୍ଯ୍ୟାନୁଭୂତି, ଆତ୍ମୋପଲବ୍ଧି, ନିଷ୍ଠା, ସାମାଜିକତା ଇତ୍ୟାଦି କଅଣ ପରୀକ୍ଷିତ ହେବ ନାହିଁ ? ଖଣ୍ଡିଏ ବି ପ୍ରଶ୍ନ ଆମ ଆଖିରେ ପଡ଼େ ନାହିଁ । ତେଣୁ ଆମ କଥା ଯେତେ ଆମ କାମ ସେତେ ନୁହେଁ ।

(ଘ) ମୂଲ୍ୟାୟନ ଗୋଟିଏ ଶିକ୍ଷଣୀୟ ପ୍ରକ୍ରିୟା । ପାରମ୍ପରିକ ପରୀକ୍ଷାରେ ଯଦ୍ ପଠିତମ୍ ତଦ୍ ଶ୍ରୀ ଗୁରବେ ନିବେଦିତମ୍' ପରି, ମୂଲ୍ୟାୟନରେ ପରିବର୍ତ୍ତନ ବରଂ ଦୃଢ଼ ହୁଏ । ମୂଲ୍ୟାୟନ ଓ ଶିକ୍ଷଣପ୍ରକ୍ରିୟା (Evaluation Learning process) ମଧ୍ୟରେ ଘାତ-ପ୍ରତିଘାତ କ୍ରିୟା ଚାଲେ । ପାଠଶାଳା ଓ ପରିବାର ମଧ୍ୟରେ ସମ୍ପର୍କ ବଢ଼େ । ଦୋଷଲଦିବା, ଗାଳିଦେବା ପରି ଅସୁସ୍ଥ ପରିବେଶ ରହେ ନାହିଁ ।

(ଙ) ମୂଲ୍ୟାୟନ ଯେ କେବଳ ବିଦ୍ୟାର୍ଥୀର କୃତିର ମାନ ନିର୍ଦ୍ଧାରଣ କରେ ତାହା ନୁହେଁ, ଏହା ମଧ୍ୟ ଉନ୍ନତି ବିଧାନ କରେ । ପାଠ୍ୟ ତାଲିକା, ପାଠ୍ୟପୁସ୍ତକ, ପଠନ-ପାଠନ-ପ୍ରକ୍ରିୟା ଓ ମୂଲ୍ୟାୟନର ମଧ୍ୟ ମାନ ନିର୍ଦ୍ଧାରଣ କରାଯାଏ । ଏଥିରେ ଥିବା ଦୋଷତ୍ରୁଟି ଦୂର କରାଯାଏ । ଛାତ୍ରମାନଙ୍କର ଯେଉଁ ଦୁର୍ବଳତା ଥାଏ, ତାହା ସ୍ଥିର କରାଯାଇ ଦୂର କରିବାର ଉଦ୍ୟମ ହୁଏ । ଉନ୍ନତି ବିଧାନପାଇଁ ମୂଲ୍ୟାୟନ, ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମାର୍ଗଦର୍ଶନ (Guidance) ଏବଂ ବିଦ୍ୟାଳୟ ଉନ୍ନୟନ କାର୍ଯ୍ୟକ୍ରମ (School improvement programme) ଏହି କଥାରୁ ଆରମ୍ଭ କରାଯାଇ ପାରିବ । ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ, ବୋର୍ଡ ଆଦି ଶିକ୍ଷାସଂସ୍ଥା ଓ ବିଭିନ୍ନ ଶିକ୍ଷାସଂଗଠନ ଦ୍ୱାରା ବିଭିନ୍ନ ପରୀକ୍ଷା ହେଉଛି, କିନ୍ତୁ କାହିଁ ? ଦିନେ ହେଲେ ମୂଲ୍ୟାୟନର ଏହି ଦିଗ ବିଷୟରେ ବିଚାର କରାଯାଉ ନାହିଁ । ବୈଫଲ୍ୟର ପରିମାଣ ଯେତେ ହେଉପଛକେ, କୌଣସି ଅନୁଷ୍ଠାନର ସବୁ ପିଲା ଫେଲ ହୁଅନ୍ତୁ ବା ତୃତୀୟ ଶ୍ରେଣୀରେ (Third class) ନାମକୁ ମାତ୍ର ପାଶ କରନ୍ତୁ, ଏସବୁ ପର୍ଯ୍ୟାଲୋଚନା କରି (୧) ଉଦ୍ଦେଶ୍ୟ ଅସାଧ୍ୟ ହେଲାକି, (୨) ଉପାୟ ଦୁର୍ବଳ ହେଲା କି ? କିମ୍ବା (୩) ମୂଲ୍ୟାୟନ ଯଥାର୍ଥ ହେଲା ନାହିଁ କି ? ବିଚାରିବାର କଥା ।

(ଚ) ମୂଲ୍ୟାୟନରେ ପ୍ରୟୋଗାତ୍ମକ ମନୋଭାବ ରହିବ । ଏହା ଏକ ବୈଜ୍ଞାନିକ ପ୍ରକ୍ରିୟା ଏବଂ ଏଥିପାଇଁ କୁଶଳୀ ଓ ଅଭିଜ୍ଞଲୋକ ରହିବା ଉଚିତ । ଏହାର ବିଧି, ବ୍ୟବସ୍ଥା ଓ କୌଶଳକୁ ଶାଣିତ ଓ ମାର୍ଜିତ କରିବାକୁ ହେବ । ଏହାକୁ କେବଳ ବ୍ୟକ୍ତିନିରପେକ୍ଷ (objective) କଲେ ଚଳିବ ନାହିଁ । ବରଂ ଗୁରୁତ୍ୱ ଦିଆଯିବ, ଏହାକୁ ଉଦ୍ଦେଶ୍ୟାଭିମୁଖୀ କରିବା ପାଇଁ । ସେଥିପାଇଁ ପ୍ରାଶ୍ନିକମାନଙ୍କୁ ଟ୍ରେନିଂ ଦିଆଯାଉଛି । ପ୍ରତ୍ୟେକ ରାଜ୍ୟରେ ମୂଲ୍ୟାୟନ ସଂସ୍ଥା ଗଠନ କରାଯାଉଛି । ଏଥିରେ ଗବେଷଣା ରହିଛି । ଆମ ରାଜ୍ୟରେ ଏପରି ହେବା ଉଚିତ ।

## (୪) ପରୀକ୍ଷା-ଅଣ୍ଟି ଛୁରୀ ତଣ୍ଟି କାଟୁଛି

ମୂଲ୍ୟାୟନ ପ୍ରକ୍ରିୟା ଶିକ୍ଷକ, ଅଭିଭାବକ, ଅଧ୍ୟକ୍ଷଙ୍କ ସହଯୋଗିତାରେ ହେବା ଉଚିତ । ଏହା ଏକ ନିରବଚ୍ଛିନ୍ନ ଧାରା ହୋଇ ରହିବ ବୋଲି ପୂର୍ବରୁ ଆଲୋଚନା କରାଯାଇଅଛି । ସେ ଦୃଷ୍ଟିରୁ 'External examination ଯେତେ କମ୍ ହେବ ବୋଲି ସୁପାରିଶ କରାଯାଇଛି । ମୁଦାଲିଅର କମିଶନ୍ ବାହାର ପରୀକ୍ଷାର ସଂଖ୍ୟା କମାଇ ଦେବା ସପକ୍ଷରେ ଯୁକ୍ତି ବାଢ଼ି କହନ୍ତି ଯେ, ମାଟ୍ରିକ୍ୟୁଲେସନ ଶେଷ ପର୍ଯ୍ୟନ୍ତ ଗୋଟିଏ ବାହାର ପରୀକ୍ଷା ହେବା ଉଚିତ । କୋଠାରୀ କମିଶନ ସେହି ମତ ପୋଷଣ କରି କୌଣସି କୌଣସି ସ୍କୁଲ ଯଦି ବାହାର ପରୀକ୍ଷା ଗ୍ରହଣ କରିବାକୁ ନ ଚାହାନ୍ତି, ସେହି ସ୍ୱାଧୀନତା ଦେବା ସପକ୍ଷରେ ସୁପାରିଶ କରିଛନ୍ତି ।

ଏହାର ଅର୍ଥ କେବେହେଁ ନୁହେଁ ଯେ ପରୀକ୍ଷାର ସ୍ଥାନ ନାହିଁ । ନାଁ, ପରୀକ୍ଷାର ସ୍ଥାନ ନିଶ୍ଚୟ ରହିବ । ଆଭ୍ୟନ୍ତରୀଣ ମୂଲ୍ୟାୟନ (Internal assessment) ବିଧିବଦ୍ଧ ଭାବରେ ହେବ । ଏହାଦ୍ୱାରା ଅଧ୍ୟୟନ ପ୍ରବୃତ୍ତି ବଢ଼ିବ । ଅଧ୍ୟୟନ-ଅଧ୍ୟାପନାର ସିନା ମୂଲ୍ୟାୟନ ହେବ । ସେ ନଥିଲେ ପରୀକ୍ଷା କଅଣ କରିବ ? ଏବେ ଶିରୋନାସ୍ତି କିନ୍ତୁ ଅତି ଉତ୍କଟ ଶିରୋବ୍ୟଥା । ଅଧ୍ୟୟନ-ଅଧ୍ୟାପନା ମୂଲ୍ୟାୟନର ନିଗୂଢ଼ ସମ୍ପର୍କ ବୁଝି ତାକୁ ପ୍ରତିଷ୍ଠା କରିବାକୁ ହେବ । ଶିକ୍ଷାପ୍ରଶାସନ ମଧ୍ୟ ସୁଦୃଢ଼ ହେବ ।

ଆଭ୍ୟନ୍ତରୀଣ ମୂଲ୍ୟାଙ୍କନ ସମ୍ବନ୍ଧରେ ଅଧିକ ଚିନ୍ତା ଦେବାକୁ ହେବ । ଆମ ବିଶ୍ୱବିଦ୍ୟାଳୟରେ ଏହାର ପରୀକ୍ଷା କରାଯାଇଥିଲା । ଏଥିରେ ଆମ ବିଫଳ୍ୟ ବଡ଼ ଯନ୍ତ୍ରଣାଦାୟକ । ହେବାର କଥା । ନୀତି ନିର୍ଦ୍ଧାରଣ ପାଇଁ କାର୍ଯ୍ୟକାରୀ ପନ୍ଥା ସ୍ଥିର କରିବାକୁ ହେବ ।

ଏଇ କେତେ ବର୍ଷ ହେଲା ବହୁ ବିଚାର ଚାଲିଛି । ରାଧାକୃଷ୍ଣନ୍‌ଙ୍କ (୧୯୪୮) ମତରେ ଆମେ ଯଦି ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଗୋଟିଏ ସଂସ୍କାର କଥା ଭାବୁ ସେଇଟା ହେବ ପରୀକ୍ଷାର ସଂସ୍କାର । ଏହାଠାରୁ ଅଧିକ ଉତ୍କଟତା ପ୍ରକାଶ କରିବାର ଭା... ହୋଇ ନପାରେ । ଭାରତ ସରକାର ମଧ୍ୟ ନାନା ପରୀକ୍ଷା, ପ୍ରୟୋଗ ଓ ପ୍ରଚେଷ୍ଟା କରିଛନ୍ତି । ୧୯୬୭ ମସୀହା ଡ଼ିସେମ୍ବର ୨୭ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ ଆଜ-ମିରଠାରେ ଦେଶର ମାଧ୍ୟମିକ ଶିକ୍ଷାବୋର୍ଡ଼ର ସଭାପତି ଓ ସମ୍ପାଦକମାନଙ୍କର ସମ୍ମିଳନୀ ହୋଇଥିଲା । ସେଥିରେ ପରୀକ୍ଷା ପଦ୍ଧତିରେ ସଂସ୍କାର କରିବା ପାଇଁ କେତେଗୋଟି ସର୍ବନିମ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଗଲା ।

## ଲେଖା ଓ ଲେଖକ

ଅଧ୍ୟାପକ ଶମ୍ଭୁନାଥଙ୍କ ଜନ୍ମ ଭଦ୍ରକ ଅନ୍ତର୍ଗତ ଜଉରବାଲଙ୍ଗ ଗ୍ରାମରେ । ବାଲ୍ୟଶିକ୍ଷା ପରେ ସେ ନାରାୟଣ ଚନ୍ଦ୍ର ମି: ଇ. ସ୍କୁଲ ଓ ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ କରନ୍ତି । ସେଠାକାର ଗୁରୁଜନମାନଙ୍କ ଉତ୍ସାହରେ, ପ୍ରବନ୍ଧଲେଖା ଓ ପ୍ରବନ୍ଧ-ପାଠଦ୍ୱାରା ସେ ବିଶେଷ ପ୍ରଭାବିତ ହୁଅନ୍ତି । ରେଭେନ୍ସା କଲେଜ ଓ କଟକ ଟ୍ରେନିଂ କଲେଜରେ ଅଧ୍ୟୟନ କାଳରେ ପ୍ରବନ୍ଧଲେଖା ଓ ପଠନରେ ଅଭ୍ୟାସ କରନ୍ତି ।

ତାଙ୍କ ପ୍ରଣୀତ "ଶିକ୍ଷକ ସହାୟକ ପ୍ରବନ୍ଧ" ( କଟକ ଭଡ୍‌ଶଂ ହାଉସ୍ ୧୯୪୬ ) ପ୍ରଥମେ ପ୍ରକାଶ ପାଏ । ୧୯୪୬—୪୮ ରେ ଶ୍ରୀନାଥ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଉପାଧି ଶିକ୍ଷା ଲାଭକରନ୍ତି । ସେହି ଯୁଦ୍ଧୋତ୍ତର କାଳରେ ସେ ମିଳିତ ଜାତି ସଂଘ ଓ ୟୁନେସ୍କୋର ଶିକ୍ଷା ତଥା ଶାନ୍ତି ସଂସ୍ଥାନ୍ତ ବିଷୟ-ଧାରାରେ ଅନୁପ୍ରାଣିତ ହୋଇ "ଜଗତରେ ଭାରତ" (୧୯୫୧) ଓ "ଆମ ଯୁଗ କଥା" ୧ମ, ୨ୟ ଓ ୩ୟ ଭାଗ" ( ଯଥାକ୍ରମେ ୧୯୬୧, ୧୯୬୨ ଓ ୧୯୬୭ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ) ଏବଂ "ବିଶ୍ୱବନ୍ଧ" ( କଟକ ଟ୍ରେଡ଼ିଂ କମ୍ପାନୀ, ୧୯୫୨ ) ରଚନା କରନ୍ତି । ମୌଳିକ ଶିକ୍ଷା ସଂଗଠକ ଓ ମୌଳିକ ଶିକ୍ଷା ଟ୍ରେନିଂ-କଲେଜ ଅଧ୍ୟକ୍ଷ ଜୀବନର ଅଭିଜ୍ଞତା ରୂପାୟିତ ହୋଇଛି "ମୌଳିକ ଶିକ୍ଷାଗଣ୍ଡ" (୧୯୫୭) ପୁସ୍ତକରେ । ଏହି ସଂସ୍ଥାରେ Research problems in Basic Education (1963) ପ୍ରକାଶ ହୁଏ NCERT ଙ୍କ ଦ୍ୱାରା । ବିଦେଶ ଭ୍ରମଣର ଜାପାନ ଭବରେ ସୃଷ୍ଟ ହୋଇଛି "ପିଲଙ୍କ ବିଲାତ କଥା" (୧୯୬୨) ଓ ମୌଳିକ ଶିକ୍ଷା ବିଦ୍ୟାଳୟର ପରିଦର୍ଶନ ଅବସରରେ ଭାଷା ଅଧ୍ୟୟନର ପୁସ୍ତକ "ଆମ ଭାଷା ବହିକ" ( ୧୯୫୯ ) ଏହି ଭଳିଆ ପୁସ୍ତକ ବ୍ୟତୀତ ଲେଖକଙ୍କର "ନବ ଅଭିଧାନ" ( ଇଂରାଜୀ-ଓଡ଼ିଆ-ଇଂରାଜୀ ) କଟକ ଟ୍ରେଡ଼ିଂକମ୍ପାନୀ ପ୍ରକାଶ କରନ୍ତି । ମହିମା ଧର୍ମ ଅଧ୍ୟୟନ ଫଳରେ 'ଭକ୍ତକବି ଭୀମଭୋଇ' ଓ ଇଂରାଜୀରେ ଗ୍ରନ୍ଥସୂଚୀ "ଶମ୍ଭୁନାଥ ବାବା" ( ୧୯୭୭ ) ଧର୍ମଗ୍ରନ୍ଥ ଷ୍ଟୋର, କଟକଙ୍କ ଦ୍ୱାରା ପ୍ରକାଶ ପାଇଛି ।

ଲେଖକଙ୍କ ରଚନାରୁ ଆମ ପ୍ରକାଶନ ଦେଉଛି "ଶିକ୍ଷାର ଧାରା" ( ୧୯୮୦ ) "ଆମେ ଓ ସେମାନେ" ( ୧୯୮୨ ) ଓ ଇଂରାଜୀରେ Education styyles and Stregies (1984) ଏ ସବୁରେ ତଥା "ଜୀବନ ଶିକ୍ଷାରେ" ( ୧୯୮୫ ) ରୂପନିଏ ତାଙ୍କ ଶିକ୍ଷକଜୀବନର ଅର୍ଦ୍ଧଶତାବ୍ଦୀର ଅଭିଜ୍ଞତା, ସ୍ୱାଧ୍ୟାୟ ଓ ସ୍ୱତନ୍ତ୍ର ଶୈଳୀ । ପାଠ୍ୟପୁସ୍ତକ, ଅନୁବାଦ ଗ୍ରନ୍ଥ ଓ ଏପରି ଅନେକ ଖଣ୍ଡ ବହି ତାଙ୍କ କୃତି ।

ପ୍ରକାଶକ